# ନିତ୍ୟକର୍ମ ପ୍ରଦୀପ

## ପ୍ରଥମଶିଖା

## ଏବଂ ଦ୍ୱିତୀୟ ଶିଖା



ପଣ୍ଡିତ ଶ୍ରୀ ଜୟକୃଷ୍ଣ ମିଶ୍ର

ସଦ୍‌ଗ୍ରନ୍ଥ ନିକେତନ

# ନିତ୍ୟକର୍ମପ୍ରଦୀପ

## ପ୍ରଥମ ଶିଖା

ପଣ୍ଡିତ ଶ୍ରୀ ଜୟକୃଷ୍ଣ ମିଶ୍ର
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ

ସଦ୍‌ଗ୍ରନ୍ଥ ନିକେତନ
ଶ୍ରୀମନ୍ଦିର, ପୁରୀ

# ନିତ୍ୟକର୍ମପ୍ରଦୀପ
## ପ୍ରଥମ ଶିଖା

*ପ୍ରଣେତା :*
**ପଣ୍ଡିତ ଶ୍ରୀଜୟକୃଷ୍ଣମିଶ୍ର**
ପ୍ରଫେସର, ସ୍ନାତକୋତ୍ତର ଧର୍ମଶାସ୍ତ୍ର ବିଭାଗ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ-୩
ଫୋନ୍-(୦୬୭୫୨) ୨୨୪୩୪୬



*ପ୍ରକାଶକ :*
**ଶ୍ରୀଯୁକ୍ତ ଦାମୋଦର ପୁଷ୍ପାଳକ**
**ସଦ୍‌ଗ୍ରନ୍ଥ ନିକେତନ**
ଶ୍ରୀମନ୍ଦିର, ପୁରୀ

**ପ୍ରଥମ ସଂସ୍କରଣ - ୧୯୯୯ (ଗଣେଶପୂଜା)**
**ପଞ୍ଚମ ସଂସ୍କରଣ - ୨୦୧୩ (ଗଣେଶପୂଜା)**

*ଡି.ଟି.ପି :*
**ଗ୍ରାଫିକ ପଏଣ୍ଟ**
ମରିଚିକୋଟ ଲେନ୍, ପୁରୀ
ଦୂରଭାଷ : (୦୬୭୫୨) ୨୨୪୬୧୦
**ମୂଲ୍ୟ : ଟ.୪୦.୦୦ (ଚାଳିଶି ଟଙ୍କା) ମାତ୍ର**

# ପୁରୋବାକ୍

ମନୁଷ୍ୟଜୀବନର ପରମ ଲକ୍ଷ୍ୟ ପରମେଶ୍ୱରଙ୍କ ସାକ୍ଷାତକାର । ତାହା ନିଜର ସାମାଜିକ ସମୁନ୍ନତି ସହ ଆଧ୍ୟାତ୍ମିକ ଚିନ୍ତାଧାରାର ପରିପ୍ରକାଶ ଦ୍ୱାରା ହିଁ ସମ୍ଭବ ହୋଇଥାଏ । ତେଣୁ ମନୁଷ୍ୟର ମାନ୍ୟତା ପଶୁପକ୍ଷୀମାନଙ୍କ ଠାରୁ ବହୁ ଊର୍ଦ୍ଧ୍ୱରେ ବୋଲି ନିର୍ଦ୍ଧାରଣ କରାଯାଇଅଛି । ଏହି ଲକ୍ଷ୍ୟ ସିଦ୍ଧିନିମିତ୍ତ ବର୍ଣ୍ଣାଶ୍ରମଧର୍ମ ପାଳନ ସହିତ ଅନ୍ତଃକରଣର ଶୁଦ୍ଧି ସର୍ବାଦୌ ସହାୟକ ହୋଇଥାଏ ।

କେବଳ ଜନ୍ମଦ୍ୱାରା ହିଁ ବ୍ରାହ୍ମଣ ଗୌରବର ଅଧିକାରୀ ହୋଇପାରି ନ ଥାଏ । ସେ ସ୍ୱକୀୟ ପରମ୍ପରା ଅର୍ଥାତ୍ ବର୍ଣ୍ଣୋଚିତକର୍ତ୍ତବ୍ୟର ଯଥାଯଥ ପାଳନ କରିବା ଉଚିତ । ଇଦାନୀନ୍ତନ ବ୍ରାହ୍ମଣସମାଜର ଅବସ୍ଥା ଏଥିରୁ ସ୍ପଷ୍ଟ ଅନୁମେୟ । ନିଜର ଐହିକ ଜୀବନ ଓ ପାରମାର୍ଥିକ ଜୀବନକୁ ଚରିତାର୍ଥ କରିବା ବିଧେୟ । ସନ୍ଧ୍ୟା, ପ୍ରାଣାୟାମ ପ୍ରଭୃତି ନିତ୍ୟକର୍ମମାନଙ୍କର ଅକରଣରେ ପ୍ରତ୍ୟବାୟ ବା ହାନି ହୁଏ ବୋଲି ଧର୍ମଶାସ୍ତ୍ରକାରମାନେ ଘୋଷଣା କରିଅଛନ୍ତି ।

ବେଦମାନଙ୍କର ଆଜ୍ଞା ପ୍ରଭୁସମ୍ମିତ ଅଟେ । ରାଜାଜ୍ଞା ପରି ବେଦାଜ୍ଞା ମଧ୍ୟ ଅକ୍ଷରଶଃ ପାଳନ କରିବାକୁ ପଡିଥାଏ । ଏପରି କରିବା ଦ୍ୱାରାହିଁ ବେଦବିହିତ ସୁଫଳର ପ୍ରାପ୍ତି ହୋଇଥାଏ । ବେଦାଦି ସମସ୍ତ ଶାସ୍ତ୍ରରେ ନିତ୍ୟ ଓ ନୈମିତ୍ତିକ କର୍ମମାନଙ୍କର ଅନୁଷ୍ଠାନକୁ ହିଁ ମନୁଷ୍ୟର ପରମଧର୍ମ ଓ ପରମକର୍ତ୍ତବ୍ୟ ବୋଲି କୁହାଯାଇଅଛି । ପ୍ରତ୍ୟେକ ମନୁଷ୍ୟ ଜନ୍ମଠାରୁ ଦେବଋଣ, ପିତୃଋଣ, ମନୁଷ୍ୟଋଣ ଏହି ତିନି ଋଣରେ ଋଣୀ ହୋଇଥାଏ । ନିତ୍ୟକର୍ମାନୁଷ୍ଠାନ ଦ୍ୱାରା ମନୁଷ୍ୟ ଏହି ଋଣତ୍ରୟରୁ ବିମୁକ୍ତ ହୋଇଥାଏ । ପ୍ରମାଣ ଯଥା -

'ଜାୟମାନୋ ହ ବୈ ବ୍ରାହ୍ମଣସ୍ତ୍ରିଭିର୍ଋଣୈଃ ଋଣବାନ୍ ଜାୟତେ'

(ତୈ.ସଂ. ୬.୩.୧୦.୫)

'ଯତ୍ କୃତ୍ୱାଽନୃଣ୍ୟମାପ୍ନୋତି ଦୈବାତ୍ ପୈତ୍ର୍ୟାଚ୍ଚ ମାନୁଷାତ୍' ।

ମନୁଷ୍ୟ ଶ୍ରଦ୍ଧା ଓ ଭକ୍ତିର ସହିତ ଯାବଜ୍ଜୀବ ପ୍ରତିଦିନ ସ୍ନାନ, ସନ୍ଧ୍ୟା, ଗାୟତ୍ରୀଜପ, ଦେବପୂଜନ, ବଳି, ବୈଶ୍ୱଦେବ, ସ୍ୱାଧ୍ୟାୟ ପ୍ରଭୃତି ନିତ୍ୟକର୍ମ ଅନୁଷ୍ଠାନ କରିଲେ ତାହାର ଆତ୍ମନିଷ୍ଠବୁଦ୍ଧି ଉଦୟ ହୁଏ । ଆତ୍ମନିଷ୍ଠବୁଦ୍ଧି ହିଁ ଭ୍ରାନ୍ତବୁଦ୍ଧି, ଜଡତା, ବିବେକହୀନତା, ଅହଙ୍କାର, ସଙ୍କୋଚ ପ୍ରଭୃତିର ବିନାଶ କରିଥାଏ । ସେହି ବ୍ୟକ୍ତି ତାହାପରେ ପରମାତ୍ମଚିନ୍ତନରେ ରତ ରହି ପରମେଶ୍ୱରଙ୍କ ପ୍ରାପ୍ତିନିମିତ୍ତ ପ୍ରଯତ୍ନବାନ ହୁଏ । ତାହାର ପ୍ରଯତ୍ନର ପରିଣାମ ସ୍ୱରୂପ ପରମାନନ୍ଦାନୁଭୂତି ସହିତ ଦୈବୀଗୁଣଯୁକ୍ତ ହୋଇ ଈଶ୍ୱରୋନ୍ମୁଖ ହୋଇପଡେ । ଏହାପରେ ପରମାତ୍ମାଙ୍କର ବାସ୍ତବିକ ତତ୍ତ୍ୱକୁ ଉପଲବ୍ଧି କରି ଜୀବନ୍ମୁକ୍ତ ହୋଇଯାଏ ଓ ଆତ୍ମୋଦ୍ଧାର କରିବାରେ ସମର୍ଥ ହୋଇଥାଏ । ତେଣୁ ମନୁଷ୍ୟନିମିତ୍ତ ନିତ୍ୟକର୍ମର ପ୍ରୟୋଜନ ଯେ ଅତ୍ୟନ୍ତ ଅନିବାର୍ଯ୍ୟ ଏଥିରେ ସନ୍ଦେହର ଅବକାଶ ନାହିଁ ।

ନିତ୍ୟକର୍ମରେ ଶାରୀରିକଶୁଦ୍ଧି, ସନ୍ଧ୍ୟାବନ୍ଦନ, ତର୍ପଣ ପ୍ରଭୃତି ଛଅଟି ଶାସ୍ତ୍ର ନିର୍ଦ୍ଦିଷ୍ଟ କର୍ମ ଅନ୍ତର୍ଭୁକ୍ତ ହୋଇଥାଏ । ଯଥା -

ସନ୍ଧ୍ୟା ସ୍ନାନଂ ଜପଶ୍ଚୈବ ଦେବତାନାଂ ଚ ପୂଜନମ୍ ।
ବୈଶ୍ୱଦେବଂ ତଥାଽତିଥ୍ୟଂ ଷଟ୍ କର୍ମାଣି ଦିନେ ଦିନେ ।।

(ବୃ.ପ.ସ୍ମୃ. ୧.୩୯)

ଦକ୍ଷସ୍ମୃତିରେ ମଧ୍ୟ ଶୌଚବିଧିର ପ୍ରଶଂସା କରାଯାଇଅଛି । ଶୌଚାଚାରବିହୀନ ମନୁଷ୍ୟର ସମସ୍ତ କର୍ମ ନିଷ୍ଫଳ ହୋଇଥାଏ । ତେଣୁ ଦ୍ୱିଜ (ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ) ଶୌଚକର୍ମରେ ଅବହେଳା ପ୍ରଦର୍ଶନ କରିବା ଅନୁଚିତ । ପ୍ରମାଣ ଯଥା -

ଶୌଚେ ଯତ୍ନଃ ସଦା କାର୍ଯ୍ୟଃ ଶୌଚମୂଲୋ ଦ୍ୱିଜଃ ସ୍ମୃତଃ ।
ଶୌଚାଚାରବିହୀନସ୍ୟ ସମସ୍ତାଃ ନିଷ୍ଫଳାଃ କ୍ରିୟାଃ ॥
(ଦକ୍ଷ.ସ୍ମୃ.୫.୨)

ସମସ୍ତ ଶାସ୍ତ୍ରଜ୍ଞ ବିଦ୍ୱାନ୍ ମଧ୍ୟ ସଦାଚାରରହିତ ହେଲେ ତାହାର ସମସ୍ତକର୍ମ ବ୍ୟର୍ଥ ହୋଇଥାଏ । ଯଥା ମହର୍ଷିବସିଷ୍ଠଙ୍କ ମତାନୁସାରେ -

'ଆଚାରହୀନଂ ନ ପୁନନ୍ତି ବେଦାଃ,
ଯଦ୍ୟପ୍ୟଧୀତାଃ ସହ ଷଡ୍‌ଭିରଙ୍ଗୈ'

ମହର୍ଷି ମନୁ ନିତ୍ୟକର୍ମାନ୍ତର୍ଗତସନ୍ଧ୍ୟାର ମହତ୍ତ୍ୱକୁ ସ୍ପଷ୍ଟ ଭାବରେ ସୂଚାଇଅଛନ୍ତି । ଯଥା -

ଋଷୟୋ ଦୀର୍ଘସନ୍ଧ୍ୟତ୍ୱାଦ୍ ଦୀର୍ଘମାୟୁରବାପ୍ନୁୟୁଃ ।
ପ୍ରଜ୍ଞାଂ ଯଶଶ୍ଚ କୀର୍ତ୍ତିଂ ଚ ବ୍ରହ୍ମବର୍ଚ୍ଚସମେବ ଚ ॥ (ମନୁ. ୪-୯୪)

ଏହାର ଅର୍ଥ ହେଲା - ଋଷିମାନେ ଦୀର୍ଘକାଳବ୍ୟାପି ସନ୍ଧ୍ୟାନୁଷ୍ଠାନ କରିବା ଦ୍ୱାରା ଦୀର୍ଘାୟୁଃ, ବୁଦ୍ଧି, ଯଶ, କୀର୍ତ୍ତି ଓ ବ୍ରହ୍ମତେଜର ଅଧିକାରୀ ହୋଇପାରିଥିଲେ । ପରମାତ୍ମାଙ୍କ ସମ୍ବନ୍ଧରେ ଜ୍ଞାନ ଆହରଣ କରିବା ଦ୍ୱାରା ହିଁ ମନୁଷ୍ୟକୁ ଏହି ଭବସଂସାରରୁ ମୁକ୍ତି ମିଳିଥାଏ । ଏହି ପରମାତ୍ମସମ୍ବନ୍ଧୀ ଜ୍ଞାନକୁ ଅଧ୍ୟାତ୍ମଜ୍ଞାନ ବୋଲି ମଧ୍ୟ କୁହାଯାଇଥାଏ । ଏହି ଜ୍ଞାନର ସର୍ବୋତ୍ତମ ସାଧନପାଇଁ ହିଁ ସନ୍ଧ୍ୟୋପାସନା କରିବା ସର୍ବାଦୌ ବାଞ୍ଛନୀୟ । ଏହି କର୍ମରେ ପ୍ରାଣାୟାମ ଓ ଗାୟତ୍ରୀଜପର ମହତ୍ତ୍ୱ ସର୍ବାଧିକ । ତ୍ରିକାଳସନ୍ଧ୍ୟାନୁଷ୍ଠାନ ଦ୍ୱାରା ଦିନରେ ବା ରାତିରେ ମନୁଷ୍ୟର ଅଜ୍ଞାନକୃତ ସମସ୍ତ ପାପ ବିନଷ୍ଟ ହୋଇଥାଏ ।

ଯଥା - ଦିବା ବା ଯଦି ବା ରାତ୍ରୌ ଯଦଜ୍ଞାନକୃତଂ ଭବେତ୍ ।
ତ୍ରିକାଳସନ୍ଧ୍ୟାକରଣାତ୍ ତତ୍‌ସର୍ବଂ ଚ ପ୍ରଣଶ୍ୟତି ॥
(ଯାଜ୍ଞବଲ୍କ୍ୟସ୍ମୃତି)

ସମସ୍ତକର୍ମରେ ଆଚମନ କରିବା ବିଧେୟ ଅଟେ । ଆଚମନ ସନ୍ଧ୍ୟାର ଏକ ମୁଖ୍ୟ ଅଙ୍ଗ ଅଟେ ଓ ଆଚମନ ଦ୍ୱାରା ମନୁଷ୍ୟର ମାନସିକ ଉତ୍ତେଜନା ହ୍ରାସ ପାଇଥାଏ ଓ ମନୁଷ୍ୟ ଶାନ୍ତିଲାଭ କରିଥାଏ । ତେଣୁ ମାୟାଗ୍ରସ୍ତ ମନୁଷ୍ୟକୁ ସନ୍ମାର୍ଗରେ ପରିଚାଳିତ କରିବା ପାଇଁ ଓ ଚିରନ୍ତନ ଶାନ୍ତିପ୍ରଦାନ ସକାଶେ ମହର୍ଷିମାନେ ସ୍ମୃତିମାନଙ୍କରେ ଅନେକ ଉପଦେଶ ଦେଇଆସିଛନ୍ତି । ମନୁଷ୍ୟକୁ ନିଜର କୃତକର୍ମାନୁରୂପ ଫଳ ଏହି ଜନ୍ମରେ ଓ ପରଜନ୍ମରେ ଭୋଗ କରିବାକୁ ପଡିଥାଏ । ଧର୍ମାଧର୍ମରୂପ ଅଦୃଷ୍ଟ ମନୁଷ୍ୟର ଜୀବନ ସହିତ ଓତଃପ୍ରୋତଭାବରେ ଜଡିତ । ତେଣୁ ମନୁଷ୍ୟ ନିଜ ଜନ୍ମଠାରୁ ଆରମ୍ଭ କରି ଶାସ୍ତ୍ର ବିହିତମାର୍ଗରେ ନିଜର କର୍ତ୍ତବ୍ୟମାନଙ୍କର ପାଳନ ଓ ନିଜ ଧର୍ମାଚରଣ ପ୍ରତି ଅବଶ୍ୟ ଯତ୍ନବାନ ହେବା ଉଚିତ ।

ମନୁଷ୍ୟକୁ ଅଶାସ୍ତ୍ରୀୟ କର୍ମରୁ ଓ ଭୋଗବିଳାସରୁ ନିବର୍ତ୍ତାଇ ଜୀବନର ପ୍ରତ୍ୟେକ କ୍ଷଣକୁ ଭଗବଦାରାଧନରୂପ କର୍ମରେ ପ୍ରବର୍ତ୍ତାଇବା ସହିତ ପ୍ରାତଃକାଳରେ ଶଯ୍ୟାତ୍ୟାଗଠାରୁ ଆରମ୍ଭ କରି ରାତ୍ରିରେ ଶୟନ କରିବା ପର୍ଯ୍ୟନ୍ତ ଓ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟକଳାପ ଧର୍ମ୍ୟବିଧିରେ ପ୍ରତିପାଦନ କରିବା ନିମିତ୍ତ ଶାସ୍ତ୍ରରେ ନିର୍ଦ୍ଦେଶ ଦିଆଯାଇଅଛି ।

କୌଣସି ମନ୍ତ୍ରର କର୍ମରେ ବିନିଯୋଗ କରିବା ପୂର୍ବରୁ ଋଷିଛନ୍ଦଃ ପ୍ରଭୃତିର ସ୍ମରଣ କରିବା ବିଷୟରେ ମହର୍ଷିମାନେ ଦୃଢମତ ପୋଷଣ କରିଅଛନ୍ତି । ତେଣୁ ମହର୍ଷି ଯାଜ୍ଞବଲ୍‌କ୍ୟ କହିଛନ୍ତି ଯେ - ବ୍ରାହ୍ମଣ ପ୍ରଯତ୍ନପୂର୍ବକ ମନ୍ତ୍ରମାନଙ୍କର ଋଷି, ଛନ୍ଦ ଓ ଦେବତାଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ । ପ୍ରମାଣ ଯଥା -

ଆର୍ଷଂ ଛନ୍ଦଶ୍ଚ ଦୈବତ୍ୟଂ ବିନିଯୋଗସ୍ତଥୈବ ଚ ।
ବେଦିତବ୍ୟଂ ପ୍ରଯତ୍ନେନ ବ୍ରାହ୍ମଣେନ ବିଶେଷତଃ ॥

ଆଜିକାଲି ବଜାରରେ ଉପଲବ୍ଧ ହେଉଥିବା ସନ୍ଧ୍ୟାବିଧି ଗ୍ରନ୍ଥମାନଙ୍କରେ ମନ୍ତ୍ରମାନଙ୍କର ଋଷି-ଛନ୍ଦ-ଦେବତା ପ୍ରଭୃତିରେ ଅନେକ

ପାଠଭେଦ ଦୃଷ୍ଟିଗୋଚର ହେଉଅଛି । ଋଷିଛନ୍ଦପ୍ରଭୃତିରେ ଭିନ୍ନତା ଦେଖି ତଥ୍ୟଜିଜ୍ଞାସୁମାନଙ୍କ ମନରେ ସନ୍ଦେହ ଜାତ ହେବା ସ୍ୱାଭାବିକ । ତାହା ଫଳରେ ସାଧାରଣ ଜନଙ୍କର ଋଷିଛନ୍ଦ ପ୍ରଭୃତିର ଅନୁଷ୍ଠାନ ଓ ଆବଶ୍ୟକତା ଉପରେ ଅବିଶ୍ୱାସ ସୃଷ୍ଟି ହେଉଅଛି ଓ କୌଣସି ଗୋଟିକର ପ୍ରାମାଣିକତାକୁ ସ୍ୱୀକାର କରି ନ ପାରି କ୍ରମେ ସେହି କର୍ମାନୁଷ୍ଠାନରୁ ବିରତ ହେଉଛନ୍ତି ।

ବାସ୍ତବରେ କହିବାକୁ ଗଲେ ମନ୍ତ୍ରମାନଙ୍କର ଋଷିଛନ୍ଦ ପ୍ରଭୃତି ବିଷୟରେ ସଠିକ ଜାଣିବା କିଛି ଦୁରୂହ ବ୍ୟାପାର ନୁହେଁ । କେବଳ ପରିଶ୍ରମକାତର ହୋଇ କୌଣସି ଏକ ପୁରୁଣା ଛପା ବହିରୁ ଅବିକଳ ନକଲ କରିବା ହିଁ ସାର ହେଉଛି । ଏହି ବିଷୟରେ ବୈଦିକ ସର୍ବାନୁକ୍ରମସୂତ୍ର ଓ ପିଙ୍ଗଳ ଛନ୍ଦସୂତ୍ରର ସାହାଯ୍ୟ ଗ୍ରହଣ କଲେ ସମସ୍ତ ସଂଶୟ ରାଶି ଦୂର ହେବା ସଙ୍ଗେ ସଙ୍ଗେ କର୍ମାନୁଷ୍ଠାନ ପ୍ରତି ଆଗ୍ରହ ରହିବ । ତେଣୁ ଏହି ସଂସ୍କରଣରେ ବୈଦିକଗ୍ରନ୍ଥମାନଙ୍କର ସାହାଯ୍ୟ ନେଇ ଯଥାସମ୍ଭବ ମନ୍ତ୍ରମାନଙ୍କର ଅଧ୍ୟାୟ ଓ ସଂଖ୍ୟା, ମନ୍ତ୍ର, ଋଷିଛନ୍ଦ ଓ ଅନୁଷ୍ଠାନ ବିଧି ପ୍ରତି ବିଶେଷ ଧ୍ୟାନ ଦିଆଯାଇଅଛି । ଏହି ସଂସ୍କରଣର ସଫଳତାର ପରିଚାୟକ ରୂପେ ବିଦ୍ୱାନ ପୁରୁଷ ଓ ଏହାର ଅନୁଷ୍ଠାତା ପଣ୍ଡିତମାନେ ହିଁ ପ୍ରମାଣ ହେବେ ।

ଏହି ନିତ୍ୟକର୍ମପ୍ରଦୀପ ଗ୍ରନ୍ଥର ପ୍ରଥମଭାଗରେ ପ୍ରଥମରେ ପ୍ରାତଃସ୍ମରଣ ଠାରୁ ଆରମ୍ଭ କରି ଦନ୍ତଧାବନ ନିୟମ, ସ୍ନାନକୃତ୍ୟ ପ୍ରଭୃତି ବିଷୟମାନ ପ୍ରତିପାଦିତ ହୋଇଅଛି । ଏହାପରେ ଚାରିବେଦର ଅନୁଯାୟିମାନଙ୍କ ସକାଶେ ସନ୍ଧ୍ୟାବିଧାନ, ଯଜ୍ଞୋପବୀତାଭିମନ୍ତ୍ରଣବିଧାନ, ଚଳୁବିଧାନ, ତର୍ପଣବିଧି ଓ ଆଶୀର୍ବାଦମନ୍ତ୍ର କ୍ରମାନୁସାରେ ଉପସ୍ଥାପନ କରାଯାଇଅଛି । ଶେଷରେ ଅଙ୍ଗନ୍ୟାସବିଧି, କରନ୍ୟାସବିଧି, ପ୍ରାଣାୟାମବିଧି, ଜପବିଧି ପ୍ରଭୃତି କେତେକ ଆବଶ୍ୟକୀୟ ତଥ୍ୟ ମଧ୍ୟ ପ୍ରଦାନ

କରାଯାଇଅଛି । ଏହାର ଦ୍ୱିତୀୟଭାଗରେ ବରୁଣପୂଜା, ସଂକଳ୍ପବିଧି, ସ୍ୱସ୍ତିବାଚନ, ଅଚ୍ଛିଦ୍ରାବଧାରଣ, ଦେବପୂଜା ପ୍ରଭୃତି ବିଷୟମାନ ସନ୍ନିବେଶ କରାଯାଇଅଛି ।

ଅନେକ ବିଜ୍ଞଜନ, ଶୁଭାକାଂକ୍ଷୀ ଓ ଅନ୍ତରଙ୍ଗବନ୍ଧୁମାନଙ୍କର ଆନ୍ତରିକ ଅଭିଳାଷକୁ ପୂର୍ଣ୍ଣ କରିବାକୁ ଯାଇ ମୁଁ ଏହି ଗ୍ରନ୍ଥର ସଂକଳନ କରିବାରେ ମନ ବଳାଇଥିଲି । ବର୍ତ୍ତମାନ ସର୍ବଜନସମକ୍ଷରେ ଏହା ଉପସ୍ଥାପନ କରି ଏହାର ଗୁଣଦୋଷ ବିବେଚନା କରିବା ନିମିତ୍ତ ପ୍ରାର୍ଥନା କରୁଅଛି । ଏହି ଗ୍ରନ୍ଥକୁ ଅନୁସରଣ କରି ସୁଧୀବୃନ୍ଦ ନିଜର ଜୀବନଯାତ୍ରାକୁ ନିର୍ବାହ କରି ଚତୁର୍ବର୍ଗପ୍ରାପ୍ତି ନିମିତ୍ତ ସମର୍ଥ ହେଲେ ମୋର ଏହି ସାମାନ୍ୟଶ୍ରମ ଚରିତାର୍ଥ ହେଲା ବୋଲି ଜାଣିବି ।

ଏହି ଗ୍ରନ୍ଥର ନିର୍ମାଣଦିଗରେ ମୋତେ ଉତ୍ସାହିତ କରିଥିବା ମୋର ଅନ୍ତରଙ୍ଗ ବନ୍ଧୁମାନଙ୍କ ନିକଟରେ ମୁଁ ଚିରକୃତଜ୍ଞ ଅଟେ । ଏତଦ୍‌ବ୍ୟତୀତ ସଦ୍‌ଗ୍ରନ୍ଥ ନିକେତନର ଅଧିକାରୀ ଶ୍ରୀଯୁକ୍ତ ଦାମୋଦର ପୁଷ୍ପାଳକ ମଧ୍ୟ ମୋର ଅଦମ୍ୟ ପ୍ରେରଣାର ଉତ୍ସ ଅଟନ୍ତି । ତେଣୁ ତାଙ୍କ ନିକଟରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଅଛି । ଏହି ଗ୍ରନ୍ଥର ଅକ୍ଷରସଜ୍ଜା ଓ ନିର୍ମାଣପରିପାଟୀନିମିତ୍ତ ଶ୍ରୀ ପ୍ରତାପ କୁମାର ମେକାପଙ୍କର ନିଷ୍ଠା ମଧ୍ୟ ମୋର ମନରେ ଅଶେଷ ଆନନ୍ଦ ଆଣି ଦେଇଅଛି । ତେଣୁ ଏହି ଅବସରରେ ମୁଁ ତାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଅଛି । ପରିଶେଷରେ ଯେଉଁ ନୀଳାଦ୍ରିବିହାରୀଙ୍କ ସାମାନ୍ୟ କଟାକ୍ଷପାତରେ ମନୁଷ୍ୟର ସର୍ବବିଧ ସାଂସାରିକ ମାୟାମୋହ ଅପସରି ଯାଏ ସେହି ପ୍ରଭୁଙ୍କ ଚରଣକମଳରେର ଆଶ୍ରୟ ଭିକ୍ଷା କରି ବିରତ ହେଉଅଛି ।

॥ ଇତି ॥

ଜୟକୃଷ୍ଣ ମିଶ୍ର

# ବିଷୟସୂଚୀ

| ବିଷୟ | ପୃଷ୍ଠାଙ୍କ |
|---|---|
| ୧୨. ଯଜ୍ଞୋପବୀତାଭିମନ୍ତ୍ରଣବିଧି (ଋଗ୍-ଯଜୁଃ-ସାମବେଦୀୟ) | ୮୭ |
| ୧୩. ଚକ୍ଷୁବିଧାନ (ଚତୁର୍ବେଦୀୟ) | ୯୪ |
| ୧୪. ତର୍ପଣବିଧି (ଦେବ-ଋଷି-ମନୁଷ୍ୟତର୍ପଣାନି) | ୯୬ |
| ୧୫. ବୈଶ୍ୱଦେବବିଧି | ୧୧୨ |
| ୧୬. ବୈଶ୍ୱଦେବମଣ୍ଡଳ | ୧୨୦ |
| ୧୭. ବୈଶ୍ୱଦେବକାରିକା | ୧୨୧ |
| ୧୮. ଆଶୀର୍ବାଦମନ୍ତ୍ର (ଚତୁର୍ବେଦୀୟ) | ୧୨୨ |
| ୧୯. ଆଚମନବିଧି | ୧୨୮ |
| ୨୦. ସନ୍ଧ୍ୟାର ସାଧାରଣ ନିୟମ | ୧୩୧ |
| ୨୧. ଋଷ୍ୟାଦି, କରନ୍ୟାସ ଓ ଅଙ୍ଗନ୍ୟାସବିଧି | ୧୩୪ |
| ୨୨. ଜପବିଧି | ୧୩୫ |
| ୨୩. ପ୍ରାଣାୟାମବିଧି | ୧୩୮ |
| ୨୪. ଗାୟତ୍ରୀଶାପୋଦ୍ଧାରଃ | ୧୪୦ |
| ବ୍ରହ୍ମଶାପବିମୋଚନମ୍ | ୧୪୦ |
| ବିଶ୍ୱାମିତ୍ରଶାପବିମୋଚନମ୍ | ୧୪୧ |
| ବଶିଷ୍ଠଶାପବିମୋଚନମ୍ | ୧୪୧ |
| ଶୁକ୍ରଶାପବିମୋଚନମ୍ | ୧୪୨ |
| ୨୫. ମତାନ୍ତରେଗାୟତ୍ରୀଶାପବିମୋଚନମ୍ | ୧୪୩ |
| ୨୬. ଗାୟତ୍ରୀଙ୍କ ମୁଦ୍ରା | ୧୪୬ |

• • • •

ଓଁ ଶ୍ରୀ ଗଣେଶାୟ ନମଃ

# ପ୍ରାତଃସ୍ମରଣସ୍ତୋତ୍ରାଣି

## ପରଂବ୍ରହ୍ମପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ହୃଦି ସଂସ୍ଫୁରଦାତ୍ମତତ୍ତ୍ୱଂ
ସଚ୍ଚିତ୍ସୁଖଂ ପରମହଂସଗତିଂ ତୁରୀୟମ୍ ।
ଯତ୍ସ୍ୱପ୍ନଜାଗରସୁଷୁପ୍ତିମବୈତି ନିତ୍ୟଂ
ତଦ୍ବ୍ରହ୍ମନିଷ୍କଳମହଂ ନ ଚ ଭୂତସଂଘଃ ॥ ୧ ॥
ପ୍ରାତର୍ଭଜାମି ମନସା ବଚସାମଗମ୍ୟଂ
ବାଚୋ ବିଭାନ୍ତି ନିଖିଲା ଯଦନୁଗ୍ରହେଣ ।
ଯନ୍ନେତି ନେତି ବଚନୈର୍ନିଗମା ଅବୋଚନ୍
ତଂ ଦେବଦେବମଜମଚ୍ୟୁତମାହୁରଗ୍ର୍ୟମ୍ ॥ ୨ ॥
ପ୍ରାତର୍ନମାମି ତମସଃ ପରମର୍କବର୍ଣ୍ଣଂ
ପୂର୍ଣ୍ଣଂ ସନାତନପଦଂ ପୁରୁଷୋତ୍ତମାଖ୍ୟମ୍ ।
ଯସ୍ମିନ୍ନିଦଂ ଜଗଦଶେଷମଶେଷମୂର୍ତ୍ତୌ
ରଜ୍ଜ୍ୱାଂ ଭୁଜଙ୍ଗମ ଇବ ପ୍ରତିଭାସିତଂ ବୈ ॥ ୩ ॥
ଶ୍ଳୋକତ୍ରୟମିଦଂ ପୁଣ୍ୟଂ ଲୋକତ୍ରୟବିଭୂଷଣମ୍ ।
ପ୍ରାତଃକାଳେ ପଠେଦ୍ ଯସ୍ତୁ ସ ଗଚ୍ଛେଦ୍ ପରମଂ ପଦମ୍ ॥ ୪ ॥

ଇତି ଶ୍ରୀଶଙ୍କରାଚାର୍ଯ୍ୟକୃତଂ ପରଂବ୍ରହ୍ମପ୍ରାତଃସ୍ମରଣସ୍ତୋତ୍ରଂ
ସମ୍ପୂର୍ଣ୍ଣମ୍ ॥

## ଶ୍ରୀନାରାୟଣପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ଭବଭୀତିମହାର୍ତ୍ତିଶାନ୍ତ୍ୟୈ
ନାରାୟଣଂ ଗରୁଡବାହନମବ୍ଜନାଭମ୍ ।
ଗ୍ରାହାଭିଭୂତ-ବର-ବାରଣ-ମୁକ୍ତିହେତୁଂ
ଚକ୍ରାୟୁଧଂ ତରୁଣ-ବାରିଜପତ୍ରନେତ୍ରମ୍ ॥ ୧ ॥
ପ୍ରାତର୍ନମାମି ମନସା ବଚସା ଚ ମୂର୍ଦ୍ଧ୍ନା
ପାଦାରବିନ୍ଦଯୁଗଳଂ ପରମସ୍ୟ ପୁଂସଃ ।
ନାରାୟଣସ୍ୟ ନରକାର୍ଣ୍ଣବତାରଣସ୍ୟ
ପାରାୟଣ-ପ୍ରବଣ-ବିପ୍ର-ପରାୟଣସ୍ୟ ॥ ୨ ॥
ପ୍ରାତର୍ଭଜାମି ଭଜତାମଭୟଙ୍କରଂ ତଂ
ପ୍ରାକ୍ ସର୍ବଜନ୍ମକୃତପାପଭୟାପହତ୍ୟୈ ।
ଯୋ ଗ୍ରାହବକ୍ତ୍ରପତିତାଂଘ୍ରିଗଜେନ୍ଦ୍ରଘୋର-
ଶୋକପ୍ରଣାଶନକରୋ ଧୃତଶଙ୍ଖଚକ୍ରଃ ॥ ୩ ॥
ଶ୍ଳୋକତ୍ରୟମିଦଂ ପୁଣ୍ୟଂ ପ୍ରାତଃକାଳେ ପଠେତ୍ତୁ ଯଃ ।
ଲୋକତ୍ରୟଗୁରୁସ୍ତସ୍ମୈ ଦଦ୍ୟାଦାତ୍ମପଦଂ ହରିଃ ॥ ୪ ॥

ଇତି ଶ୍ରୀନାରାୟଣପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

## ଶ୍ରୀସୂର୍ଯ୍ୟପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ଖଳୁ ତତ୍ ସବିତୁର୍ବରେଣ୍ୟଂ
ରୂପଂ ହି ମଣ୍ଡଳମୃଚୋଽଥ ତନୁର୍ଯଜୂଂଷି ।
ସାମାନି ଯସ୍ୟ କିରଣାଃ ପ୍ରଭବାଦିହେତୁଂ
ବ୍ରହ୍ମାହରାତ୍ମକମଲକ୍ଷ୍ୟମଚିନ୍ତ୍ୟରୂପମ୍ ॥ ୧ ॥

ପ୍ରାତର୍ନମାମି ତରଣିଂ ତନୁବାଙ୍ମନୋଭି-
ର୍ବ୍ରହ୍ମେନ୍ଦ୍ରପୂର୍ବକସୁରୈର୍ନୁତମର୍ଚ୍ଚିତଂ ଚ ।
ବୃଷ୍ଟିପ୍ରମୋଚନବିନିଗ୍ରହହେତୁଭୂତଂ
ତ୍ରୈଲୋକ୍ୟପାଳନପରଂ ତ୍ରିଗୁଣାତ୍ମକଂ ଚ ॥ ୨ ॥
ପ୍ରାତର୍ଭଜାମି ସବିତାରମନନ୍ତଶକ୍ତିଂ
ପାପୌଘଶତ୍ରୁଭୟରୋଗହରଂ ପରଂ ଚ ।
ତଂ ସର୍ବଲୋକକଳନାତ୍ମକକାଳମୂର୍ତ୍ତିଂ
ଗୋକଣ୍ଠବନ୍ଧନବିମୋଚନମାଦିଦେବମ୍ ॥ ୩ ॥
ଶ୍ଲୋକତ୍ରୟମିଦଂ ଭାନୋଃ ପ୍ରାତଃକାଳେ ପଠେତ୍ତୁ ଯଃ ।
ସ ସର୍ବବ୍ୟାଧିନିର୍ମୁକ୍ତଃ ପରଂ ସୁଖମବାପ୍ନୁୟାତ୍ ॥ ୪ ॥
ଇତି ଶ୍ରୀସୂର୍ଯ୍ୟପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ॥

## ଶ୍ରୀଶିବପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ଭବଭୀତିହରଂ ସୁରେଶଂ
ଗଙ୍ଗାଧରଂ ବୃଷଭବାହନମମ୍ବିକେଶମ୍ ।
ଖଟ୍ୱାଙ୍ଗଶୂଳବରଦାଭୟହସ୍ତମୀଶଂ
ସଂସାରରୋଗହରମୌଷଧମଦ୍ୱିତୀୟମ୍ ॥ ୧ ॥
ପ୍ରାତର୍ନମାମି ଗିରିଶଂ ଗିରିଜାର୍ଦ୍ଧଦେହଂ
ସର୍ଗସ୍ଥିତିପ୍ରଳୟକାରଣମାଦିଦେବମ୍ ।
ବିଶ୍ୱେଶ୍ୱରଂ ବିଜିତବିଶ୍ୱମନୋଽଭିରାମଂ
ସଂସାରରୋଗହରମୌଷଧମଦ୍ୱିତୀୟମ୍ ॥ ୨ ॥

ପ୍ରାତର୍ଭଜାମି ଶିବମେକମନନ୍ତମାଦ୍ୟଂ
ବେଦାନ୍ତବେଦ୍ୟମନଘଂ ପୁରୁଷଂ ମହାନ୍ତମ୍ ।
ନାମାଦିଭେଦରହିତଂ ଷଡଭାବଶୂନ୍ୟଂ
ସଂସାରରୋଗହରମୌଷଧମଦ୍ୱିତୀୟମ୍ ।। ୩ ।।
ପ୍ରାତଃ ସମୁତ୍‌ଥାୟ ଶିବଂ ବିଚିନ୍ତ୍ୟ
ଶ୍ଳୋକତ୍ରୟଂ ଯେଽନୁଦିନଂ ପଠନ୍ତି ।
ତେ ଦୁଃଖଜାତଂ ବହୁଜନ୍ମସଞ୍ଚିତଂ
ହିତ୍ୱା ପଦଂ ଯାନ୍ତି ତଦେବ ଶମ୍ଭୋଃ ।। ୪ ।।
ଇତି ଶ୍ରୀଶିବପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

## ଶ୍ରୀଦେବୀପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ଶରଦିନ୍ଦୁକରୋଜ୍ଜ୍ୱଲାଭାଂ
ସଦ୍ରତ୍ନବନ୍-ମକରକୁଣ୍ଡଳହାରଭୂଷାମ୍ ।
ଦିବ୍ୟାୟୁଧାର୍ଜିତସୁନୀଳସହସ୍ରହସ୍ତାଂ
ରକ୍ତୋତ୍ପଳାଭଚରଣାଂ ଭବତୀଂ ପରେଶାମ୍ ।। ୧ ।।
ପ୍ରାତର୍ନମାମି ମହିଷାସୁର-ଚଣ୍ଡମୁଣ୍ଡ-
ଶୁମ୍ଭାସୁରପ୍ରମୁଖଦୈତ୍ୟବିନାଶଦକ୍ଷାମ୍ ।
ବ୍ରହ୍ମେନ୍ଦ୍ରରୁଦ୍ରମୁନିମୋହନଶୀଳଲୀଳାଂ
ଚଣ୍ଡୀଂ ସମସ୍ତସୁରମୂର୍ତ୍ତିମନେକରୂପାମ୍ ।। ୨ ।।
ପ୍ରାତର୍ଭଜାମି ଭଜତାମଭିଳାଷଦାତ୍ରୀଂ
ଧାତ୍ରୀଂ ସମସ୍ତଜଗତାଂ ଦୁରିତାପହନ୍ତ୍ରୀମ୍ ।
ସଂସାରବନ୍ଧନବିମୋଚନହେତୁଭୂତାଂ
ମାୟାଂ ପରାଂ ସମଧିଗମ୍ୟ ପରସ୍ୟ ବିଷ୍ଣୋଃ ।। ୩ ।।
ଇତି ଶ୍ରୀଦେବୀପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

## ଶ୍ରୀଗଣେଶପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ଗଣନାଥମନାଥବନ୍ଧୁଂ
ସିନ୍ଦୂରପୂରପରିଶୋଭିତଗଣ୍ଡଯୁଗ୍ମମ୍ ।
ଉଦ୍ଦଣ୍ଡବିଘ୍ନପରିଖଣ୍ଡନଚଣ୍ଡଦଣ୍ଡଂ
ଆଖଣ୍ଡଳାଦିସୁରନାୟକବୃନ୍ଦବନ୍ଦ୍ୟମ୍ ॥ ୧ ॥
ପ୍ରାତର୍ନମାମି ଚତୁରାନନବନ୍ଦ୍ୟମାନଂ
ଇଚ୍ଛାନୁକୂଳମଖିଳଂ ଚ ବରଂ ଦଦାନମ୍ ।
ତଂ ତୁନ୍ଦିଳଂ ଦ୍ୱିରସନାଧିପଯଜ୍ଞସୂତ୍ରଂ
ପୁତ୍ରଂ ବିଳାସଚତୁରଂ ଶିବୟୋଃ ଶିବାୟ ॥ ୨ ॥
ପ୍ରାତର୍ଭଜାମ୍ୟଭୟଦଂ ଖଲୁ ଭକ୍ତଶୋକ-
ଦାବାନଳଂ ଗଣବିଭୁଂ ବରକୁଞ୍ଜରାସ୍ୟମ୍ ।
ଅଜ୍ଞାନକାନନବିନାଶନହବ୍ୟବାହ-
ମୁତ୍ସାହବର୍ଦ୍ଧନମହଂ ସୁତମୀଶ୍ୱରସ୍ୟ ॥ ୩ ॥
ଶ୍ଳୋକତ୍ରୟମିଦଂ ପୁଣ୍ୟଂ ସଦା ସାମ୍ରାଜ୍ୟଦାୟକଂ ।
ପ୍ରାତରୁତ୍ଥାୟ ସତତଂ ଯଃ ପଠେତ୍ ପ୍ରୟତଃ ପୁମାନ୍ ॥ ୪ ॥
ଇତି ଶ୍ରୀଗଣେଶପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

## ଶ୍ରୀରାମଚନ୍ଦ୍ରପ୍ରାତଃସ୍ମରଣସ୍ତୋତ୍ରମ୍

ପ୍ରାତଃ ସ୍ମରାମି ରଘୁନାଥପଦାରବିନ୍ଦଂ
ମନ୍ଦସ୍ମିତଂ ମଧୁରଭାଷି ବିଶାଳଭାଲମ୍ ।
କର୍ଣ୍ଣାବଲମ୍ବି-ଚଳକୁଣ୍ଡଳ-ଶୋଭିଗଣ୍ଡଂ
କର୍ଣ୍ଣାନ୍ତଦୀର୍ଘନୟନଂ ନୟନାଭିରାମମ୍ ॥ ୧ ॥

ପ୍ରାତର୍ଭଜାମି ରଘୁନାଥକରାରବିନ୍ଦଂ
ରକ୍ଷୋଗଣାୟ ଭୟଦଂ ବରଦଂ ନିଜେଭ୍ୟଃ ।
ଯଦ୍ ରାଜସଂସଦି ବିଭଜ୍ୟ ମହେଶଚାପଂ
ସୀତାକରଗ୍ରହଣମଙ୍ଗଳମାପ ସଦ୍ୟଃ ॥ ୨ ॥
ପ୍ରାତର୍ନମାମି ରଘୁନାଥପଦାରବିନ୍ଦଂ
ବଜ୍ରାଙ୍କୁଶାଦି ଶୁଭରେଖି ଶୁଭାବହଂ ମେ ।
ଯୋଗୀନ୍ଦ୍ରମାନସମଧୁବ୍ରତସେବ୍ୟମାନଂ
ଶାପାପହଂ ସପଦି ଗୌତମଧର୍ମପତ୍ନ୍ୟାଃ ॥ ୩ ॥
ପ୍ରାତର୍ବଦାମି ବଚସା ରଘୁନାଥ ନାମ
ବାଗ୍‌ଦୋଷହାରି ସକଳଂ ଶମଳଂ ନିହନ୍ତି ।
ଯଦ୍ ପାର୍ବତୀ ସ୍ୱପତିନା ସହ ଭୋକ୍ତୁକାମା
ପ୍ରୀତ୍ୟା ସହସ୍ର ହରିନାମ ସମଂ ଜଜାପ ॥ ୪ ॥
ପ୍ରାତଃ ଶ୍ରୟେ ଶ୍ରୁତିନୁତାଂ ରଘୁନାଥମୂର୍ତ୍ତିଂ
ନୀଳାମ୍ବୁଜୋତ୍ପଳସିତେତରରତ୍ନନୀଳାମ୍ ।
ଆମୁକ୍ତମୌକ୍ତିକବିଶେଷବିଭୂଷଣାଢ୍ୟାଂ
ଧ୍ୟେୟାଂ ସମସ୍ତମୁନିଭିର୍ଜନମୁକ୍ତିହେତୁମ୍ ॥ ୫ ॥
ଯଃ ଶ୍ଳୋକପଞ୍ଚକମିଦଂ ପ୍ରୟତଃ ପଠେଦ୍ଧି
ନିତ୍ୟଂ ପ୍ରଭାତସମୟେ ପୁରୁଷଃ ପ୍ରବୁଦ୍ଧଃ ।
ଶ୍ରୀରାମକିଙ୍କରଜନେଷୁ ସ ଏବ ମୁଖ୍ୟୋ
ଭୂତ୍ୱା ପ୍ରୟାତି ହରିଲୋକମନନ୍ୟଲଭ୍ୟମ୍ ॥ ୬ ॥
ଇତି ଶ୍ରୀରାମଚନ୍ଦ୍ରପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।

# ସର୍ବଦେବାଦି ପ୍ରାତଃସ୍ମରଣସ୍ତୋତ୍ରମ୍

ବ୍ରହ୍ମା ମୁରାରିସ୍ତ୍ରିପୁରାନ୍ତକାରୀ ଭାନୁଃ ଶଶୀ ଭୂମିସୁତୋ ବୁଧଶ୍ଚ ।
ଗୁରୁଶ୍ଚ ଶୁକ୍ରଃ ଶନି-ରାହୁ-କେତବଃ କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତମ୍ ॥ ୧ ॥
ଲୋକେଶଚୈତନ୍ୟମୟାଧିଦେବ ଶ୍ରୀକାନ୍ତ ବିଷ୍ଣୋ ଭବଦାଜ୍ଞୟୈବ ।
ପ୍ରାତଃ ସମୁତ୍ଥାୟ ତବ ପ୍ରିୟାର୍ଥଂ ସଂସାରଯାତ୍ରାମନୁବର୍ତ୍ତୟିଷ୍ୟେ ॥ ୨ ॥
ଜାନାମି ଧର୍ମଂ ନ ଚ ମେ ପ୍ରବୃତ୍ତିଃ ଜାନାମ୍ୟଧର୍ମଂ ନ ଚ ମେ ନିବୃତ୍ତିଃ ।
ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି ॥ ୩ ॥
ହରେ ମୁରାରେ ମଧୁକୈଟଭାରେ ଗୋବିନ୍ଦ ଗୋପାଳ ମୁକୁନ୍ଦ ଶୌରେ ।
ଯଜ୍ଞେଶ ନାରାୟଣ କୃଷ୍ଣ ବିଷ୍ଣୋ ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷ ॥ ୪ ॥

କେଶବ ପୁଣ୍ଡରୀକାକ୍ଷୋ ମାଧବୋ ମଧୁସୂଦନଃ ।
ଚତ୍ୱାରୀମାନି ନାମାନି ପ୍ରାତରୁତ୍ଥାୟ ଯଃ ପଠେତ୍ ॥
ଅଚଳାଂ ଶ୍ରିୟମାପ୍ନୋତି ବିଷ୍ଣୁଲୋକଂ ସ ଗଚ୍ଛତି ॥ ୫ ॥
ପ୍ରଭାତେ ଯଃ ସ୍ମରେନ୍ନିତ୍ୟଂ ଦୁର୍ଗା ଦୁର୍ଗାକ୍ଷରଦ୍ୱୟମ୍ ।
ଆପଦସ୍ତସ୍ୟ ନଶ୍ୟନ୍ତି ତମଃ ସୂର୍ଯ୍ୟୋଦୟେ ଯଥା ॥ ୬ ॥

ଦୁର୍ଗା ଦୁର୍ଗେତି ବାଣୀ ପ୍ରସରତି ସହସା ଯସ୍ୟ ବକ୍ତ୍ରେ କଦାଚିତ୍
କୃତ୍ୱାଙ୍କେ ପାତି ଯତ୍ନାତ୍ ସୁତମିବ କମଳା ତଂ ତୁ ନାରାୟଣୋଽପି ।
କିଂ ବ୍ରୂମସ୍ତସ୍ୟ ଭାଗ୍ୟଂ ପ୍ରମଥଗଣପତିଃ ସାବଧାନୋ ଯଦର୍ଥେ
ବ୍ରହ୍ମାଶୀର୍ବାଦମୁଚ୍ଚୈର୍ନିରବଧି କୁରୁତେ ସ୍ୱସ୍ତିବାକ୍ୟଂ ଯମୋଽପି ॥ ୭ ॥
ଚକ୍ରଂ ଚକ୍ରୀ, ଶୂଳମାଦାୟ ଶୂଳୀ, ବଜ୍ରଂ ବଜ୍ରୀ ପାଶମାଦାୟ ପାଶୀ ।
ଧାବନ୍ତ୍ୟଗ୍ରେ ପୃଷ୍ଠତଃ ପାର୍ଶ୍ୱତଶ୍ଚ ଦୁର୍ଗା ଦୁର୍ଗା ବାଦିନୋ ରକ୍ଷଣାୟ ॥ ୮ ॥

ଜଗଦ୍ଧ୍ୱାନ୍ତପ୍ରଣାଶାୟ ବ୍ରହ୍ମଣେ ତ୍ରିଗୁଣାତ୍ମନେ ।
ତ୍ରୟୀମୟାୟ ସୂର୍ଯ୍ୟାୟ ନମସ୍ତୁଭ୍ୟଂ ତ୍ରିମୂର୍ତ୍ତୟେ ।। ୯ ।।
ବ୍ୟାସୋ-ବସିଷ୍ଠ-ବଳି-ବାମନ-ବାମଦେବାଃ
ବ୍ରହ୍ମା-ବରାହ-ବସୁ-ବାସୁକି-ବୈନତେୟାଃ ।
ବୈଶ୍ୱାନରୋ ବରୁଣ-ବାସବ-ଲୋକପାଳାଃ
ସ୍ୱପ୍ନେ ହରନ୍ତୁ ଦୁରିତଂ ମମ ସୁପ୍ରଭାତମ୍ ।। ୧୦ ।।
ହରିଂ ହରଂ ହରିଶ୍ଚନ୍ଦ୍ରଂ ହନୂମନ୍ତଂ ହୁତାଶନମ୍ ।
ହକାରାଦୀନ୍ ସ୍ମରେନ୍ନିତ୍ୟଂ ହାନିସ୍ତସ୍ୟ ନ ବିଦ୍ୟତେ ।। ୧୧ ।।
ପୁଣ୍ୟଶ୍ଳୋକୋ ନଳୋ ରାଜା ପୁଣ୍ୟଶ୍ଳୋକୋ ଯୁଧିଷ୍ଠିରଃ ।
ପୁଣ୍ୟଶ୍ଳୋକା ଚ ବୈଦେହୀ ପୁଣ୍ୟଶ୍ଳୋକୋ ଜନାର୍ଦ୍ଦନଃ ।। ୧୨ ।।
(ପଦ୍ମ.ପୁ-୫୧ ଅ.)

ଅହଲ୍ୟା ଦ୍ରୌପଦୀ ତାରା ଶଚୀ ମନ୍ଦୋଦରୀ ତଥା ।
ପଞ୍ଚକନ୍ୟାଃ ସ୍ମରେନ୍ନିତ୍ୟଂ ମହାପାତକନାଶନମ୍ ।। ୧୩ ।।
(ପଦ୍ମ.ପୁ- ୫୧ ଅ.)

କର୍କୋଟକସ୍ୟ ନାଗସ୍ୟ ଦମୟନ୍ତ୍ୟା ନଳସ୍ୟ ଚ ।
ଋତୁପର୍ଣ୍ଣସ୍ୟ ରାଜର୍ଷେଃ କୀର୍ତ୍ତନଂ କଳିନାଶନମ୍ ।। ୧୪ ।।
(ମାର୍କ.ସ୍କ.)

ଅଶ୍ୱତ୍ଥାମା ବଳିର୍ବ୍ୟାସୋ ହନୁମାଂଶ୍ଚ ବିଭୀଷଣଃ ।
କୃପଃ ପରଶୁରାମଶ୍ଚ ସପ୍ତୈତେ ଚିରଜୀବିନଃ ।। ୧୫ ।।
(ପଦ୍ମ.ପୁ.୫୧ ଅ.)

ସପ୍ତୈତାନ୍ ଯଃ ସ୍ମରେନ୍ନିତ୍ୟଂ ମାର୍କଣ୍ଡେୟମଥାଷ୍ଟମମ୍ ।
ଜୀବେଦ୍ ବର୍ଷଶତଂ ସାଗ୍ରଂ ସର୍ବବ୍ୟାଧିବିବର୍ଜିତଃ ।। ୧୬ ।।

ବଳିର୍ବିଭୀଷଣୋ ଭୀଷ୍ମଃ ପ୍ରହ୍ଲାଦୋ ନାରଦୋଽର୍ଜୁନଃ ।
ଷଡେତାନ୍ ବୈଷ୍ଣବାନ୍ ସ୍ମୃତ୍ୱା ମୁଚ୍ୟତେ ଘୋରକିଲ୍ବିଷାତ୍ ॥ ୧୭ ॥
ଭୃଗୁର୍ବଶିଷ୍ଠଃ କ୍ରତୁରଙ୍ଗିରାଶ୍ଚ ମନୁଃ ପୁଲସ୍ତ୍ୟଃ ପୁଲହଶ୍ଚ ଗୌତମଃ ।
ରୈଭ୍ୟୋ ମରୀଚିଶ୍ଚ୍ୟବନଶ୍ଚ ଦକ୍ଷଃ କୁର୍ବନ୍ତୁସର୍ବେମମ ସୁପ୍ରଭାତମ୍ ॥ ୧୮ ॥
(ବାମନ ପୁ. ୧୪ ଅ.)

ସନତ୍କୁମାରଃ ସନକଃ ସନନ୍ଦନଃ ସନାତନୋଽପ୍ୟାସୁରିପିଙ୍ଗଳୌ ଚ ।
ସପ୍ତସ୍ୱରାଃ ସପ୍ତରସାତଳାନି କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତମ୍ ॥ ୧୯ ॥
(ବାମନ.ପୁ- ୧୪ ଅ.)

ସପ୍ତାର୍ଣ୍ଣବାଃ ସପ୍ତ କୁଳାଚଳାଶ୍ଚ ସପ୍ତର୍ଷୟୋ ଦ୍ୱୀପବନାନି ସପ୍ତ ।
ଭୂରାଦି କୃତ୍ୱା ଭୁବନାନି ସପ୍ତ କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତମ୍ ॥ ୨୦ ॥
(ବାମନ. ପୁ. ୧୪ ଅ)

ପୃଥ୍ୱୀ ସଗନ୍ଧା ସରସାସ୍ତଥାପଃ ସ୍ପର୍ଶୀ ଚ ବାୟୁର୍ଜ୍ୱଳନଂ ଚ ତେଜଃ ।
ନଭଃ ସଶବ୍ଦଂ ମହତା ସହୈବ କୁର୍ବନ୍ତୁ ସର୍ବେ ମମ ସୁପ୍ରଭାତମ୍ ॥ ୨୧ ॥
(ବାମନ. ପୁ. ୧୪ ଅ)

ପ୍ରହ୍ଲାଦନାରଦପରାଶରପୁଣ୍ଡରୀକ-
ବ୍ୟାସାମ୍ବରୀଷଶୁକଶୌନକଭୀଷ୍ମଦାଲ୍ଭ୍ୟାନ୍ ।
ରୁକ୍ମାଙ୍ଗଦାର୍ଜୁନବସିଷ୍ଠବିଭୀଷଣାଦୀନ୍
ପୁଣ୍ୟାନିମାନ୍ ପରମଭାଗବତାନ୍ ନମାମି ॥ ୨୨ ॥
ଧର୍ମୋ ବିବର୍ଦ୍ଧତି ଯୁଧିଷ୍ଠିରକୀର୍ତ୍ତନେନ
ପାପଂ ପ୍ରଣଶ୍ୟତି ବୃକୋଦରକୀର୍ତ୍ତନେନ ।
ଶତ୍ରୁର୍ବିନଶ୍ୟତି ଧନଞ୍ଜୟକୀର୍ତ୍ତନେନ
ମାଦ୍ରୀସୁତୌ କଥୟତାଂ ନ ଭବନ୍ତି ରୋଗାଃ ॥ ୨୩ ॥

ଉମା ଉଷା ଚ ବୈଦେହୀ ରମା ଗଙ୍ଗେତି ପଞ୍ଚକମ୍ ।
ପ୍ରାତରେବ ପଠେନ୍ନିତ୍ୟଂ ସୌଭାଗ୍ୟଂ ବର୍ଦ୍ଧତେ ସଦା ।। ୨୪ ।।
ସୋମନାଥୋ ବୈଦ୍ୟନାଥୋ ଧନ୍ୱନ୍ତରିରଥାଶ୍ୱିନୌ ।
ପଞ୍ଚୈତାନ୍ ଯଃ ସ୍ମରେନ୍ନିତ୍ୟଂ ବ୍ୟାଧିସ୍ତସ୍ୟ ନ ଜାୟତେ ।। ୨୫ ।।
କପିଳା କାଳିୟୋଽନନ୍ତୋ ବାସୁକିସ୍ତକ୍ଷକସ୍ତଥା ।
ପଞ୍ଚୈତାନ୍ ସ୍ମରତୋ ନିତ୍ୟଂ ବିଷବାଧା ନ ଜାୟତେ ।। ୨୬ ।।
ଆଦିତ୍ୟଶ୍ଚ ଉପେନ୍ଦ୍ରଶ୍ଚ ଚକ୍ରପାଣିର୍ମହେଶ୍ୱରଃ ।
ଦଣ୍ଡପାଣିଃ ପ୍ରତାପୀ ସ୍ୟାଦ୍ କ୍ଷୁତ୍ତୃଡ୍‌ବାଧା ନ ଜାୟତେ ।। ୨୭ ।।
ବସୁର୍ବରୁଣସୋମୌ ଚ ସରସ୍ୱତୀ ଚ ସାଗରଃ ।
ପଞ୍ଚୈତାନ୍ ସଂସ୍ମରେଦ୍ ଯସ୍ତୁ ତୃଷା ତସ୍ୟ ନ ବାଧତେ ।। ୨୮ ।।
ରାମଲକ୍ଷ୍ମଣୌ ସୀତା ଚ ସୁଗ୍ରୀବୋ ହନୁମାନ୍ କପିଃ ।
ପଞ୍ଚୈତାନ୍ ସ୍ମରତୋ ନିତ୍ୟଂ ମହାବାଧା ପ୍ରମୁଚ୍ୟତେ ।। ୨୯ ।।
ଅମରୀ କବରୀପୁଷ୍ପଂ ଭ୍ରମରୀମୁଖରୀକୃତମ୍ ।
ଦୂରୀକରୋତୁ ଦୁରିତଂ ଦୁର୍ଗାଚରଣପଙ୍କଜମ୍ ।। ୩୦ ।।
ଶିବେ କାଳି ଶିବେ କାଳି କାଳି କାଳି ଶିବେ ଶିବେ ।
ଶିବେ ଦୁର୍ଗେ ଶିବେ ଦୁର୍ଗେ ଦୁର୍ଗେ ଦୁର୍ଗେ ଶିବେ ଶିବେ ।। ୩୧ ।।

ଯଂ ବ୍ରହ୍ମ ବେଦାନ୍ତବିଦୋ ବଦନ୍ତି
ପରଂ ପ୍ରଧାନଂ ପୁରୁଷଂ ତଥାଽନ୍ୟେ ।
ବିଶ୍ୱୋଦ୍‌ଗତେଃ କାରଣମୀଶ୍ୱରଂ ବା
ତସ୍ମୈ ନମୋ ବିଘ୍ନବିନାଶନାୟ ।। ୩୨ ।।

ଶ୍ରୀରାମଃ ପୁରୁଷୋତ୍ତମୋ ନରହରିର୍ନାରାୟଣଃ କେଶବୋ
ଗୋବିନ୍ଦୋ ଗରୁଡଧ୍ୱଜୋ ଗୁଣନିଧିର୍ଦାମୋଦରୋ ମାଧବଃ ।
ଶ୍ରୀକୃଷ୍ଣଃ କମଳାପତିର୍ଯଦୁପତିଃ ସୀତାପତିଃ ଶ୍ରୀପତିଃ
ବୈକୁଣ୍ଠାଧିପତିଶ୍ଚରାଚରପତିର୍ଲକ୍ଷ୍ମୀପତିଃ ପାତୁ ମାମ୍ ।। ୩୩ ।।
ଶିବେତି ପରମେଶେତି ଶଙ୍କରେତି ହରେତି ଚ ।
ପାର୍ବତୀପ୍ରାଣନାଥେତି ବଦ ଜିହ୍ୱେ ନିରନ୍ତରମ୍ ।। ୩୪ ।।
ଶିବଃ ଶିବଃ ଶମ୍ଭୁଃ ଶମ୍ଭୁଃ ଶମ୍ଭୁଃ ଶମ୍ଭୁଃ ଶିବଃ ଶିବଃ ।
ଇତୀରୟନ୍ତି ଯେ ନିତ୍ୟଂ ତେ କୃତାର୍ଥାଃ କଳୌ ଯୁଗେ ।। ୩୫ ।।
ଶ୍ୱେତପଦ୍ମାସନା ଦେବୀ ଶ୍ୱେତ ପୁଷ୍ପୋପଶୋଭିତା ।
ଶ୍ୱେତାମ୍ବରଧରା ନିତ୍ୟା ଶ୍ୱେତଗନ୍ଧାନୁଲେପନା ।। ୩୬ ।।
ଶ୍ୱେତାକ୍ଷସୂତ୍ରହସ୍ତା ଚ ଶ୍ୱେତହଂସୋପରି ସ୍ଥିତା ।
ଶ୍ୱେତବୀଣାଧରା ଶୁଭ୍ରା ଶ୍ୱେତାଲଙ୍କାରଭୂଷିତା ।। ୩୭ ।।
ବନ୍ଦିତା ସିଦ୍ଧଗନ୍ଧର୍ବୈରର୍ଚିତା ସୁରଦାନବୈଃ ।
ପୂଜିତା ମୁନିଭିଃ ସର୍ବୈର୍ଋଷିଭି ସ୍ତୁୟତେ ସଦା ।। ୩୮ ।।
ସ୍ତୋତ୍ରେଣାନେନ ତାଂ ଦେବୀଂ ଜଗଦ୍ଧାତ୍ରୀଂ ସରସ୍ୱତୀଂ ।
ଯେ ସ୍ମରନ୍ତି ତ୍ରିସନ୍ଧ୍ୟାୟାଂ ସର୍ବାଂ ବିଦ୍ୟାଂ ଲଭନ୍ତି ତେ ।। ୩୯ ।।
ଅଯୋଧ୍ୟା ମଥୁରା କାଶୀ ଗୟା କାଞ୍ଚିରବନ୍ତିକା ।
ପୁରୀ ଦ୍ୱାରାବତୀ ଚୈବ ସପ୍ତୈତା ମୋକ୍ଷଦାୟିକାଃ ।। ୪୦ ।।
କାର୍ତ୍ତବୀର୍ଯାର୍ଜୁନୋ ନାମ ରାଜା ବାହୁସହସ୍ରଧୃକ୍ ।
ଯୋଽସ୍ୟ ସଂକୀର୍ତ୍ତୟେନ୍ନାମ କଲ୍ୟମୁତ୍ଥାୟ ମାନବଃ ।
ନ ତସ୍ୟ ବିତ୍ତନାଶଃ ସ୍ୟାନ୍ନଷ୍ଟଂ ଚ ଲଭତେ ପୁନଃ ।। ୪୧ ।।

ଆପଦାମପହର୍ତ୍ତାରଂ ଦାତାରଂ ସର୍ବସମ୍ପଦାମ୍ ।
ଲୋକାଭିରାମଂ ଶ୍ରୀରାମଂ ଭୂୟୋ ଭୂୟୋ ନମାମ୍ୟହମ୍ ।। ୪୨ ।।
ଅଜ୍ଞାନତିମିରାନ୍ଧସ୍ୟ ଜ୍ଞାନାଞ୍ଜନଶଳାକୟା ।
ଚକ୍ଷୁରୁନ୍ମୀଳିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।। ୪୩ ।।
ଗୁରୁର୍ବ୍ରହ୍ମା ଗୁରୁର୍ବିଷ୍ଣୁର୍ଗୁରୁର୍ଦେବୋ ମହେଶ୍ୱରଃ ।
ଗୁରୁରେବ ପରଂବ୍ରହ୍ମ ତସ୍ମୈ ଶ୍ରୀଗୁରବେ ନମଃ ।। ୪୪ ।।
ଅଖଣ୍ଡମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍ ।
ତତ୍ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀଗୁରବେ ନମଃ ।। ୪୫ ।।
ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ ।
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।। ୪୬ ।।

ଇତି ସର୍ବଦେବାଦିପ୍ରାତଃସ୍ମରଣସ୍ତୋତ୍ରଂ ସମ୍ପୂର୍ଣ୍ଣମ୍ ।।

## ଶ୍ରୀବିଷ୍ଣୁଷୋଡଶନାମସ୍ତୋତ୍ରମ୍

ଔଷଧେ ଚିନ୍ତୟେଦ୍ ବିଷ୍ଣୁଂ ଭୋଜନେ ଚ ଜନାର୍ଦ୍ଦନମ୍ ।
ଶୟନେ ପଦ୍ମନାଭଂ ଚ ବିବାହେ ଚ ପ୍ରଜାପତିମ୍ ।।
ଯୁଦ୍ଧେ ଚକ୍ରଧରଂ ଦେବଂ ପ୍ରବାସେ ଚ ତ୍ରିବିକ୍ରମମ୍ ।
ନାରାୟଣଂ ତନୁତ୍ୟାଗେ ଶ୍ରୀଧରଂ ପ୍ରିୟସଙ୍ଗମେ ।।
ଦୁଃସ୍ୱପ୍ନେ ସ୍ମର ଗୋବିନ୍ଦଂ ସଙ୍କଟେ ମଧୁସୂଦନମ୍ ।
କାନନେ ନରସିଂହଂ ଚ ପାବକେ ଜଳଶାୟିନମ୍ ।।
ଜଳମଧ୍ୟେ ବରାହଂ ଚ ପର୍ବତେ ରଘୁନନ୍ଦନମ୍ ।
ଗମନେ ବାମନଂ ଚୈବ ସର୍ବକାର୍ଯ୍ୟେଷୁ ମାଧବମ୍ ।।
ଷୋଡଶୈତାନି ନାମାନି ପ୍ରାତରୁତ୍ଥାୟ ଯଃ ପଠେତ୍ ।
ସର୍ବପାପବିନିର୍ମୁକ୍ତୋ ବିଷ୍ଣୁଲୋକେ ମହୀୟତେ ।।

## ଶ୍ରୀବିଷ୍ଣୁଙ୍କର ମାସଭେଦରେ ନାମ

କେଶବଂ ମାର୍ଗଶୀର୍ଷେ ତୁ ପୌଷେ ନାରାୟଣଂ ବିଦୁଃ ।
ମାଧବଂ ମାଘମାସେ ତୁ ଗୋବିନ୍ଦମଥ ଫାଲ୍‌ଗୁନେ ॥
ଚୈତ୍ରେ ବିଷ୍ଣୁଂ ତଥା ଦଦ୍ୟାଦ୍ ବୈଶାଖେ ମଧୁସୂଦନମ୍ ।
ତ୍ରିବିକ୍ରମଂ ତଥା ଜ୍ୟେଷ୍ଠେ ଆଷାଢେ ବାମନଂ ବିଦୁଃ ॥
ଶ୍ରାବଣେ ଶ୍ରୀଧରଂ ବିଦ୍ଧି ହୃଷୀକେଶଂ ତୁ ଭାଦ୍ରବେ ।
ଆଶ୍ୱିନେ ପଦ୍ମନାଭଂ ଚ ଊର୍ଜେ ଦାମୋଦରଂ ବିଦୁଃ ॥
ଦ୍ୱାଦଶୈତାନି ନାମାନି ପ୍ରାତରୁତ୍ଥାୟ ଯଃ ପଠେତ୍ ।
ସର୍ବପାପବିନିର୍ମୁକ୍ତୋ ବିଷ୍ଣୁଲୋକେ ମହୀୟତେ ॥

## ଦନ୍ତଧାବନବିଧି

### ଦାନ୍ତକାଠିର ନିରୂପଣ

ଦ୍ୱାଦଶାଙ୍ଗୁଳଂ ବିପ୍ରାଣାଂ କ୍ଷତ୍ରିୟାଣାଂ ଦଶାଙ୍ଗୁଳମ୍ ।
ଅଷ୍ଟାଙ୍ଗୁଳଂ ତୁ ବୈଶ୍ୟାନାଂ ଶୂଦ୍ରାଣାଞ୍ଚ ଷଡଙ୍ଗୁଳମ୍ ॥

ନରସିଂହପୁରାଣେ - (୫୮/୪୬-୫୧)

ମୁଖେ ପର୍ଯ୍ୟୁଷିତେ ନିତ୍ୟଂ ଭବତ୍ୟପ୍ରୟତୋ ନରଃ ।
ତସ୍ମାଚ୍ଛୁଷ୍କମଥାର୍ଦ୍ରଂ ବା ଭକ୍ଷୟେଦ୍ ଦନ୍ତଧାବନମ୍ ॥
ଖଦୀରଶ୍ଚ କରଞ୍ଜଶ୍ଚ କଦମ୍ବଶ୍ଚ ବଟସ୍ତଥା ।
ତିନ୍ତିଡୀ ବେଣୁପୃଷ୍ଠଂ ଚ ଆମ୍ରନିମ୍ବୌ ତଥୈବ ଚ ॥
ଅପାମାର୍ଗଶ୍ଚ ବିଲ୍ୱଶ୍ଚ ଅର୍କଶ୍ଚୋଦୁମ୍ବରସ୍ତଥା ।
ଏତେ ପ୍ରଶସ୍ତାଃ କଥିତା ଦନ୍ତଧାବନକର୍ମଣି ॥

ଦନ୍ତକାଷ୍ଠସ୍ୟ ବକ୍ଷ୍ୟାମି ସମାସେନ ପ୍ରଶସ୍ତତାଂ ।
ସର୍ବେ କଣ୍ଟକିନଃ ପୁଣ୍ୟାଃ କ୍ଷିରିଣଶ୍ଚ ଯଶସ୍ୱିନଃ ।।
କଟୁତିକ୍ତକଷାୟାଦ୍ୟାଃ ଧନାରୋଗ୍ୟସୁଖପ୍ରଦାଃ ।
ଅଷ୍ଟାଙ୍ଗୁଳେନ ମାନେନ ତତ୍ପ୍ରମାଣମିହୋଚ୍ୟତେ ।
ପ୍ରାଦେଶମାତ୍ରମଥବା ତେନ ଦନ୍ତାନ୍ ବିଶୋଧୟେତ୍ ।।

**ଦନ୍ତକାଷ୍ଠନିମିତ୍ତ ବୃକ୍ଷପ୍ରାର୍ଥନା -**

ଆୟୁର୍ବଳଂ ଯଶୋ ବର୍ଚଃ ପ୍ରଜାଃ ପଶୁବସୂନି ଚ ।
ବ୍ରହ୍ମ ପ୍ରଜ୍ଞାଂ ଚ ମେଧାଂ ଚ ତ୍ୱଂ ନୋ ଦେହି ବନସ୍ପତେ ।।

ବ୍ରତ, ଉପବାସ, ଶ୍ରାଦ୍ଧ, ଜନ୍ମଦିନ, ବିବାହ ପ୍ରଭୃତି ଦିବସରେ ଦନ୍ତଧାବନ ନିଷିଦ୍ଧ । ଏହି ନିଷିଦ୍ଧ ଦିବସମାନଙ୍କରେ ତଥା ଦନ୍ତକାଷ୍ଠର ଅପ୍ରାପ୍ତିରେ ଦ୍ୱାଦଶ ଗଣ୍ଡୁଷ ଜଳଦ୍ୱାରା ମୁଖଶୋଧନ କରିବା ବିଧେୟ ବୋଲି ପରାଶରମାଧବୀୟକାରଙ୍କର ମତ ।

## ସ୍ନାନବିଧି

ପ୍ରାତଃ ସମାଚରେତ୍ ସ୍ନାନଂ ତଚ୍ଚ ନିତ୍ୟମିତି ସ୍ମୃତମ୍ ।
ଉଚ୍ଛିଷ୍ଟାଦ୍ୟୁପଘାତାଦୌ ତଥୈବ ମୃତସୂତକେ ।।
ଚନ୍ଦ୍ରସୂର୍ଯ୍ୟୋପରାଗାଦୌ ସ୍ନାନଂ ନୈମିତ୍ତିକଂ ସ୍ମୃତମ୍ ।
ପୁଣ୍ୟତୀର୍ଥାଦିକଂ ସ୍ନାନଂ ଦୈବଜ୍ଞବିଧିଚୋଦିତମ୍ ।
ତଦ୍ଧି କାମ୍ୟଂ ସମୁଦ୍ଦିଷ୍ଟଂ ନାକାମସ୍ତୁ ପ୍ରୟୋଜନାତ୍ ।।

ସ୍ନାନ ସାତପ୍ରକାର ଯଥା - ମନ୍ତ୍ର, ବାରୁଣ, ଆଗ୍ନେୟ, ପାର୍ଥିବ, ଦିବ୍ୟ, ବାୟବ୍ୟ ତଥା ମାନସ । ଏହା ମଧ୍ୟରୁ ବାରୁଣସ୍ନାନ ସର୍ବାଦୌ ପ୍ରଶସ୍ତ । ଅସୁସ୍ଥ ଅବସ୍ଥାରେ ଅଥବା ବାରୁଣ ସ୍ନାନ ଅସମ୍ଭବ ହେଲେ ଅନ୍ୟ ସ୍ନାନ

କର୍ତ୍ତବ୍ୟ । ବାରୁଣ ସ୍ନାନ ତିନିଭାଗରେ ବିଭକ୍ତ । ଯଥା - ନିତ୍ୟ, ନୈମିତ୍ତିକ ଓ କାମ୍ୟ । ପ୍ରାତଃକାଳୀନ ସ୍ନାନକୁ ନିତ୍ୟସ୍ନାନ କହନ୍ତି । ଉଚ୍ଛିଷ୍ଟସ୍ପର୍ଶ, ମଳମୂତ୍ରାଦିସ୍ପର୍ଶ, ରୋଗମୁକ୍ତି ପରକାଳୀନ ସ୍ନାନ, ମୃତକ ତଥା ସୂତକାଶୌଚଜନିତସ୍ନାନ, ସଂକ୍ରାନ୍ତିସ୍ନାନ ଓ ଗ୍ରହଣସ୍ନାନ ନୈମିତ୍ତିକସ୍ନାନାନ୍ତର୍ଗତ ଅଟେ । ସ୍ନାନକର୍ମର ଷଡଙ୍ଗ ଯଥା- ତୀର୍ଥାବାହନ, ଜଳାବଲମ୍ବନ, ଆଚମନ, ମାର୍ଜନ, ଅନ୍ତର୍ଜଳଜପ ଓ ମାର୍ଜନ । ଏହି କର୍ମକ୍ରମକୁ ଅନୁସରଣ କରି ସ୍ନାନ କରିବା ବିଧେୟ । ଏ ସମ୍ବନ୍ଧରେ ଧର୍ମଶାସ୍ତ୍ରଗ୍ରନ୍ଥମାନଙ୍କରେ ବିସ୍ତୃତ ବର୍ଣ୍ଣନା ହୋଇଅଛି ।

## ସ୍ନାନ ପୂର୍ବପାଠ୍ୟ

### ମୃତ୍ତିକା ପ୍ରାର୍ଥନା -

ତ୍ୱଂ ଧରେ ସର୍ବଭୂତାନାଂ କ୍ଷମାଯୁକ୍ତାଽସି ନିତ୍ୟଶଃ ।
ସର୍ବକର୍ମ କରିଷ୍ୟାମି ମୃତ୍ତିକାଂ ଦେହି ମେ ମହି ! ।।

### ଶରୀରରେ ମୃତ୍ତିକାଲେପନ -

ଓଁ ଅଶ୍ୱକ୍ରାନ୍ତେ ରଥକ୍ରାନ୍ତେ ବିଷ୍ଣୁକ୍ରାନ୍ତେ ବସୁନ୍ଧରେ ।
ମୃତ୍ତିକେ ହର ମେ ପାପଂ ଯନ୍ମୟା ଦୁଷ୍କୃତଂ କୃତମ୍ ।।
ଉଦ୍ଧୃତାଽସି ବରାହେଣ କୃଷ୍ଣେନ ଶତବାହୁନା ।
ଆରୁହ୍ୟ ମମ ଗାତ୍ରାଣି ସର୍ବଂ ପାପଂ ବିଶୋଧୟ ।।

ଏହି ମନ୍ତ୍ରରେ ଦକ୍ଷିଣହସ୍ତରେ ନାଭିରୁ ଉର୍ଦ୍ଧ୍ୱାଙ୍ଗରେ ଶିରଃପର୍ଯନ୍ତ ମୃତ୍ତିକାଲେପନ କରି କ୍ଷାଳନ କରିବ । ବାମହସ୍ତରେ ନାଭିର ଅଧଃପ୍ରଦେଶପର୍ଯନ୍ତ ମୃତ୍ତିକା ଲେପନ କରି କ୍ଷାଳନ କରିବ ।

ତୀର୍ଥପ୍ରାର୍ଥନା -

ଓଁ ବିଷ୍ଣୋଃ ପାଦପ୍ରସୂତାସି ବୈଷ୍ଣବୀ ବିଷ୍ଣୁପୂଜିତା ।
ପାହି ନସ୍ତେନସସ୍ତସ୍ମାଦାଜନ୍ମମରଣାନ୍ତିକାତ୍ ॥
ତିସ୍ରଃ କୋଟ୍ୟର୍ଦ୍ଧକୋଟୀ ଚ ତୀର୍ଥାନାଂ ବାୟୁରବ୍ରବୀତ୍ ।
ଦିବି ଭୁବ୍ୟନ୍ତରିକ୍ଷଂ ଚ ତାନି ତେ ସନ୍ତି ଜାହ୍ନବୀ ॥
ନନ୍ଦିନୀତ୍ୟେବ ତେ ନାମ ଦେବେଷୁ ନଳିନୀତି ଚ ।
ନନ୍ଦା ପୃଥ୍ୱୀ ଚ ସୁଭଗା ବିଶ୍ୱକାୟା ଶିବା ସିତା ।
ବିଦ୍ୟାଧରୀ ସୁପ୍ରସନ୍ନା ତଥା ଲୋକପ୍ରସାଦିନୀ ।
କ୍ଷେମା ଚ ଜାହ୍ନବୀ ଚୈବ ଶାନ୍ତା ଶାନ୍ତିପ୍ରଦାୟିନୀ ॥
ଭାଗୀରଥୀ ଭୋଗବତୀ ଜାହ୍ନବୀ ତ୍ରିଦଶେଶ୍ୱରୀ ।
ଏତାନି ପୁଣ୍ୟନାମାନି ସ୍ନାନକାଳେ ପ୍ରକୀର୍ତ୍ତୟେତ୍ ॥
ଆଦ୍ୟା ଗୋଦାବରୀ ଗଙ୍ଗା ଦ୍ୱିତୀୟା ଚ ପୁନଃପୁନା ।
ତୃତୀୟା କଥିତା ରେବା ଚତୁର୍ଥୀ ଜାହ୍ନବୀ ସ୍ମୃତା ॥
କାବେରୀ ଗୋମତୀ କୃଷ୍ଣା ବ୍ରାହ୍ମୀ ବୈତରଣୀ ତଥା ।
ବିଷ୍ଣୁପାଦାଗ୍ରସମ୍ଭୂତା ଗଙ୍ଗେ ତ୍ରିପଥଗାମିନୀ ।
ଧର୍ମଦ୍ରବୀତି ବିଖ୍ୟାତେ ପାପଂ ମେ ହର ଜାହ୍ନବୀ ॥

**ସ୍ନାନବିଧିଃ** - ଆଚମନାନନ୍ତରଂ ଶ୍ରୀବିଷ୍ଣବେ ନମଃ । ଅଦ୍ୟ ଅମୁକେ ମାସି ଅମୁକପକ୍ଷେ ଅମୁକତୀର୍ଥେ ଅମୁକସଗୋତ୍ରସ୍ୟ ଶ୍ରୀ ଅମୁକଦେବଶର୍ମା, ଅମୁକବର୍ମା, ଗୁପ୍ତଃ ଦାସୋ ବା ଶ୍ରୀ ବିଷ୍ଣୁପ୍ରୀତିକାମଃ ଅଦ୍ୟ ଗଙ୍ଗାୟାଂ ସ୍ନାନମହଂ କରିଷ୍ୟେ ଇତି ।

ଏହା କହି ମୁଖ-ନାସିକା-ଚକ୍ଷୁଃ-କର୍ଣ୍ଣାଦିକୁ ଦୁଇ ହାତରେ ବନ୍ଦ କରି ଜଳରେ ନିମଜ୍ଜନ କରିବ ।

**ସ୍ନାନସମୟେ ତୀର୍ଥାବାହନ -**

ଓଁ ଗଙ୍ଗେ ଚ ଯମୁନେ ଚୈବ ଗୋଦାବରି ସରସ୍ୱତି !
ନର୍ମଦେ ସିନ୍ଧୁ କାବେରୀ ଜଲେଽସ୍ମିନ୍ ସନ୍ନିଧିଂ କୁରୁ ।।
କୁରୁକ୍ଷେତ୍ର-ଗୟା-ଗଙ୍ଗା-ପ୍ରଭାସ-ପୁଷ୍କରାଣି ଚ ।
ଏତାନି ପୁଣ୍ୟତୀର୍ଥାନି ସ୍ନାନକାଲେ ଭବନ୍ତିହ ।।

**ଗଙ୍ଗାପ୍ରାର୍ଥନା -**

ସ୍ୱର୍ଗାରୋହଣସୋପାନ ତ୍ୱଦୀୟମୁଦକଂ ଶୁଭେ ।
ଅତଃ ସ୍ପୃଶାମି ପାଦାଭ୍ୟାଂ ଗଙ୍ଗେ ଦେବି ନମୋଽସ୍ତୁ ତେ ।।
ତତସ୍ତୁ ମସ୍ତକେ ଧୃତ୍ୱା ଗାଙ୍ଗେୟଂ ବାରି ଭକ୍ତିତଃ ।
ସ୍ନାନାର୍ଥଂ ପ୍ରପଠେତ୍ ସ୍ତୋତ୍ରଂ ପ୍ରାଞ୍ଜୋ ଗଙ୍ଗେତି କୀର୍ତ୍ତୟେତ୍ ।।

## ଶ୍ରୀଗଙ୍ଗାସ୍ତୋତ୍ରମ୍

ଦେବୀ ସୁରେଶ୍ୱରି ଭଗବତି ଗଙ୍ଗେ,
ତ୍ରିଭୁବନତାରିଣି ତରଳତରଙ୍ଗେ ।
ଶଙ୍କରମୌଳିନିବାସିନି ବିମଲେ
ମମ ମତିରାସ୍ତାଂ ତବ ପଦକମଲେ ।। ୧ ।।
ଭାଗୀରଥି ସୁଖଦାୟିନି ମାତଃ,
ତବ ଜଳମହିମା ନିଗମେ ଖ୍ୟାତଃ ।
ନାହଂ ଜାନେ ତବ ମହିମାନଂ
ତ୍ରାହି କୃପାମୟି ମାମଜ୍ଞାନମ୍ ।। ୨ ।।

ହରିପଦପଦ୍ମତରଙ୍ଗିଣି ଗଙ୍ଗେ,
ବିବୁଧବଧୂକୁଚକୁଙ୍କୁମପିଙ୍ଗେ ।
ବିଳସିତଗଙ୍ଗେ ପୁଣ୍ୟତରଙ୍ଗେ,
ଜୟ ଜୟ ଜାହ୍ନବି କରୁଣାପାଙ୍ଗେ ।। ୩ ।।
ଦୂରୀକୁରୁ ମମ ଦୁଷ୍କୃତଭାରଂ,
କୁରୁ କୃପୟା ଭବସାଗରପାରମ୍ ।
ତବ ଜଳମମଳଂ ଯେନ ଚ ପୀତଂ
ପରମପଦଂ ଖଳୁ ତେନ ଗୃହୀତମ୍ ।
ମାତର୍ଗଙ୍ଗେ ତ୍ୱୟି ଯୋ ଭକ୍ତଃ
କିଲ ତଂ ଦ୍ରଷ୍ଟୁଂ ନ ଯମଃ ଶକ୍ତଃ ।। ୪ ।।
ପତିତୋଦ୍ଧାରିଣି ଜାହ୍ନବି ଗଙ୍ଗେ,
ଖଣ୍ଡିତଗିରିବରମଣ୍ଡିତଭଙ୍ଗେ ।
ଭୀଷ୍ମଜନନି ଜହ୍ନୁମୁନିବରକନ୍ୟେ,
ନରକନିବାରିଣି ତ୍ରିଭୁବନଧନ୍ୟେ ।। ୫ ।।
କଳ୍ପଲତାମିବ ଫଳଦାଂ ଲୋକେ,
ପ୍ରଣମତି ଯସ୍ତ୍ୱାଂ ନ ପତତି ଶୋକେ ।
ପାରାବାରବିହାରିଣି ଗଙ୍ଗେ,
ହିମବଧୂମୁକ୍ତା-ବିଶଦତରଙ୍ଗେ ।। ୬ ।।
ତବ କୃପୟା ଚେତ୍ ସ୍ରୋତଃ ସ୍ନାତଃ
ପୁନରପି ଜଠରେ ସୋଽପି ନ ଜାତଃ ।
ନରକନିବାରିଣି ଜାହ୍ନବି ଗଙ୍ଗେ,
କଳୁଷବିନାଶିନି ମହିମୋତ୍ତୁଙ୍ଗେ ।। ୭ ।।

ପୁନରସଦଙ୍ଗେ ପୁଣ୍ୟତରଙ୍ଗେ,
ଜୟ ଜୟ ଜାହ୍ନବି କରୁଣାପାଙ୍ଗେ ।
ଇନ୍ଦ୍ରମୁକୁଟମଣିରାଜିତଚରଣେ,
ସୁଖଦେ ଶୁଭଦେ ଭୃତ୍ୟଶରଣେ ।। ୮ ।।
ରୋଗଂ ଶୋକଂ ପାପଂ ତାପଂ
ହର ମେ ଭଗବତି କଲୁଷକଲାପମ୍ ।
ତ୍ରିଭୁବନସାରେ ବସୁଧାହାରେ
ତ୍ୱମସି ଗତିର୍ମମ ଖଲୁ ସଂସାରେ ।। ୯ ।।
ଅଲକାନନ୍ଦେ ପରମାନନ୍ଦେ
କୁରୁ କରୁଣାମୟି କାତରବନ୍ଦ୍ୟେ ।
ତବ ତଟନିକଟେ ଯସ୍ୟ ନିବାସଃ
ଖଲୁ ବୈକୁଣ୍ଠେ ତସ୍ୟ ବିଳାସଃ ।। ୧୦ ।।
ବରମିହ ତୀରେ କମଠୋ ମୀନଃ,
କିମ୍ବା ତୀରେ ସରଟଃ କ୍ଷୀଣଃ ।
ଗବ୍ୟୂତୌ ବା ଶ୍ୱପଚୋ ଦୀନୋ
ନ ପୁନର୍ଦୂରେ ନୃପତିକୁଳୀନଃ ।। ୧୧ ।।
ଭୋ ଭୁବନେଶ୍ୱରି ପୁଣ୍ୟେ ଧନ୍ୟେ,
ଦେବି ଦ୍ରବମୟି ଗିରିବରକନ୍ୟେ ।
ଗଙ୍ଗାସ୍ତବମିମମମଳଂ ନିତ୍ୟଂ
ପଠତି ନରୋ ଯଃ ସ ଜୟତି ସତ୍ୟମ୍ ।। ୧୨ ।।

ଯେଷାଂ ହୃଦୟେ ଗଙ୍ଗାଭକ୍ତି -
ସ୍ତେଷାଂ ଭବତି ସଦା ସୁଖମୁକ୍ତିଃ ।
କାନ୍ତମଧୁପଦକୁଜ୍‌ଝଟିକାଭିଃ
ପରମାନନ୍ଦକଳିତଲଳିତାଭିଃ ।। ୧୩ ।।
ଗଙ୍ଗାସ୍ତୋତ୍ରମିଦଂ ଭବସାରଂ,
ବାଞ୍ଛିତଫଳଦଂ ବିଦିତମୁଦାରମ୍ ।
ଶଙ୍କରସେବକ-ଶଙ୍କରରଚିତଂ
ପଠେଦବିଷୟାଦରତିସମାପ୍ତମ୍ ।। ୧୪ ।।

ଇତି ଶ୍ରୀମତ୍ ଶଙ୍କରାଚାର୍ଯ୍ୟକୃତଂ ଶ୍ରୀଗଙ୍ଗାସ୍ତୋତ୍ରଂ ସମାପ୍ତମ୍ ।।

## ବୈଶାଖସ୍ନାନମନ୍ତ୍ର

ବୈଶାଖେ ମେଷଗେ ଭାନୌ ମୁରାରେ ମଧୁସୂଦନ ।
ପ୍ରାତଃସ୍ନାନେନ ମେ ନାଥ ବରଦୋ ଭବ ପାପହା ।।

## କାର୍ତ୍ତିକସ୍ନାନମନ୍ତ୍ର

କାର୍ତ୍ତିକେଽହଂ କରିଷ୍ୟାମି ପ୍ରାତଃସ୍ନାନଂ ଜନାର୍ଦ୍ଦନ ।
ପ୍ରୀତ୍ୟର୍ଥଂ ତବ ଦେବେଶ ଦାମୋଦର ମୟା ସହ ।।

## ମାଘସ୍ନାନମନ୍ତ୍ର

ମକରସ୍ଥେ ରବୌ ମାଘେ ଗୋବିନ୍ଦାଚ୍ୟୁତ ମାଧବ ।
ସ୍ନାନେନାନେନ ଦେବେଶ ଯଥୋକ୍ତଫଳଦୋ ଭବ ।।

## ମାଘସପ୍ତମୀ (ତିଳସପ୍ତମୀ) ସ୍ନାନମନ୍ତ୍ର

ଯଦ୍‌ଯଜ୍ଜନ୍ମକୃତଂ ପାପଂ ମୟା ସପ୍ତସୁ ଜନ୍ମସୁ ।
ତନ୍ମେ ରୋଗଂ ଚ ଶୋକଂ ଚ ମାକରୀ ହନ୍ତୁ ସପ୍ତମୀ ।।

ଅର୍ଘ୍ୟମନ୍ତ୍ର -

ଜନନୀ ସର୍ବଭୂତାନାଂ ସପ୍ତମି ସପ୍ତସପ୍ତିକେ ।
ସପ୍ତବ୍ୟାହୃତିକେ ଦେବି ନମସ୍ତେ ରବିମଣ୍ଡଳେ ॥

ନମସ୍କାରମନ୍ତ୍ର -

ସପ୍ତସପ୍ତିବହ ପ୍ରୀତ ସପ୍ତଦୀପପ୍ରଦୀପକ ।
ସପ୍ତମ୍ୟାଂ ଚ ନମସ୍ତୁଭ୍ୟଂ ନମୋଽନନ୍ତାୟ ବେଧସେ ॥

## ଗ୍ରହଣସ୍ନାନମନ୍ତ୍ର

ସ୍ୱସ୍ଥାନଂ ଗମ୍ୟତାଂ ରାହୋ/କେତୋ ତ୍ୟଜ୍ୟତାଂ ଚନ୍ଦ୍ରସଂଗମଃ ।
କର୍ମଚଣ୍ଡାଳଯୋନେସ୍ତ୍ୱଂ ମମ ପାପକ୍ଷୟଂ କୁରୁ ॥

ଅର୍ଘ୍ୟଦାନମନ୍ତ୍ର -

ଶଶଲାଞ୍ଛନଭୃଚ୍ଚନ୍ଦ୍ର ସୈଂହିକେୟରିପୋ ପ୍ରଭୋ ।
ଅର୍ଘ୍ୟଂ ଦଦାମି ଦେବେଶ ରାହୁଗ୍ରହବିମୋଚନାତ୍ ॥

ମୁକ୍ତିସ୍ନାନମନ୍ତ୍ର -

ଯଥାଽଽପଦୋ ବିମୁକ୍ତୋଽସି ରାହୋର୍ବଦନସଙ୍କଟାତ୍ ।
ତଥା ତ୍ୱଂ ରୋହିଣୀନାଥ ଆପଦୋ ମାଂ ବିମୋଚୟ ॥

ଜନ୍ମରାଶିରେ ସୂର୍ଯ୍ୟ ଥିଲେ, ଜନ୍ମନକ୍ଷତ୍ରରେ ଗ୍ରହଣ ହେଲେ, ଜନ୍ମରାଶି ଠାରୁ ଚତୁର୍ଥ, ସପ୍ତମ, ଅଷ୍ଟମ ଓ ଦ୍ୱାଦଶ ସ୍ଥାନରେ ଗ୍ରହଣ ହେଲେ ଗ୍ରହଣ ଦର୍ଶନ ଶୁଭପ୍ରଦ ନୁହେଁ ବୋଲି ଜ୍ୟୋତିଃଶାସ୍ତ୍ରବିଦ୍‌ଙ୍କର ମତ ।

# ବୃକ୍ଷପୂଜାପ୍ରକରଣ

## (୧) ତୁଳସୀପୂଜନ

### ତୁଳସୀଚୟନମନ୍ତ୍ର

ତୁଳସ୍ୟମୃତନାମାଽସି ସଦା ତ୍ୱଂ କେଶବପ୍ରିୟେ ।
କେଶବାର୍ଥେ ଚିନୋମି ତ୍ୱାଂ ବରଦା ଭବ ଶୋଭନେ ।।

### ତୁଳସୀଜଳଦାନମନ୍ତ୍ର

ଓଁ ଗୋବିନ୍ଦବଲ୍ଲଭାଂ ଦେବୀଂ ଭକ୍ତଚୈତନ୍ୟକାରିଣୀମ୍ ।
ସ୍ନାପୟାମି ଜଗଦ୍ଧାତ୍ରୀଂ ବିଷ୍ଣୁଭକ୍ତିପ୍ରଦାୟିନୀମ୍ ।।

### ତୁଳସୀପ୍ରଣାମମନ୍ତ୍ର

ଓଁ ବୃନ୍ଦାୟୈ ତୁଳସୀଦେବ୍ୟୈ ପ୍ରିୟାୟୈ କେଶବସ୍ୟ ଚ ।
ବିଷ୍ଣୁଭକ୍ତିପ୍ରଦାୟିନ୍ୟୈ ସତ୍ୟବତ୍ୟୈ ନମୋ ନମଃ ।।

### ତୁଳସୀପ୍ରଦକ୍ଷିଣମ୍

ଯାନି କାନି ଚ ପାପାନି ବ୍ରହ୍ମହତ୍ୟାଦିକାନି ଚ ।
ତାନି ସର୍ବଂ ବିନଶ୍ୟନ୍ତି ପ୍ରଦକ୍ଷିଣଂ ପଦେ ପଦେ ।।

### ତୁଳସୀଧ୍ୟାନମ୍

ଧ୍ୟାୟେଦ୍ଦେବୀଂ ନବଶଶୀମୁଖୀଂ ପକ୍ୱବିମ୍ବାଧରୋଷ୍ଠୀଂ
ବିଦ୍ୟୋତନ୍ତୀଂ କୁଚଯୁଗଭରାନମ୍ରକଙ୍କାଙ୍ଗଯଷ୍ଟିମ୍ ।
ଈଷଦ୍ଧାସ୍ୟାଂ ଲଳିତବଦନାଂ ଚନ୍ଦ୍ରସୂର୍ଯ୍ୟାଗ୍ନିନେତ୍ରାଂ
ଶ୍ୱେତାଙ୍ଗୀଂ ତାମଭୟବରଦାଂ ଶ୍ୱେତପଦ୍ମାସନସ୍ଥାମ୍ ।।

## ତୁଳସୀସ୍ତବ

ତୁଳସୀ ସର୍ବଭୂତାନାଂ ମହାପାତକନାଶିନୀ ।
ଅପବର୍ଗପ୍ରଦା ଦେବୀ ବୈଷ୍ଣବାନାଂ ପ୍ରିୟ ସଦା ॥
ସତ୍ୟେ ସତ୍ୟବତୀ ଚୈବ ତ୍ରେତାୟାଂ ମାନବୀ ତଥା ।
ଦ୍ୱାପରେ ଅବତୀର୍ଣ୍ଣାଽସି ବୃନ୍ଦା ତ୍ୱଂ ତୁଳସୀ କଳୌ ॥
ତ୍ୱନ୍ମୂଳେ ସର୍ବତୀର୍ଥାନି ତ୍ୱଦଗ୍ରେ ସର୍ବଦେବତାଃ ।
ତ୍ୱତ୍ପଦେ ସର୍ବଯଜ୍ଞାଶ୍ଚ ତୁଳସ୍ୟୈ ତେ ନମୋ ନମଃ ॥

ତୁଳସୀମନ୍ତ୍ର - ଓଁ ଶ୍ରୀଂ ହ୍ରୀଂ କ୍ଲୀଂ ଐଂ ବୃନ୍ଦାବତ୍ୟୈ ସ୍ୱାହା ॥

ତୁଳସୀଚୟନେ ନିଷିଦ୍ଧଦିବସ -

ସଂକ୍ରାନ୍ତ୍ୟାଂ ପକ୍ଷୟୋରନ୍ତେ, ଦ୍ୱାଦଶ୍ୟାଂ ନିଶି ସନ୍ଧ୍ୟୟୋଃ ।
ତୁଳସୀଂ ଯେ ବିଚିନ୍ୱନ୍ତି ତେ କୃନ୍ତନ୍ତି ହରେଃ ଶିରଃ ॥

(ସଂକ୍ରାନ୍ତି, ଅମାବାସ୍ୟା, ପୂର୍ଣ୍ଣିମା, ଦ୍ୱାଦଶୀ, ସନ୍ଧ୍ୟା ଓ ରାତ୍ରକାଳରେ ତୁଳସୀ ତୋଳିବା ନିଷିଦ୍ଧ । ଏହି ଦିନ ଓ ସମୟମାନଙ୍କରେ ତୁଳସୀଚୟନ ହରିଙ୍କ ଶିରଃଚ୍ଛେଦନ ସହ ସମାନ ଅଟେ ।)

## (୨) ବିଲ୍ୱପୂଜନ

### ବିଲ୍ୱପତ୍ରଚୟନମନ୍ତ୍ର

ପୁଣ୍ୟବୃକ୍ଷ ମହାଭାଗ ମାଲୂର-ଶ୍ରୀଫଳ ପ୍ରଭୋ ।
ମହେଶପୂଜନାର୍ଥାୟ ତ୍ୱତ୍ ପତ୍ରାଣି ଚିନୋମ୍ୟହମ୍ ॥

### ବିଲ୍ୱବୃକ୍ଷେ ଜଳଦାନମନ୍ତ୍ର

ଶ୍ରୀଫଳ ଶ୍ରୀନିକେତୋଽସି ସଦା ବିଜୟବର୍ଦ୍ଧନଃ ।
ଧର୍ମାର୍ଥକାମମୋକ୍ଷାୟ ସ୍ନାପୟାମି ଶିବପ୍ରିୟ ॥

## ବିଲ୍ୱବୃକ୍ଷପ୍ରଣାମମନ୍ତ୍ର

ଓଁ ମହାଦେବ ପ୍ରିୟକରୋ ବାସୁଦେବପ୍ରିୟଃ ସଦା ।
ଉମାପ୍ରୀତିକରୋ ବୃକ୍ଷୋ ବିଲ୍ୱରୂପୋ ନମୋଽସ୍ତୁ ତେ ।।

## (୩) ଅଶ୍ୱତ୍‌ଥପୂଜନ

## ଅଶ୍ୱତ୍‌ଥପ୍ରଣାମମନ୍ତ୍ର

ମୂଳତୋ ବ୍ରହ୍ମରୂପାୟ ମଧ୍ୟତୋ ବିଷ୍ଣୁରୂପିଣେ ।
ଅଗ୍ରତଃ ଶିବରୂପାୟ ବୃକ୍ଷରାଜ ନମୋଽସ୍ତୁ ତେ ।।
ଅଶ୍ୱତ୍‌ଥବୃକ୍ଷରୂପୋଽସି ମହାଦେବୋଽସି ବିଶ୍ରୁତଃ ।
ବିଷ୍ଣୁରୂପଧରୋଽସି ତ୍ୱଂ ପୁଣ୍ୟବୃକ୍ଷ ନମୋଽସ୍ତୁ ତେ ।।

ଅଶ୍ୱତ୍‌ଥବୃକ୍ଷରେ ଜଳଦାନମନ୍ତ୍ର -

ଓଁ ଚକ୍ଷୁସ୍ପନ୍ଦଂ ଭୁଜସ୍ପନ୍ଦଂ ତଥା ଦୁଃସ୍ୱପ୍ନଦର୍ଶନମ୍ ।
ଶତ୍ରୁଣାଞ୍ଚ ସମୁତ୍‌ଥାନମସ୍ୱାସ୍ଥ୍ୟଂ ଶମୟାଶୁ ମେ ।।
ଅଶ୍ୱତ୍‌ଥରୂପୀ ଭଗବାନ୍ ପ୍ରୀୟତାଂ ମେ ଜନାର୍ଦ୍ଦନ ।।

ପ୍ରଦକ୍ଷିଣମନ୍ତ୍ରଃ -

ଓଁ ଅଶ୍ୱତ୍‌ଥ ଯସ୍ମାତ୍ତ୍ୱୟି ବୃକ୍ଷରାଜେ
ନାରାୟଣସ୍ତିଷ୍ଠତି ସର୍ବକାଳମ୍ ।
ତସ୍ମାଚ୍ଛୁଚିସ୍ତ୍ୱଂ ସତତଂ ତରୁଣଂ
ଧନ୍ୟୋଽସି ଚାରିଷ୍ଟବିନାଶନୋଽସି ।।
ତ୍ୱାଂ ଦୃଷ୍ଟ୍ୱା ନଶ୍ୟତି ପାପଂ ସ୍ପୃଷ୍ଟ୍ୱା ଲକ୍ଷ୍ମୀର୍ବିବର୍ଦ୍ଧତେ ।
ପ୍ରଦକ୍ଷିଣାଦ୍ ଭବେଦାୟୁଃ ସଦାଽଶ୍ୱତ୍‌ଥ ନମୋଽସ୍ତୁ ତେ ।।

ଇତି ବୃକ୍ଷପୂଜାପ୍ରକରଣ ।।

# ତିଳକଧାରଣବିଧି

**ତିଳକଧାରଣମନ୍ତ୍ର -**

**କେଶବାନନ୍ତ ଗୋବିନ୍ଦ ବରାହ ପୁରୁଷୋତ୍ତମ ।**
**ପୁଣ୍ୟଂ ଯଶାଂସି ଚାୟୁଷ୍ୟଂ ତିଳକଂ ମେ ପ୍ରସୀଦତୁ ।।**

**ଚନ୍ଦନଦ୍ୱାରା ତିଳକଗ୍ରହଣମନ୍ତ୍ର -**

**କାନ୍ତିର୍ଲକ୍ଷ୍ମୀର୍ଧୃତିଃ ସୌଖ୍ୟଂ ସୌଭାଗ୍ୟମତୁଳଂ ମମ ।**
**ଦଦାତୁ ଚନ୍ଦନଂ ନିତ୍ୟଂ ସତତଂ ଧାରୟାମ୍ୟହମ୍ ।।**

ଏହାପରେ ନିମ୍ନୋକ୍ତପ୍ରକାରରେ ଉଚ୍ଚାରଣ କରି ତିଳକ ଧାରଣ କରିବ ।

ଲଲାଟେ - **କେଶବାୟ ନମଃ ।**
କଣ୍ଠେ - **ପୁରୁଷୋତ୍ତମାୟ ନମଃ ।**
ଉଦରେ - **ନାରାୟଣାୟ ନମଃ ।**
ଦକ୍ଷିଣବାହୌ - **ଶ୍ରୀଧରାୟ ନମଃ ।**
ବାମବାହୌ - **ବାସୁଦେବାୟ ନମଃ ।**
ହୃଦୟେ - **ମାଧବାୟ ନମଃ ।**
ଦକ୍ଷିଣପାର୍ଶ୍ୱେ - **ଗୋବିନ୍ଦାୟ ନମଃ ।**
ବାମପାର୍ଶ୍ୱେ - **ତ୍ରିବିକ୍ରମାୟ ନମଃ ।**
ବାମକର୍ଣ୍ଣମୂଳେ - **ବିଷ୍ଣବେ ନମଃ ।**
ଦକ୍ଷିଣକର୍ଣ୍ଣମୂଳେ - **ମଧୁସୂଦନାୟ ନମଃ ।**
ଶିରୋମଧ୍ୟେ - **ହୃଷୀକେଶାୟ ନମଃ ।**
ପୃଷ୍ଠେ - **ପଦ୍ମନାଭାୟ ନମଃ ।**

'ବାସୁଦେବାୟ ନମଃ' କହି ତିଳକଧୌତ ଜଳ ମସ୍ତକରେ ଦେବ ।

ତିଳକଧାରଣର ସ୍ଥାନ ବ୍ରହ୍ମାଣ୍ଡପୁରାଣାନୁସାରେ ଯଥା -

**ଲଲାଟେ କେଶବଂ ବିଦ୍ୟାନ୍ନାରାୟଣମଥୋଦରେ ।**
**ମାଧବଂ ହୃଦୟେ ନ୍ୟସ୍ୟ ଗୋବିନ୍ଦଂ କଣ୍ଠକୂର୍ପରେ ॥**
**ବିଷ୍ଣୁଂ ଚ ଦକ୍ଷିଣେ କୁକ୍ଷୌ ତଦ୍‌ଭୁଜେ ମଧୁସୂଦନମ୍ ।**
**ତ୍ରିବିକ୍ରମଂ କର୍ଣ୍ଣମୂଳେ ବାମକୁକ୍ଷୌ ତୁ ବାମନମ୍ ॥**
**ଶ୍ରୀଧରଂ ଚ ହୃଷୀକେଶଂ ବାମୟୋର୍ବାହୁକର୍ଣ୍ଣୟୋଃ ।**
**ପଦ୍ମନାଭଂ ପୃଷ୍ଠଦେଶେ କକୁଦ୍ ଦାମୋଦରଂ ନ୍ୟସେତ୍ ॥**
**ମୂର୍ଦ୍ଧ୍ନି ମୂଳେନ ମନ୍ତ୍ରେଣ ଶେଷୈର୍ଦ୍ୱାଦଶନାମଭିଃ ।**
**ସଙ୍କର୍ଷଣାଦିଭିଃ କୃଷ୍ଣେ ଶୁକ୍ଳେ ଚେତ୍ କେଶବାଦିଭିଃ ॥**

ଗନ୍ଧଧାରଣପ୍ରକାର ବ୍ରହ୍ମପୁରାଣରେ ମଧ କୁହାଯାଇଅଛି । ଯଥା -

**ଅଙ୍ଗୁଷ୍ଠଃ ପୁଷ୍ଟିଦଃ ପ୍ରୋକ୍ତୋ ମଧ୍ୟମା ପୁଷ୍ଟିକାରିଣୀ ।**
**ଅନାମିକାନ୍ନଦା ନିତ୍ୟଂ ମୁକ୍ତିଦା ଚ ପ୍ରଦେଶିନୀ ॥**
**ଏତୈରଙ୍ଗୁଳିଭେଦୈସ୍ତୁ କାରୟେନ୍ନ ନଖୈଃ ସ୍ପୃଶେତ୍ ।**
**ଅଭ୍ୟଙ୍ଗସ୍ନାନଂ କୁର୍ଯ୍ୟାଚ୍ଚେଦ୍ ଧାର୍ଯ୍ୟଂ ଚନ୍ଦନମେବ ଚ ॥**
**ଅନାମିକ୍ୟା ଚ ଦେବସ୍ୟ ଋଷୀଣାଂ ଚ ତଥୈବ ଚ ।**
**ଗନ୍ଧାନୁଲେପନଂ କାର୍ଯ୍ୟଂ ପ୍ରଯତ୍ନେନ ବିଶେଷତଃ ॥**
**ପିତୃ୍ଣାମର୍ପୟେଦ୍ ଗନ୍ଧଂ ତର୍ଜନ୍ୟା ଚ ସଦୈବ ହି ।**
**ତଥୈବ ମଧ୍ୟମାଙ୍ଗୁଲ୍ୟା ଧାର୍ଯ୍ୟଂ ଗନ୍ଧଂ ସ୍ୱୟଂ ବୁଧୈଃ ॥**

(ବାଜସନେୟାହ୍ନିକ-ପୃ-୨୦୬)

ପୁଷ୍ଟିକାମୀ ଜନ ଅଙ୍ଗୁଷ୍ଠ ବା ମଧ୍ୟମାଙ୍ଗୁଳି ଦ୍ୱାରା ତିଳକଧାରଣ କରିବେ । ଅନ୍ନକାମୀ ଜନ ଅନାମିକାଙ୍ଗୁଳି ଦ୍ୱାରା ଓ ମୁକ୍ତିକାମୀ ଜନ ତର୍ଜନୀ ଅଙ୍ଗୁଳିଦ୍ୱାରା ତିଳକଧାରଣ କରିବେ । କିନ୍ତୁ ତିଳକଧାରଣରେ ନଖ ସ୍ପର୍ଶ କରିବେ ନାହିଁ । ଅଭ୍ୟଙ୍ଗସ୍ନାନ ପରେ ଚନ୍ଦନ ଧାରଣ କରିବା ଆବଶ୍ୟକ । ଦେବତା ଓ ଋଷିମାନଙ୍କୁ ଅନାମିକାଙ୍ଗୁଳିରେ ଚନ୍ଦନ ବା ଗନ୍ଧଦ୍ରବ୍ୟ ସମର୍ପଣ କରିବ । ପିତୃପୁରୁଷମାନଙ୍କୁ ତର୍ଜନ୍ୟଙ୍ଗୁଳିରେ ଗନ୍ଧଦାନ କରିବ ଓ ନିଜେ ମଧ୍ୟମାଙ୍ଗୁଳିରେ ଚନ୍ଦନ ବା ଗନ୍ଧଧାରଣ କରିବ ।

# ଯଜୁର୍ବେଦୀୟ ସନ୍ଧ୍ୟାବିଧି

ପ୍ରାତଃକାଳରେ ଯଥାବିଧି ସ୍ନାନ ସମାପନ କରିବା ପରେ ସୋତ୍ତରୀୟ ଶୁଷ୍କବସ୍ତ୍ର ପରିଧାନ କରିବ । ଐଶାନ୍ୟ କୋଣକୁ ମୁଖ କରି ଓଁ ବାସୁଦେବାୟ ନମଃ ବୋଲି ଲଲାଟରେ, ଓ ସଂକର୍ଷଣାୟ ନମଃ ବୋଲି କଣ୍ଠରେ, ଓଁ ପ୍ରଦ୍ୟୁମ୍ନାୟ ନମଃ ବୋଲି ଦୁଇବାହୁରେ, ଓଁ ଅନିରୁଦ୍ଧାୟ ନମଃ ବୋଲି ଉଚ୍ଚାରଣ କରି ହୃଦୟରେ ଜଳଦ୍ୱାରା ତିଳକ କରିବ । ଏହାପରେ ଓଁ ବିଷ୍ଣୁ ବୋଲି ଛଅଥର କହି ଛଅଥର (ଦ୍ୱିରାଚମନ) ଆଚମନ କରିବ ।

**ଓଁ ତଦ୍ଵିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ ।**
**ଦିବୀବ ଚକ୍ଷୁରାତତମ୍ ॥ ୧ ॥**

(ଅର୍ଥ - ବେଦଜ୍ଞମାନେ ଅନ୍ତରିକ୍ଷରେ ବିଷ୍ଣୁଙ୍କର ପରିବ୍ୟାପ୍ତ ଚକ୍ଷୁ ପରି ପ୍ରକାଶିତ ଅନିବାରିତ ଗତିଯୁକ୍ତ ସେହି ପରମପଦକୁ ସଦାସର୍ବଦା ଦର୍ଶନ କରୁଥାଆନ୍ତି ।) ଏହି ମନ୍ତ୍ର ଉଚ୍ଚାରଣ କରି ଇନ୍ଦ୍ରିୟସ୍ପର୍ଶ କରିବ । ପ୍ରଥମେ ଦୁଇଥର ମୁଖ ମାର୍ଜନ କରିବ । ଡାହାଣ ହାତଦ୍ୱାରା ଜଳ ନେଇ ବାମହାତ ପାପୁଲିରେ ରଖିବ । ବାମହାତ ପାପୁଲିରୁ ସେହି ଜଳକୁ ଡାହାଣ ହାତ ପାପୁଲିକୁ ଏବଂ ପୁଣି ଡାହାଣହାତ ପାପୁଲିରୁ ନେଇ ବାମହାତ ପାପୁଲିରେ ରଖିବ । ସେହି ଜଳରେ ଡାହାଣହାତର ବୁଢାଆଙ୍ଗୁଠି, ମଧ୍ୟମାଙ୍ଗୁଳି ଓ ଅନାମିକା ଅଙ୍ଗୁଳିକୁ ବୁଡାଇ ମୁଖମଣ୍ଡଳକୁ, ତର୍ଜନୀ ଅଙ୍ଗୁଳି ଓ ବୃଦ୍ଧାଙ୍ଗୁଳିକୁ ବୁଡାଇ ଥରେ ଦୁଇ ଆଖିକୁ ଓ ଆଉଥରେ କାନ ଦୁଇଟିକୁ ସ୍ପର୍ଶ କରିବ । ତାହାପରେ ସେହି ଜଳରେ ଅଙ୍ଗୁଷ୍ଠାଙ୍ଗୁଳି ଓ କନିଷ୍ଠାଙ୍ଗୁଳି ବୁଡାଇ ନାଭିକୁ, ପାପୁଲିରେ ସେ ପାଣି ଲଗାଇ ହୃଦୟକୁ, ସବୁ ଅଙ୍ଗୁଳି

ଦ୍ୱାରା ମସ୍ତକ ପ୍ରଦେଶକୁ ଓ ସବୁ ଅଙ୍ଗୁଳିର ଅଗ୍ରଦ୍ୱାରା ଦୁଇ ବାହୁକୁ ସ୍ପର୍ଶ କରିବ । ଏହିପରି ବାରବାର ତିନିଥର ଇନ୍ଦ୍ରିୟ ସ୍ପର୍ଶ କରିବ । ଏହାପରେ ନାରାୟଣ ସ୍ମରଣ କରିବ । ମନ୍ତ୍ର ଯଥା -

**ଓଁ ବିଷ୍ଣୁଃ ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା ।**
**ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ ॥**

(ଅପବିତ୍ର ବା ପବିତ୍ରାବସ୍ଥାରେ ଥାଇ ପୁଣ୍ଡରୀକାକ୍ଷ (ନାରାୟଣ)ଙ୍କୁ ସ୍ମରଣ କଲେ ମନୁଷ୍ୟର ବାହାର ଓ ଭିତର ସର୍ବତୋଭାବରେ ଶୁଦ୍ଧ ହୋଇଥାଏ) ।

ତାପରେ ଶିଖାବନ୍ଧନ କରି ତିନୋଟି କୁଶ ଧରି ମନ୍ତ୍ରସ୍ନାନ ନିମିତ୍ତ ଜଳ ମାର୍ଜନ କରିବ । ମନ୍ତ୍ର ଯଥା -

**ଓଁ ଶନ୍ନ ଆପ ଇତି ମନ୍ତ୍ରସ୍ୟ, ପ୍ରଜାପତି ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଆପୋ ଦେବତାଃ, ଅପାଂ ମାର୍ଜନେ ବିନିଯୋଗଃ ।**
**ଓଁ ଶନ୍ନ ଆପୋ ଧନ୍ୱନ୍ୟାଃ ଶମୁନଃ ସନ୍ତ୍ୱନୂପ୍ୟାଃ ।**
**ଶନ୍ନଃ ସମୁଦ୍ରିୟା ଆପଃ ଶମୁନଃ ସନ୍ତୁ କୂପ୍ୟାଃ ॥ ୧ ॥**
**ଓଁ ଦ୍ରୁପଦାଦିବ ମନ୍ତ୍ରସ୍ୟ, କୋକିଳରାଜପୁତ୍ର ଋଷିଃ, ଅନୁଷ୍ଟୁପ୍‌ଛନ୍ଦଃ, ଆପୋ ଦେବତାଃ, ସୌତ୍ରାମଣ୍ୟବଭୃଥେ ବିନିଯୋଗଃ ।**
**ଓଁ ଦ୍ରୁପଦାଦିବ ମୁମୁଚାନଃ ସ୍ୱିନ୍ନଃ ସ୍ନାତୋ ମଳାଦିବ ।**
**ପୂତଂ ପବିତ୍ରେଣେବାଜ୍ୟମାପଃ ଶୁନ୍ଧନ୍ତୁ ମୈନସଃ ॥ ୨ ॥**
**ଓଁ ଆପୋହିଷ୍ଟେତି ମନ୍ତ୍ରସ୍ୟ, ସିନ୍ଧୁଦ୍ୱୀପ ଋଷିଃ, ଗାୟତ୍ରୀ ଛନ୍ଦଃ, ଆପୋ ଦେବତା, ଅପାଂ ମାର୍ଜନେ ବିନିଯୋଗଃ ।**
**ଓଁ ଆପୋହିଷ୍ଟା ମୟୋଭୁବସ୍ତା ନ ଉର୍ଜେ ଦଧାତନ ।**
**ମହେରଣାୟ ଚକ୍ଷସେ । ଯୋ ବଃ ଶିବତମୋ**

**ରସସ୍ତସ୍ୟ ଭାଜୟତେହ ନଃ ।**
**ଓଁ ଉଶତୀରିବ ମାତରଃ ତସ୍ମା ଅରଂ ଗମାମ ବୋ ।**
**ଯସ୍ୟ କ୍ଷୟାୟ ଜିନ୍ୱଥ,ଆପୋ ଜନୟଥା ଚ ନଃ ।। ୩ ।।**
**ଓଁ ଅଘମର୍ଷଣସୂକ୍ତସ୍ୟ, ଅଘମର୍ଷଣଋଷିଃ, ଅନୁଷ୍ଟୁପ୍ ଛନ୍ଦଃ,**
**ଭାବଭୃତଂ ଦୈବତମ୍, ଅଶ୍ୱମେଧାବଭୃଥେ ବିନିଯୋଗଃ ।**
**ଓଁ ଋତଞ୍ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟଜାୟତ ।**
**ତତୋ ରାତ୍ରିରଜାୟତ, ତତଃ ସମୁଦ୍ରୋଽଅର୍ଣ୍ଣବଃ ।**
**ସମୁଦ୍ରାଦର୍ଣ୍ଣବାଦଧି ସଂବତ୍ସରୋ ଅଜାୟତ ।**
**ଅହୋରାତ୍ରାଣି ବିଦଧଦ୍ ବିଶ୍ୱସ୍ୟ ମିଷତୋ ବଶୀ ।।**
**ସୂର୍ଯ୍ୟାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ ।**
**ଦିବଂ ଚ ପୃଥିବୀଂ ଚାନ୍ତରିକ୍ଷମଥୋ ସ୍ୱଃ ।। ୪ ।।**

ଏହି ମନ୍ତ୍ରମାନଙ୍କ ଦ୍ୱାରା ଜଳାଭିମନ୍ତ୍ରଣ କରି ମୁଣ୍ଡରେ ଛିଞ୍ଚିବ । ଏହାପରେ ଦକ୍ଷିଣହସ୍ତରେ ଜଳଚଳୁଏ ଧରି ଅଘମର୍ଷଣସୂକ୍ତରେ (ଋତଂ ଚ ସତ୍ୟଂ .... ଚାନ୍ତରିକ୍ଷମଥୋ ସ୍ୱଃ) ଋଷ୍ୟାଦିନ୍ୟାସପୂର୍ବକ ଅଭିମନ୍ତ୍ରିତ କରି ଦ୍ୱିରାଚମନବିଧିରେ (ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ, ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ) ପାନ କରିବେ ।

ଏହାପରେ ଗାୟତ୍ରୀମନ୍ତ୍ର ତିନିଥର ପାଠ କରି ତିନିଗୋଟି କୁଶଦ୍ୱାରା ମାର୍ଜନ କରି ମସ୍ତକରେ ଜଳସେଚନ କରିବ । ଗାୟତ୍ରୀମନ୍ତ୍ର ଯଥା -

**ଓଁ ଭୂର୍ଭୁବଃ ସ୍ୱଃ ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।।**

ଏହାପରେ ପୁନର୍ବାର 'ଆପୋହିଷ୍ଠା' ଇତ୍ୟାଦି ମନ୍ତ୍ରରେ ଋଷ୍ୟାଦିନ୍ୟାସପୂର୍ବକ ଏକଥର ମାର୍ଜନ କରିବ । ତା ପରେ -

**ଓଁ ଶନ୍ନ ଆପୋ ଧନ୍ୱନ୍ୟାଃ ଶଂ ନଃ ସନ୍ତ୍ୱନୂପ୍ୟାଃ ।**
**ଶନ୍ନଃ ସମୁଦ୍ରିୟା ଆପଃ ଶମୁନଃ ସନ୍ତୁ କୂପ୍ୟାଃ ।।**
**ଦ୍ରୁପଦାଦିବ ମୁମୁଚାନଃ ସ୍ୱିନ୍ନଃ ସ୍ନାତୋ ମଳାଦିବ ।**
**ପୂତଂ ପବିତ୍ରେଣେବାଜ୍ୟମାପଃ ଶୁନ୍ଧନ୍ତୁ ମୈନସଃ ।।**

ଏହି ମନ୍ତ୍ର ପଢି ମଧ ଏକଥର ମାର୍ଜନ କରିବ ।

## ଆସନଶୁଦ୍ଧି

କୁଶାଦି ଆସନରେ ସ୍ୱସ୍ତିକ ବା ପଦ୍ମାସନ ପ୍ରଭୃତି କରି ବସିବ । ଆସନଶୁଦ୍ଧିର ଋଷ୍ୟାଦିନ୍ୟାସ ନିମ୍ନମତେ କରିବ ।

**ଓଁ ଆସନମନ୍ତ୍ରସ୍ୟ । ମେରୁପୃଷ୍ଠ ଋଷିଃ । ସୁତଳଂ ଛନ୍ଦଃ ।**
**ଶ୍ରୀକୂର୍ମୋ ଦେବତା । ପୃଥ୍ୱୀ ବୀଜଂ । ଆକାଶଃ ଶକ୍ତିଃ ।**
**ଅନ୍ତରୀକ୍ଷଂ କୀଲକମ୍ । ଆସନଶୁଦ୍ଧୌ ବିନିଯୋଗଃ ।**

ଏହାପରେ ଜଳଚଳୁଏ ଧରି ନିମ୍ନ ମନ୍ତ୍ର ପାଠ କରି ନିଜର ଚାରିପାଖେ ବୁଲାଇ ଭୂମିରେ ପକାଇବ । ମନ୍ତ୍ର ଯଥା -

**ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବି ତ୍ୱଂ ବିଷ୍ଣୁନା ଧୃତା ।**
**ତ୍ୱଂ ଚ ଧାରୟ ମାଂ ଦେବି ପବିତ୍ରମାସନଂ କୁରୁ ।।**

ଏହା ପଢି ପୃଥିବୀଙ୍କୁ ପ୍ରାର୍ଥନା କରିବ ।

## ପ୍ରାଣାୟାମବିଧି

**ଋଷ୍ୟାଦିନ୍ୟାସ -**

**ଓଁ କାରସ୍ୟ ବ୍ରହ୍ମା ଋଷିଃ । ଦୈବୀ ଗାୟତ୍ରୀ ଛନ୍ଦଃ ।**
**ପରମାତ୍ମା ଦେବତା** (ମତାନ୍ତରେ ଅଗ୍ନିର୍ଦ୍ଦେବତା)
**ସର୍ବକର୍ମାରମ୍ଭେ ବିନିଯୋଗଃ ।**

ଓଁ ଖଂ ବ୍ରହ୍ମେତ୍ୟାଦି ବ୍ରାହ୍ମଣ ପାଠ କରିବ । ଯଥା -

**ଓଁ ଖଂ ବ୍ରହ୍ମ ଖଂ ପୁରାଣଂ ବାୟୁ ଖମିତି ହସ୍ମାହ ।**
**କୌରବାୟଣୀପୁତ୍ରଃ ବେଦୋଽୟଂ ବ୍ରାହ୍ମଣା ବିଦୁଃ ।**
**ବେଦୈନେନ ଯଦ୍‌ବେଦିତବ୍ୟମ୍ ।।** (ବୃ.ଆ.ଉ.ଅ.୫)
**ସପ୍ତବ୍ୟାହୃତୀନାଂ, ପ୍ରଜାପତି ଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍‌ବୃହତୀ-ପଂକ୍ତିତ୍ରିଷ୍ଟୁବ୍‌ଜଗତ୍ୟଶ୍ଛନ୍ଦାଂସି, ଅଗ୍ନିବାୟୁସୂର୍ଯ୍ୟବୃହସ୍ପତିବରୁଣେନ୍ଦ୍ର-ବିଶ୍ୱେଦେବା ଦେବତାଃ, ପ୍ରାଣାୟାମେ ବିନିଯୋଗଃ ।**

'ଭୂରିତି ଋଗ୍‌ବେଦାଦିତ୍ୟାଦି ବ୍ରାହ୍ମଣମ୍' ଏହା ପାଠ କରିବ । ଯଥା -

**ଭୂରିତି ଋଗ୍‌ବେଦାତ୍, ଭୁବ ଇତି ଯଜୁର୍ବେଦାତ୍, ସ୍ୱରିତି ସାମବେଦାତ୍ । ସ ଯ ଇଚ୍ଛେତ୍ ସର୍ବୈରେତୈସ୍ତ୍ରିଭି-ର୍ବେଦୈରକୁର୍ବୀୟେତ୍ୟେତାଭିରେବ ତଂ ମହାବ୍ୟାହୃତିଭିଃ କୁର୍ବୀତ । ସର୍ବୈର୍ହି ବା ଅସ୍ୟୈତୈସ୍ତ୍ରିଭିର୍ବେଦୈଃ କୃତଂ ଭବତି, ଯ ଏବଂ ବେଦ ଯଶ୍ଚୈବଂ ବିଦ୍ୱାନେବମେତାଭିର୍ମହାବ୍ୟାହୃତିଭିଃ କୁରୁତେ ।**
(ବୃ.ଆ.ଉ.ଅ. ୫/୧୪)

**ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ, ଗାୟତ୍ରୀ ଛନ୍ଦଃ, ସବିତା ଦେବତା, ଅଗ୍ନିର୍ମୁଖମ୍, ଉପନୟନେ ବିନିଯୋଗଃ ।**

ଏହି ଋଷ୍ୟାଦି କରି 'ଭୂମିରନ୍ତରିକ୍ଷଂ ଦ୍ୟୌରିତ୍ୟାଦି ବ୍ରାହ୍ମଣ' ପାଠ କରିବ । ଯଥା -

**ଭୂମିରନ୍ତରିକ୍ଷଂ ଦ୍ୟୌରିତ୍ୟଷ୍ଟାକ୍ଷରାଣି । ଅଷ୍ଟାକ୍ଷରଂ ହ ବା ଏକଂ ଗାୟତ୍ର୍ୟୈ ପଦମ୍ । ଏତଦୁ ହୈବାସ୍ୟା ଏତତ୍ । ସା ଯାବଦେଷୁ ତ୍ରିଷୁ ଲୋକେଷୁ ତାବଦ୍ଧି ଜୟତି । ଯୋଽସ୍ୟା ଏତଦେବ ପଞ୍ଚବେଦ ଋଚୋ**

ଯଜୂଂଷି ସାମାନୀତ୍ୟଷ୍ଟାବକ୍ଷରାଣ୍ୟଷ୍ଟାକ୍ଷରଂ ହ ବା ଏକଂ ଗାୟତ୍ର୍ୟୈ ପଦମେତଦୁ ହୈବାସ୍ୟା ଏତତ୍ । ସ ଯାବତୀୟମ୍ । ତ୍ରୟୀବିଦ୍ୟା ତାବଦ୍ଧି ଜୟତି ଯୋଽସ୍ୟା ଏତଦେବଂ ପଦଂ ବେଦ । ପ୍ରାଣୋଽପାନ ବ୍ୟାନ ଇତ୍ୟଷ୍ଟାବକ୍ଷରାଣି । ଅଷ୍ଟାକ୍ଷରଂ ହ ବା ଏକଂ ଗାୟତ୍ର୍ୟୈ ପଦମେତଦୁ ହୈବାସ୍ୟା ଏତତ୍ ସ ଯାବଦିଦଂ ପ୍ରାଣି ତାବଦ୍ଧି ଜୟତି ଯୋଽସ୍ୟା ଏତଦେବ ପଦଂ ବେଦ ॥

(ଛାନ୍ଦୋଗ୍ୟୋପନିଷଦ୍ ପ୍ର ୪/୧୭)

**ଶିରସଃ, ପ୍ରଜାପତିଃ ଋଷିଃ, ଯଜୁଶ୍ଛନ୍ଦଃ, ବ୍ରହ୍ମାଗ୍ନିବାୟୁ-ସୂର୍ଯ୍ୟଦେବତାଃ, ପ୍ରାଣାୟାମେ ବିନିଯୋଗଃ ।**

ଏହି ଋଷ୍ୟାଦି କରି 'ସଶିରସ୍କାଂ ତ୍ରିଃ ପଠେଦିତ୍ୟାଦି ବ୍ରାହ୍ମଣଂ' ପାଠ କରିବ । ତା'ପରେ ଚକ୍ଷୁ ଈଷତ୍ ନିମୀଳିତ କରି ବଚନସଂଯମପୂର୍ବକ ନିମ୍ନ ମନ୍ତ୍ରକୁ ମନରେ ଜପ କରି ପୂରକ-କୁମ୍ଭକ-ରେଚକ କ୍ରମରେ ତିନିବାର ପ୍ରାଣାୟାମ କରିବ । ମନ୍ତ୍ର ଯଥା -

**ଓଁ ଭୂଃ ଓଁ ଭୁବଃ ଓଁ ସ୍ୱଃ ଓଁ ମହଃ ଓଁ ଜନଃ ଓଁ ତପଃ ଓଁ ସତ୍ୟମ୍,**
**ଓଁ ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ।**
**ଧିୟୋ ଯୋ ନଃ ପ୍ରଚୋଦୟାତ୍ ।**
**ଓଁ ଆପୋ ଜ୍ୟୋତୀ ରସୋଽମୃତଂ ବ୍ରହ୍ମଭୂର୍ଭୁବଃ ସ୍ୱରୋମ୍ ।**

(ତୈ.ଆର.ପ୍ର ୧୦.ଅ.୨୭)

ଏହି ମନ୍ତ୍ର ଜପ ସମୟରେ ଗାୟତ୍ରୀ ଶବ୍ଦାର୍ଥସ୍ୱରୂପ ବିଷ୍ଣୁ-ବ୍ରହ୍ମା-ମହେଶ୍ୱରଙ୍କୁ ସ୍ମରଣ କରିବ । ବିଷ୍ଣୁ-ବ୍ରହ୍ମା-ମହେଶ୍ୱରଙ୍କ ସ୍ୱରୂପଚିନ୍ତନ ଯଥା -

**ନୀଳୋତ୍ପଳଦଳଶ୍ୟାମଂ ନାଭିମଧ୍ୟେ ପ୍ରତିଷ୍ଠିତଂ ।**
**ଚତୁର୍ଭୁଜଂ ମହାତ୍ମାନଂ ପୂରକେ ତୁ ବିଚିନ୍ତୟେତ୍ ॥**
**କୁମ୍ଭକେ ଚ ହୃଦି ସ୍ଥାନେ ଧ୍ୟାୟେଚ୍ଚ କମଳାସନଂ ।**
**ବ୍ରହ୍ମାଣଂ ରକ୍ତଗୌରାଙ୍ଗଂ ଚତୁର୍ବକ୍ତ୍ରଂ ପିତାମହମ୍ ॥**
**ରେଚକେ ଚେଶ୍ୱରଂ ବିଦ୍ୟାତ୍ ଲଲାଟସ୍ଥଂ ତ୍ରିଲୋଚନଂ ।**
**ଶୁଦ୍ଧସ୍ଫଟିକସଂକାଶଂ ନିର୍ମଳଂ ପାପନାଶନମ୍ ॥**

ଏହାପରେ ନିମ୍ନ ମନ୍ତ୍ର ପାଠ କରି ତିନିଥର ଆଚମନ କରିବ । ମନ୍ତ୍ର ଯଥା-

**ଓଁ ଅନ୍ତଶ୍ଚରସି ଭୂତେଷୁ ଗୁହାୟାଂ ବିଶ୍ୱତୋମୁଖଃ ।**
**ତ୍ୱଂ ଯଜ୍ଞସ୍ତ୍ୱଂ ବଷଟ୍‌କାର ଆପୋଜ୍ୟୋତୀ ରସୋଽମୃତମ୍ ॥**

(କାତ୍ୟାୟନପରିଶିଷ୍ଟସୂତ୍ର)

ଏହାପରେ - **ଓଁ ଆପୋହିଷ୍ଠା ମୟୋଭୁବଃ, ଓଁ ତାନ ଊର୍ଜେ ଦଧାତନ,**
**ଓଁ ମହେରଣାୟ ଚକ୍ଷସେ ।**
**ଓଁ ଯୋ ବଃ ଶିବତମୋ ରସଃ, ଓଁ ତସ୍ୟ ଭାଜୟତେହ ନଃ,**
**ଓଁ ଉଶତୀରିବ ମାତରଃ । ଓଁ ତସ୍ମା ଅରଂ ଗମାମୋ ବଃ ।**
**ଓଁ ଯସ୍ୟ କ୍ଷୟାୟ ଜିନ୍ୱଥ, ଓଁ ଆପୋ ଜନୟଥା ଚ ନଃ ॥**

(ଯଜୁ. ଅ.୧୧.ମ.୫୦-୫୨)

ଏହି ତିନିଗୋଟି ମନ୍ତ୍ର ପଢି କୁଶଦ୍ୱାରା ମସ୍ତକଠାରୁ ପାଦପର୍ଯ୍ୟନ୍ତ ଜଳସେଚନ କରିବ । ତା ପରେ ଦକ୍ଷିଣ ହସ୍ତରେ ପାଣି ଟିକିଏ ଧରି -

**ଓଁ ଦ୍ରୁପଦାଦିବ ମୁମୁଚାନଃ ସ୍ୱିନ୍ନଃ ସ୍ନାତୋ ମଳାଦିବ ।**
**ପୂତଂ ପବିତ୍ରେଣେବାଜ୍ୟମାପଃ ଶୁନ୍ଧନ୍ତୁ ମୈନସଃ ॥**

(ଯଜୁ. ଅ. ୨୦ମ, ୨୦)

ଏହି ମନ୍ତ୍ର ତିନିଥର ପଢ଼ି, ମସ୍ତକରେ ଜଳ ସିଞ୍ଚିବ । ପୁନର୍ବାର ଦକ୍ଷିଣହସ୍ତରେ ଜଳ ଚଳୁଏ ଧରି ନାସିକାରେ ସ୍ପର୍ଶ କରି ଅଘମର୍ଷଣ ସୂକ୍ତ (ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ ଇତ୍ୟାଦି) ପାଠ କରିବ । ତାପରେ 'ଓଁ ଭୂର୍ଭୁବଃ ସ୍ୱସ୍ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି, ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ' ଏହି ଗାୟତ୍ରୀମନ୍ତ୍ରଦ୍ୱାରା ସୂର୍ଯ୍ୟଙ୍କୁ ତିନିଥର ଅର୍ଘ୍ୟ ଦେବ ।

## ସୂର୍ଯ୍ୟୋପସ୍ଥାନ

### ତତ୍ରାଦୌ ସୂର୍ଯ୍ୟାଚମନଂ

**ଓଁ ସୂର୍ଯ୍ୟଶ୍ଚ ମେତି ମନ୍ତ୍ରସ୍ୟ, ବ୍ରହ୍ମା ଋଷିଃ, ପଂକ୍ତିଶ୍ଛନ୍ଦଃ, ଶ୍ରୀ ସୂର୍ଯ୍ୟୋ ଦେବତା, ଆଚମନେ ବିନିଯୋଗଃ ।**

**ଓଁ ସୂର୍ଯ୍ୟଶ୍ଚ ମା ମନ୍ୟୁଶ୍ଚ ମନ୍ୟୁପତୟଶ୍ଚ ମନ୍ୟୁକୃତେଭ୍ୟଃ ପାପେଭ୍ୟୋ ରକ୍ଷନ୍ତାମ୍ । ଯଦ୍ରାତ୍ର୍ୟା ପାପମକାର୍ଷଂ ମନସା ବାଚା ହସ୍ତାଭ୍ୟାଂ ପଦ୍‌ଭ୍ୟାମୁଦରେଣ ଶିଶ୍ନା ଅହସ୍ତଦବଲୁମ୍ପତୁ ଯତ୍କିଞ୍ଚିଦ୍ ଦୁରିତଂ ମୟି ଇଦମହମାପୋଽମୃତଯୋନୌ ସୂର୍ଯ୍ୟେ ଜ୍ୟୋତିଷି ପରମାତ୍ମନି ସ୍ୱାହା ॥**

ଏହି ମନ୍ତ୍ରରେ ପ୍ରାତଃସନ୍ଧ୍ୟାରେ ଥରେ ଆଚମନ କରିବ ।

### ମଧ୍ୟାହ୍ନାଚମନମନ୍ତ୍ର

ଓଁ ଆପଃ ପୁନନ୍ତ୍ୱିତି ମନ୍ତ୍ରସ୍ୟ । ବିଷ୍ଣୁ ଋଷିଃ । ଅନୁଷ୍ଟୁପ୍ ଛନ୍ଦଃ । ଆପୋ ଦେବତା । ଆଚମନେ ବିନିଯୋଗଃ ।

ଓଁ ଆପଃ ପୁନନ୍ତୁ ପୃଥିବୀଂ ପୃଥ୍ୱୀ ପୂତା ପୁନାତୁ ମାଂ ।
ପୁନନ୍ତୁ ବ୍ରହ୍ମଣସ୍ପତିଂ ବ୍ରହ୍ମପୂତା ପୁନାତୁ ମାମ୍ ॥

ଯଦୁଚ୍ଛିଷ୍ଟମଭୋଜ୍ୟଂ ଚ ଯଦ୍‌ବା ଦୁଷ୍କରିତଂ ମମ ।
ସର୍ବଂ ପୁନନ୍ତୁ ମାମାପୋ ଅସତାଂ ଚ ପ୍ରତିଗ୍ରହଂ ସ୍ୱାହା ।।
(ତୈ.ଆର.ପ୍ର ୧୦.ଅ ୨୩)

## ସାୟାହ୍ନାଚମନମନ୍ତ୍ର

ଓଁ ଅଗ୍ନିଶ୍ଚ ମେତି ମନ୍ତ୍ରସ୍ୟ । ରୁଦ୍ର ଋଷିଃ । ତ୍ରିଷ୍ଟୁପ୍ ଛନ୍ଦଃ ।
ଅଗ୍ନିର୍ଦେବତା । ଆଚମନେ ବିନିଯୋଗଃ ।
ଓଁ ଅଗ୍ନିଶ୍ଚ ମା ମନ୍ୟୁଶ୍ଚ ମନ୍ୟୁପତୟଶ୍ଚ ମନ୍ୟୁକୃତେଭ୍ୟଃ
ପାପେଭ୍ୟୋ ରକ୍ଷନ୍ତାମ୍ । ଯଦହ୍ନା ପାପମକାର୍ଷଂ ମନସା
ବାଚା ହସ୍ତାଭ୍ୟାଂ ପଦ୍‌ଭ୍ୟାମୁଦରେଣ ଶିଶ୍ନା ଅହସ୍ତଦବଲୁମ୍ପତୁ ।
ଯତ୍ କିଞ୍ଚ ଦୁରିତଂ ମୟି, ଇଦମହମାପୋଽମୃତଯୋନୌ ସତ୍ୟେ
ଜ୍ୟୋତିଷି ଜୁହୋମି ସ୍ୱାହା ।। (ତୈ.ଆ. ପ୍ର. ୧୦. ଅ. ୨୪)

ଏହାପରେ ଆସନରୁ ଉଠିପଡି ଦୁଇହାତ ଯୋଡି ସୂର୍ଯ୍ୟାଭିମୁଖ ହୋଇ ନିମ୍ନମନ୍ତ୍ର ଋଷ୍ୟାଦି ସହିତ ପାଠ କରିବ । ଯଥା -

ଓଁ ଅସାବାଦିତ୍ୟୋ ବ୍ରହ୍ମ ।
ଓଁ ଉଦୁତ୍ୟମିତି ମନ୍ତ୍ରସ୍ୟ । ପ୍ରସ୍କନ୍ଦ ଋଷିଃ । ଗାୟତ୍ରୀ ଛନ୍ଦଃ ।
ଶ୍ରୀ ସୂର୍ଯ୍ୟୋ ଦେବତା । ଶ୍ରୀ ସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ।
ଓଁ ଉଦୁତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ ।
ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ।। (ଯଜୁ ଅ. ୭.ମ.୪୧)
ଓଁ ଚିତ୍ରଂ ଦେବାନାମିତି ମନ୍ତ୍ରସ୍ୟ । କୌତ୍ସଋଷିଃ । ତ୍ରିଷ୍ଟୁପ୍ ଛନ୍ଦଃ ।
ଶ୍ରୀସୂର୍ଯ୍ୟୋ ଦେବତା । ଶ୍ରୀ ସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ।

ଓଁ ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରା ଦ୍ୟାବା ପୃଥିବୀ ଅନ୍ତରିକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥
(ଯଜୁ. ଅ.୭.ମ.୪୨)

ଓଁ ଉଦ୍‌ବୟମିତି ମନ୍ତ୍ରସ୍ୟ । ପ୍ରସ୍କଣ୍ୱ ଋଷିଃ । ଅନୁଷ୍ଟୁପ୍ ଛନ୍ଦଃ ।
ଶ୍ରୀସୂର୍ଯ୍ୟୋ ଦେବତା । ଶ୍ରୀ ସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ॥
ଓଁ ଉଦ୍‌ବୟସ୍ତମସସ୍ପରି ସ୍ୱଃ ପଶ୍ୟନ୍ତ ଉତ୍ତରମ୍ ।
ଦେବଂ ଦେବତ୍ରା ସୂର୍ଯ୍ୟମଗନ୍ମ ଜ୍ୟୋତିରୁତ୍ତମମ୍ ॥
(ଯଜୁ. ଅ. ୨୦.ମ.୨୧)

ଓଁ ତଚ୍ଚକ୍ଷୁରିତି ମନ୍ତ୍ରସ୍ୟ । ବଶିଷ୍ଠ ଋଷିଃ । ଉଷ୍ଣିକ୍ ଛନ୍ଦଃ ।
ଶ୍ରୀସୂର୍ଯ୍ୟୋ ଦେବତା । ଶ୍ରୀ ସୂର୍ଯ୍ୟୋପସ୍ଥାନେ ବିନିଯୋଗଃ ।
ଓଁ ତଚ୍ଚକ୍ଷୁର୍ଦେବହିତଂ ପୁରସ୍ତାଚ୍ଛୁକ୍ରମୁଚ୍ଚରତ୍ ।
ପଶ୍ୟେମ ଶରଦଃ ଶତମ୍ । ଜୀବେମ ଶରଦଃ ଶତମ୍ ।
ଶୃଣୁୟାମ ଶରଦଂ ଶତମ୍, ପ୍ରବ୍ରବାମ ଶରଦଃ ଶତମ୍,
ଅଦୀନାଃ ସ୍ୟାମ ଶରଦଃ ଶତଂ, ଭୂୟଶ୍ଚ ଶରଦଃ ଶତାତ୍ ॥
(ଯଜୁ.ଅ.୩୬.ମ.୨୪)

ଏହି ସବୁ ମନ୍ତ୍ର ପାଠ କରି ସୂର୍ଯ୍ୟୋପସ୍ଥାନ କରିବ ।

## ଗାୟତ୍ରୀଜପବିଧି

ଓଁତେଜୋଽସୀତିମନ୍ତ୍ରସ୍ୟ ।ଭୃଗୁଋଷିଃ ।ଯଜୁସ୍ତ୍ରିଷ୍ଟୁଗୁଷ୍ଣିହୌ ଛନ୍ଦସୀ ।
ସବିତା ଦେବତା । ଗାୟତ୍ର୍ୟାବାହନେ ବିନିଯୋଗଃ ।
ଓଁ ତେଜୋଽସି । ସହୋଽସି । ଶୁକ୍ରମସି । ଅମୃତନାମାସି ।
ଧାମନାମାସି । ପ୍ରିୟଂ ଦେବାନାମନାଧୃଷ୍ଟଂ ଦେବଯଜନମସି ॥
(ଯଜୁ. ଅ.୧.ମ.୩୧)

ଓଁ ଆୟାହି ବରଦେ ଦେବି ତ୍ର୍ୟକ୍ଷରେ ବ୍ରହ୍ମବାଦିନି ।
ଗାୟତ୍ରି ଛନ୍ଦସାଂ ମାତଃ ସ୍ୱୟଂବ୍ରହ୍ମ ଭୂର୍ଭୁବଃ ସ୍ୱରୋମ୍ ॥
ଗାୟତ୍ରୀମାବାହୟାମି ।

ଏହି ମନ୍ତ୍ରରେ ହୃଦୟରେ ଗାୟତ୍ରୀଙ୍କୁ ଆବାହନ କରିବ ।

ଓଁ ଗାୟତ୍ରୀମନ୍ତ୍ରସ୍ୟ । ବିଶ୍ୱାମିତ୍ର ଋଷିଃ । ଗାୟତ୍ରୀ ଛନ୍ଦଃ ।
ସବିତା ଦେବତା । ଣୀଂ ବୀଜଂ । ୟଂ ଶକ୍ତିଃ । ଜପେ ବିନିଯୋଗଃ ।

ଗାୟତ୍ରୀ ମନ୍ତ୍ରର ଏହି ଋଷ୍ୟାଦି କରି କରନ୍ୟାସ ଓ ଅଙ୍ଗନ୍ୟାସ କରିବ ।

**କରନ୍ୟାସ -**

ଓଁ ଭୂଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଭୁବଃ ତର୍ଜ୍ଜନୀଭ୍ୟାଂ ସ୍ୱାହା ।
ଓଁ ସ୍ୱଃ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ତତ୍ସବିତୁର୍ବରେଣ୍ୟମନାମିକାଭ୍ୟାଂ ହୁମ୍ ।
ଓଁ ଭର୍ଗୋ ଦେବସ୍ୟ ଧୀମହି କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ॥

**ଅଙ୍ଗନ୍ୟାସ-** ଓଁ ଭୂଃ ହୃଦୟାୟ ନମଃ । ଓଁ ଭୁବଃ ଶିରସେ ସ୍ୱାହା ।
ଓଁ ସ୍ୱଃ ଶିଖାୟୈ ବଷଟ୍ ।
ଓଁ ତତ୍ସବିତୁର୍ବରେଣ୍ୟଂ କବଚାଭ୍ୟାଂ ହୁମ୍ ।
ଓଁ ଭର୍ଗୋ ଦେବସ୍ୟ ଧୀମହି ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍
କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

**ଧ୍ୟାନମ୍ -** ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।

କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ-
ହାରୀହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ।।

ପ୍ରାତଃସନ୍ଧ୍ୟାଧ୍ୟାନ -

ଓଁ ବାଲାଂ ବିଦ୍ୟାଂ ତୁ ଗାୟତ୍ରୀଂ ଲୋହିତାଂ ଚତୁରାନନାଂ ।
ରକ୍ତାମ୍ବରଦ୍ୱୟୋପେତାମକ୍ଷସୂତ୍ରକରାଂ ତଥା ।।
କମଣ୍ଡଳୁଧରାଂ ଦେବୀଂ ହଂସବାହନସଂସ୍ଥିତାଂ ।
ବ୍ରହ୍ମାଣୀଂ ବ୍ରହ୍ମଦୈବତ୍ୟାଂ ବ୍ରହ୍ମଲୋକନିବାସିନୀଂ ।
ମନ୍ତ୍ରେଣାବାହୟେଦ୍ଦେବୀମାୟାନ୍ତୀଂ ସୂର୍ଯମଣ୍ଡଳାତ୍ ।।

ମଧ୍ୟାହ୍ନସନ୍ଧ୍ୟାଧ୍ୟାନ -

ଧ୍ୟାୟେନ୍ମଧ୍ୟାହ୍ନସନ୍ଧ୍ୟାୟାଂ ସାବିତ୍ରୀଂ ବେଦମାତରମ୍ ।
ଯୁବତୀଂ ଶୁକ୍ଳବର୍ଣ୍ଣାଂ ଚ ଚାରୁରୂପାଂ ଚତୁର୍ଭୁଜାମ୍ ।।
ଶୁକ୍ଳାମ୍ବରଦ୍ୱୟୋପେତାଂ ଗରୁଡସ୍କନ୍ଧସଂସ୍ଥିତାମ୍ ।
ଶଙ୍ଖଚକ୍ରଗଦାପଦ୍ମଧାରିଣୀଂ ବିଷ୍ଣୁଦେବତାମ୍ ।
ବିଷ୍ଣୁଲୋକନିବାସାନ୍ତାମାୟାନ୍ତୀଂ ସୂର୍ଯ୍ୟମଣ୍ଡଳାତ୍ ।।

ସାୟଂସନ୍ଧ୍ୟାଧ୍ୟାନ -

ଧ୍ୟାୟେତ୍ ସାୟାହ୍ନସନ୍ଧ୍ୟାୟାଂ ବୃଦ୍ଧାବସ୍ଥାଂ ସରସ୍ୱତୀମ୍ ।
କୃଷ୍ଣାଂ କୃଷ୍ଣାମ୍ବରଧରାଂ ବୃଷାରୂଢାଂ ତ୍ରିଲୋଚନାମ୍ ।।
ତ୍ରିଶୂଳଡମ୍ବରୁହସ୍ତାଂ ରୁଦ୍ରାଣୀଂ ରୁଦ୍ରଦୈବତାମ୍ ।
କୈଳାସନିଳୟାଂ ଦେବୀମାୟାନ୍ତୀଂ ସୂର୍ଯ୍ୟମଣ୍ଡଳାତ୍ ।।

ପ୍ରତ୍ୟେକ ସନ୍ଧ୍ୟାରେ ତଦ୍‌ବିହିତ ଗାୟତ୍ରୀଧ୍ୟାନ ପାଠ କରିବେ ।

## ଗାୟତ୍ରୀମନ୍ତ୍ର

**ଓଁ ଭୂର୍ଭୁବଃ ସ୍ୱସ୍ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ।**
**ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।।**

ଏହି ମନ୍ତ୍ର ୧୦୮ଥର ଅଥବା ୫୮ ଅଥବା ୨୮ ବା ୧୮ ଥର ଜପ କରିବ । ଜପ ଶେଷରେ -

**ଓଁ ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍ କୃତଂ ଜପମ୍ ।**
**ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ ପ୍ରସାଦାତ୍ ସୁରେଶ୍ୱରି ।।**

ଏହି ମନ୍ତ୍ର ପଢ଼ି ଦକ୍ଷିଣହସ୍ତରେ ଜଳଚଳୁଏ ଧରି ଗାୟତ୍ରୀଙ୍କର ବାମହସ୍ତରେ ଜପ ସମର୍ପଣ ହେଲା ଭାବି ତଳେ ପକାଇ ଦେବ । ତା'ପରେ ଜଳ ଚଳୁଏ ଧରି-

**ଓଁ ଭୂର୍ଭୁବଃ ସ୍ୱସ୍ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।**

ଏହି ଗାୟତ୍ରୀମନ୍ତ୍ରକୁ ଉଚ୍ଚାରଣ କରି -

**ଉତ୍ତରେ ଶିଖରେ ଜାତେ ଭୂମ୍ୟାଂ ପର୍ବତବାସିନି ।**
**ବ୍ରହ୍ମଣା ସମନୁଜ୍ଞାତେ ଗଚ୍ଛ ଦେବି ଯଥାସୁଖମ୍ ।।**

ଏହି ମନ୍ତ୍ରକୁ ପାଠ କରିବା ପରେ ଧରିଥିବା ଜଳଚଳୁକୁ ତ୍ୟାଗ କରିବ ।

**ଓଁ ନମୋ ନମଃ ଗାୟତ୍ରି ନମୋଽସ୍ତୁ ଗାୟତ୍ରି, ସ୍ୱସ୍ଥାନଂ ଗଚ୍ଛ ।**

ଏହା ପଢ଼ି ଗାୟତ୍ରୀଙ୍କୁ ବିସର୍ଜନ କରିବ । ଏହାପରେ ପୂର୍ବୋକ୍ତ ବିଧିରେ ତିନିଥର ବା ଏକଥର ପ୍ରାଣାୟାମ କରିବ ।

## ସୂର୍ଯ୍ୟାର୍ଘ୍ୟ ବିଧି

**ପ୍ରାତଃକାଳରେ - ଓଁ ସୂର୍ଯ୍ୟାୟ ସ୍ୱାହା, ଇଦଂ ସୂର୍ଯ୍ୟାୟ ।**

ଏହି ମନ୍ତ୍ର ପଢି ସୂର୍ଯ୍ୟଙ୍କୁ ଜଳାଞ୍ଜଳି ଦେବ ।

**ମଧ୍ୟାହ୍ନରେ - ଓଁ ପ୍ରଜାପତୟେ ସ୍ୱାହା, ଇଦଂ ପ୍ରଜାପତୟେ ।**

ଏହି ମନ୍ତ୍ର ପଢି ପ୍ରଜାପତିଙ୍କୁ ଜଳାଞ୍ଜଳି ଦେବ ।

**ସାୟଂକାଳରେ - ଓଁ ଅଗ୍ନୟେ ସ୍ୱାହା, ଇଦମଗ୍ନୟେ ।**

ଏହି ମନ୍ତ୍ର ପଢି ଅଗ୍ନିଙ୍କୁ ଜଳାଞ୍ଜଳି ଦେବ ।

**ଓଁ ପ୍ରଜାପତୟେ ସ୍ୱାହା, ଇଦଂ ପ୍ରଜାପତୟେ ।**

ଏହି ମନ୍ତ୍ର ପଢି ପ୍ରଜାପତିଙ୍କୁ ଦୁଇଥର ଜଳାଞ୍ଜଳି ଦେବ । ତା'ପରେ ଜଳରେ ଅଷ୍ଟଦଳପଦ୍ମ ଲେଖିବ । ତାମ୍ରପାତ୍ରୀରେ ଜଳପୂର୍ଣ୍ଣ କରି ଧରି ଅଥବା ଅଞ୍ଜଳିରେ ଜଳ ଧରି -

**ଓଁ ହଂସଃ ଶୁଚିଷଦ୍ ବସୁରନ୍ତରିକ୍ଷଂ,**
**ସଦ୍ଧୋତା ବେଦିଷଦତିଥିର୍ଦ୍ଦୁରୋଣସଦ୍ ।**
**ନୃଷଦ୍ ବରସଦୃତସଦ୍ ବ୍ୟୋମସଦବ୍ଜା**
**ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍ ॥**
**ଏହି ସୂର୍ଯ୍ୟ ! ସହସ୍ରାଂଶୋ ତେଜୋରାଶେ ଜଗତ୍ପତେ ।**
**ଅନୁକମ୍ପୟ ମାଂ ଭକ୍ତ୍ୟା ଗୃହାଣାର୍ଘ୍ୟଂ ଦିବାକର ॥**
**ଓଁ ଘୃଣିଃ ସୂର୍ଯ୍ୟ ଆଦିତ୍ୟ ଓଁ ଶ୍ରୀ ସୂର୍ଯ୍ୟାୟ ନମଃ ॥**

ଏହା କହି ଅଞ୍ଜଳିକୁ ମସ୍ତକପ୍ରମାଣେ ଉଠାଇ 'ସୂର୍ଯ୍ୟାୟ ଏଷ ଅର୍ଘ୍ୟଃ ସ୍ୱାହା' କହି ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ବା ଅଷ୍ଟଦଳ ପଦ୍ମ ଉପରେ ଅର୍ଘ୍ୟ

ଦେବ । ସାୟଂସନ୍ଧ୍ୟାରେ ସୂର୍ଯ୍ୟାର୍ଘ୍ୟ ଅନାବଶ୍ୟକ ଅଟେ । ତା ପରେ 'ଓଁ ତଚ୍ଚକ୍ଷୁ' ଏହି ମନ୍ତ୍ରରେ ଅର୍ଘ୍ୟର ଅବଶିଷ୍ଟ ଜଳ ଦୁଇ ଆଖିରେ ସ୍ପର୍ଶ କରିବ । ତାପରେ ଓଁକାରସ୍ମରଣପୂର୍ବକ ଦ୍ୱିରାଚମନ (ଛଅଥର) କରି ନିମ୍ନ ମନ୍ତ୍ରରେ ସୂର୍ଯ୍ୟ ନମସ୍କାର କରିବ । ମନ୍ତ୍ର ଯଥା-

**ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ,**
**ଜଗତ୍ପ୍ରସୂତିସ୍ଥିତିନାଶହେତବେ ।**
**ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ,**
**ବିରଞ୍ଚିନାରାୟଣଶଙ୍କରାତ୍ମନେ ॥**
**ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ**
**ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।**
**କେୟୂରବାନ୍ମକରକୁଣ୍ଡଳବାନ୍ କିରୀଟୀ -**
**ହାରୀହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ॥**
**ଓଁ ନମସ୍ତେ ବ୍ରହ୍ମରୂପାୟ ନମସ୍ତେ ବିଷ୍ଣୁରୂପିଣେ ।**
**ନମସ୍ତେ ରୁଦ୍ରରୂପାୟ ନମସ୍ତୁଭ୍ୟଂ ତ୍ରିମୂର୍ତ୍ତୟେ ॥**

ଏହି ମନ୍ତ୍ରମାନ ପାଠ କରି ସୂର୍ଯ୍ୟଙ୍କୁ ନମସ୍କାର କରିବ । ଏହା ପରେ -

**ଅନେନ ସନ୍ଧ୍ୟୋପାସନାଖ୍ୟେନ କର୍ମଣା ଶ୍ରୀପରମେଶ୍ୱରଃ**
**ପ୍ରୀୟତାଂ ନ ମମ । ଓଁ ତଦ୍ ସଦ୍ ବ୍ରହ୍ମାର୍ପଣମସ୍ତୁ ।**
**ଯସ୍ୟ ସ୍ମୃତ୍ୟା ଚ ନାମୋକ୍ତ୍ୟା ତପୋଯଜ୍ଞକ୍ରିୟାଦିଷୁ ।**
**ନ୍ୟୂନଂ ସମ୍ପୂର୍ଣ୍ଣତାଂ ଯାତି ସଦ୍ୟୋ ବନ୍ଦେ ତମଚ୍ୟୁତମ୍ ॥**
**ଶ୍ରୀବିଷ୍ଣୁସ୍ମରଣାଦ୍ ପରିପୂର୍ଣ୍ଣମସ୍ତୁ ।**

ଏହାପରେ ଅଚ୍ୟୁତନାମାଷ୍ଟକ ମଧ୍ୟ ପାଠ କରିବା ବିଧି ଅଛି । ଯଥା -

**ଓଁ ଅଚ୍ୟୁତଂ କେଶବଂ ବିଷ୍ଣୁଂ ହରିଂ ସତ୍ୟଂ ଜନାର୍ଦ୍ଦନମ୍ ।**
**ହଂସଂ ନାରାୟଣଂ ଚୈବ ଏତନ୍ନାମାଷ୍ଟକଂ ଶୁଭମ୍ ।।**
**ତ୍ରିସନ୍ଧ୍ୟଂ ଯଃ ପଠେନ୍ନିତ୍ୟଂ ଦାରିଦ୍ର୍ୟଂ ତସ୍ୟ ନଶ୍ୟତି ।**
**ଶତ୍ରୁବର୍ଗାଃ କ୍ଷୟଂ ଯାନ୍ତି ଦୁଃସ୍ୱପ୍ନଂ ଚାପକର୍ଷତି ।।**
**ଗଙ୍ଗାୟାଂ ମରଣଂ ଚୈବ ଦୃଢାଭକ୍ତିଷ୍ଚ କେଶବେ ।**
**ବ୍ରହ୍ମବିଦ୍ୟାପ୍ରବୋଧଃ ସ୍ୟାଉସ୍ମାନ୍ନିତ୍ୟଂ ପଠେନ୍ନରଃ ।।**

ଇତି ଯଜୁର୍ବେଦୀୟସନ୍ଧ୍ୟାବିଧିଃ ସମାପ୍ତଃ ।। ୦ ।।

# ଋଗ୍‌ବେଦୀୟସନ୍ଧ୍ୟାବିଧିଃ

ପୂର୍ବୋତ୍ତରକୋଣକୁ ମୁଖ କରି ବସି 'ଓଁ ବିଷ୍ଣୁ' କହି ଦ୍ୱିରାଚମନ (୬ଥର) କରିବ । ତାପରେ ଦକ୍ଷିଣହସ୍ତ ଅଙ୍ଗୁଷ୍ଠ, ମଧ୍ୟମା ଓ ଅନାମିକା ଅଙ୍ଗୁଳିଦ୍ୱାରା ଚକ୍ଷୁ, କର୍ଣ୍ଣ ଓ ନାସିକାରେ ଜଳ ସ୍ପର୍ଶ କରିବ । ଏହାପରେ-

**ଓଁ ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା ।**
**ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ ।।**

ଏହା ପାଠ କରି ବିଷ୍ଣୁସ୍ମରଣ କରିବ ।

**ମାର୍ଜନବିଧି -** **ଓଁ ଶନ୍ନ ଆପୋ ଧନ୍ୱନ୍ୟାଃ ଶଂ ନଃ ସନ୍ତ୍ୱନୂପ୍ୟାଃ ।**
**ଶଂ ନଃ ସମୁଦ୍ରିୟା ଆପଃ ଶମୁନଃ ସନ୍ତୁ କୂପ୍ୟାଃ ।।**
**ଓଁ ଦ୍ରୁପଦାଦିବ ମୁମୁଚାନଃ ସ୍ୱିନ୍ନଃ ସ୍ନାତୋ ମଳାଦିବ ।**
**ପୂତଂ ପବିତ୍ରେଣେବାଜ୍ୟମାପଃ ଶୁନ୍ଧନ୍ତୁ ମୈନସଃ ।।**

ଏହି ମନ୍ତ୍ର ପଢି କୁଶରେ ପାଣି ଛିଞ୍ଚିବ ।

## ଆଚମନବିଧି

**ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ, ଗାୟତ୍ରୀ ଛନ୍ଦଃ,**
**ସବିତା ଦେବତା, ଆତ୍ମଶୁଦ୍ଧ୍ୟର୍ଥେ ବିନିଯୋଗଃ ॥**

ଏହିପରି ଋଷ୍ୟାଦିନ୍ୟାସ କରି ପାଣି ଚଳୁଏ ଧରି -

**ଓଁ ଭୂର୍ଭୁବଃ ସ୍ୱଃ, ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ**
**ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ॥**

ଏହି ଗାୟତ୍ରୀମନ୍ତ୍ର ରାତିରେ ପାଞ୍ଚଥର ଓ ଦିନରେ ଦଶଥର ପଢ଼ି ଆଚମନ କରିବ ।

## ଦ୍ୱିତୀୟ ମାର୍ଜନ

**ଓଁ ଆପୋହିଷ୍ଠେତି ମନ୍ତ୍ରସ୍ୟ, ସିନ୍ଧୁଦ୍ୱୀପଋଷିଃ, ଗାୟତ୍ରୀ ଛନ୍ଦଃ,**
**ଆପୋ ଦେବତା, ମାର୍ଜନେ ବିନିଯୋଗଃ ॥**
**ଓଁ ଆପୋହିଷ୍ଠା ମୟୋଭୁବଃ । ତା ନ ଊର୍ଜ୍ଜେ ଦଧାତନ ।**
**ମହେରଣାୟ ଚକ୍ଷସେ । ଯୋ ବଃ ଶିବତମୋ ରସସ୍ତସ୍ୟ**
**ଭାଜୟତେହ ନଃ । ଉଶତୀରିବ ମାତରଃ ॥**
**ତସ୍ମା ଅରଂ ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ ।**
**ଆପୋ ଜନୟଥା ଚ ନଃ ।** (ବିନିଯୋଗପାଇଁ ୬୫ ପୃଷ୍ଠା ଦ୍ରଷ୍ଟବ୍ୟ) ଏହା ପଢ଼ି କୁଶରେ ମାର୍ଜନ କରିବ ।

**ଆସନଶୁଦ୍ଧି -**

**ଓଁ ଆସନମନ୍ତ୍ରସ୍ୟ । ମେରୁପୃଷ୍ଠ ଋଷିଃ । ସୁତଳଂ ଛନ୍ଦଃ ।**
**ଶ୍ରୀକୂର୍ମୋ ଦେବତା । ଆସନଶୁଦ୍ଧୌ ବିନିଯୋଗଃ ॥**

ଏହା ପଢ଼ି ଋଷ୍ୟାଦିନ୍ୟାସ କରି -

**ଓଁ ପୃଥ୍ୱି ! ତ୍ୱୟା ଧୃତା ଲୋକା ଦେବି ତ୍ୱଂ ବିଷ୍ଣୁନା ଧୃତା ।**
**ତ୍ୱଂ ଚ ଧାରୟ ମାଂ ଦେବି ପବିତ୍ରମାସନଂ କୁରୁ ॥**

ଏହି ମନ୍ତ୍ର ପଢି ପ୍ରାର୍ଥନା କରିବ । ଏହାପରେ 'ଓଁ ବ୍ରହ୍ମଣେ ନମଃ' ବୋଲି କହି ପାଣି ଚଳୁଏ ଡାହାଣ ହାତରେ ଧରି ଡାହାଣ ଆଡୁ ନିଜ ଚାରିପାଖରେ ବୁଲାଇ ପକାଇବ ।

## ପ୍ରାଣାୟାମବିଧି

କ୍ରମାନୁସାରେ ଓଁକାର, ସପ୍ତବ୍ୟାହୃତି, ଗାୟତ୍ରୀ ଓ ଶିରୋମନ୍ତ୍ରର ଋଷ୍ୟାଦିନ୍ୟାସ କରିବ । ଯଥା -

**ଓଁ କାରସ୍ୟ, ବ୍ରହ୍ମା ଋଷିଃ, ଗାୟତ୍ରୀ ଛନ୍ଦଃ,**
**ଅଗ୍ନିର୍ଦେବତା, ସର୍ବକର୍ମାରମ୍ଭେ ବିନିଯୋଗଃ ॥**
**ଓଁ ସପ୍ତବ୍ୟାହୃତୀନାଂ, ପ୍ରଜାପତିଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍‌ବୃହତୀ-**
**ପଂକ୍ତିସ୍ତ୍ରିଷ୍ଟୁବ୍‌ଜଗତ୍ୟଶ୍ଛନ୍ଦାଂସି, ଅଗ୍ନିବାୟୁସୂର୍ଯ୍ୟବୃହସ୍ପତିବରୁଣେନ୍ଦ୍ର-**
**ବିଶ୍ୱେଦେବା ଦେବତାଃ, ପ୍ରାଣାୟାମେ ବିନିଯୋଗଃ ।**
**ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ, ଗାୟତ୍ରୀ ଛନ୍ଦଃ,**
**ସବିତା ଦେବତା, ପ୍ରାଣାୟାମେ ବିନିଯୋଗଃ ॥**
**ଓଁ ଭୂଃ, ଓଁ ଭୁବଃ, ଓଁ ସ୍ୱଃ, ଓଁ ମହଃ, ଓଁ ଜନଃ, ଓଁ ତପଃ, ଓଁ ସତ୍ୟମ୍ ।**
**ଓଁ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ।**
**ଧିୟୋ ଯୋ ନଃ ପ୍ରଚୋଦୟାତ୍ ॥**
**ଓଁ ଆପୋ ଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋମ୍ ।**

ଏହି ମନ୍ତ୍ର ତିନିଥର ପଢି ପୂରକ କୁମ୍ଭକ ରେଚକ କ୍ରମରେ ତିନିଗୋଟି ପ୍ରାଣାୟାମ କରିବ । ଜପ ସମୟରେ ଗାୟତ୍ରୀଶବ୍ଦାର୍ଥସ୍ୱରୂପ ବ୍ରହ୍ମାଙ୍କୁ ସ୍ମରଣ କରିବ ।

ଜଳଚଳୁକପାନବିଧି-

ଓଁ ସୂର୍ଯ୍ୟଶ୍ଚ ମେତି ମନ୍ତ୍ରସ୍ୟ, ବ୍ରହ୍ମା ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ,
ଶ୍ରୀସୂର୍ଯ୍ୟୋ ଦେବତା, ଅବ୍ଭକ୍ଷଣେ ବିନିଯୋଗଃ ।
ଓଁ ସୂର୍ଯ୍ୟଶ୍ଚ ମା ମନ୍ୟୁଶ୍ଚ ମନ୍ୟୁପତୟଶ୍ଚ ମନ୍ୟୁକୃତେଭ୍ୟଃ ପାପେଭ୍ୟୋ
ରକ୍ଷନ୍ତାମ୍ । ଯଦ୍ରାତ୍ର୍ୟା ପାପମକାର୍ଷମ୍, ମନସା ବାଚା ହସ୍ତାଭ୍ୟାମ୍,
ପଦ୍ଭ୍ୟାମୁଦରେଣ ଶିଶ୍ନା, ରାତ୍ରିସ୍ତଦବଲୁମ୍ପତୁ, ଯତ୍ କିଞ୍ଚିଦ୍ ଦୁରିତଂ ମୟି,
ଇଦମହମମୃତଯୋନୌ ସୂର୍ଯ୍ୟେ ଜ୍ୟୋତିଷି ଜୁହୋମି ସ୍ୱାହା ॥

ଏହି ମନ୍ତ୍ରରେ ପାଣି ଚଳୁଏ ପିଇବ । ତା ପରେ ପୁଣି ତିନିଥର ଆଚମନ କରିବ ।

## ପୁନର୍ବାର ମାର୍ଜନ

ଓଁ ଆପୋହିଷ୍ଠେତି ସୂକ୍ତସ୍ୟ । ସିନ୍ଧୁଦ୍ୱୀପାଦ୍ୟା ଋଷୟଃ ।
ଗାୟତ୍ର୍ୟାଦୀନି ଛନ୍ଦାଂସି । ଆପୋ ଦେବତା । ମାର୍ଜନେ ବିନିଯୋଗଃ ॥
ଓଁ ଆପୋହିଷ୍ଠା ମୟୋଭୁବସ୍ତା ନ ଉର୍ଜେ ଦଧାତନ ।
ମହେରଣାୟ ଚକ୍ଷସେ । ଯୋ ବଃ ଶିବତମୋ ରସସ୍ତସ୍ୟ
ଭାଜୟତେହ ନଃ । ଉଶତୀରିବ ମାତରଃ ॥
ତସ୍ମା ଅରଂ ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ ।
ଆପୋ ଜନୟଥା ଚ ନଃ ॥
ଶନ୍ନୋ ଦେବୀରଭୀଷ୍ଟୟ ଆପୋ ଭବନ୍ତୁ ପୀତୟେ ।
ଶଂ ଯୋରଭିସ୍ରବନ୍ତୁ ନଃ ॥
ଈଶାନା ବାର୍ଯ୍ୟାଣାଂ କ୍ଷୟନ୍ତୀଶ୍ଚର୍ଷଣୀନାମ୍
ଅପୋ ଯାଚାମି ଭେଷଜମ୍ ॥

ଅପ୍ସୁ ମେ ସୋମୋ ଅବ୍ରବୀଦନ୍ତର୍ବିଶ୍ୱାନି ଭେଷଜା ।
ଅଗ୍ନିଂ ଚ ବିଶ୍ୱଶଂ ଭୁବମ୍ ।।
ଆପଃ ପୃଣୀତ ଭେଷଜଂ, ବରୂଥଂ ତନ୍ୱେ ମମ ।
ଜ୍ୟୋକ୍ ଚ ସୂର୍ଯ୍ୟଂ ଦୃଶେ ।।
ଇଦମାପଃ ପ୍ରବହତ ଯତ୍ କିଂ ଚ ଦୁରିତଂ ମୟି ।
ଯଦ୍‌ବାହମଭିଦୁଦ୍ରୋହ ଯଦ୍ୱା ଶେପ ଉତାନୃତମ୍ ।।
ଆପୋ ଅଦ୍ୟାନ୍ୱଚାରିଷଂ ରସେନ ସମଗସ୍ମହି ।
ପୟସ୍ୱାନଗ୍ନ ଆ ଗହି ତଂ ମା ସଂସୃଜ ବର୍ଚସା ।।
(ଋଗ୍.୧୦-୯.୧/୯)

ସସ୍ରୁଷୀସ୍ତଦପସୋ ଦିବା ନକ୍ତଂ ଚ ସସ୍ରୁଷୀଃ ।
ବରେଣ୍ୟଂ କ୍ରତୁରହମା ଦେବୀରବସେ ହୁବେ ।।
ସୁମିତ୍ରିୟା ନ ଆପ ଓଷଧୟଃ ସନ୍ତୁ ।
ଦୁର୍ମିତ୍ରିୟାସ୍ତସ୍ମୈ ସନ୍ତୁ । ଯୋଽସ୍ମାନ୍ ଦ୍ୱେଷ୍ଟି, ଯଂ ଚ ବୟଂ ଦ୍ୱିଷ୍ମଃ ।।

ଏହି ମନ୍ତ୍ର ପଢି ମାର୍ଜନ କରିବ ।

ଓଁ ଋତଂ ଚ ସତ୍ୟଂ ଚେତ୍ୟାଦି ସୂକ୍ତସ୍ୟ । ଅଘମର୍ଷଣ ଋଷିଃ ।
ଅନୁଷ୍ଟୁପ୍ ଛନ୍ଦଃ । ଭାବବୃତ୍ତଂ ଦୈବତମ୍ ।
ଅଶ୍ୱମେଧାବଭୃଥେ ବିନିଯୋଗଃ ।।
ଓଁ ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ତପସୋଽଧ୍ୟଜାୟତ ।
ତତୋ ରାତ୍ର୍ୟଜାୟତ । ତତଃ ସମୁଦ୍ରୋଽର୍ଣ୍ଣବଃ ।।
ସମୁଦ୍ରାଦର୍ଣ୍ଣବାଦଧି ସମ୍ବତ୍ସରୋ ଅଜାୟତ ।
ଅହୋରାତ୍ରାଣି ବିଦଧଦ୍ ବିଶ୍ୱସ୍ୟ ମିଷତୋ ବଶୀ ।।

**ସୂର୍ଯ୍ୟାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ ।**
**ଦିବଂ ଚ ପୃଥିବୀଂ ଚାନ୍ତରିକ୍ଷମଥୋ ସ୍ୱଃ ॥**
(ଋଗ୍ ୧୦.୧୯୦.୧/୩)

ଏହି ମନ୍ତ୍ର ପଢି ପାଣିଚଳୁକାଏ ତଳକୁ ପକାଇଦେବ ।

**ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ରଋଷିଃ, ଗାୟତ୍ରୀ ଛନ୍ଦଃ,**
**ସବିତା ଦେବତା, ଅଞ୍ଜଳିକରଣେ ବିନିଯୋଗଃ ।**

ସାବିତ୍ରୀ (ଗାୟତ୍ରୀ) ମନ୍ତ୍ର ପଢି ତିନିଥର ଜଳାଞ୍ଜଳି ଦେବ ।

## ସୂର୍ଯ୍ୟୋପସ୍ଥାନ

**ଓଁ ଅସାବାଦିତ୍ୟୋ ବ୍ରହ୍ମ ।**

ଏହା କହି ଋଷ୍ୟାଦି କରିବ । ଋଷ୍ୟାଦି ଯଥା -

**ଓଁ ଉଦୁତ୍ୟମିତି ମନ୍ତ୍ରସ୍ୟ । ପ୍ରସ୍କଣ୍ୱ ଋଷିଃ । ଗାୟତ୍ରୀ ଛନ୍ଦଃ ।**
**ଶ୍ରୀସୂର୍ଯ୍ୟୋ ଦେବତା । ଉପସ୍ଥାନେ ବିନିଯୋଗଃ ॥**
**ଓଁ ଉଦୁତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ ।**
**ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ॥ (ଋଗ୍ ୧.୫୦.୧)**
**ଓଁ ଚିତ୍ରମିତି । କୁତ୍ସଋଷିଃ । ତ୍ରିଷ୍ଟୁପ୍ ଛନ୍ଦଃ ।**
**ଶ୍ରୀ ସୂର୍ଯ୍ୟୋ ଦେବତା । ଉପସ୍ଥାନେ ବିନିଯୋଗଃ ॥**
**ଓଁ ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।**
**ଆପ୍ରା ଦ୍ୟାବା ପୃଥିବୀ ଅନ୍ତରୀକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥**
(ଋଗ୍ ୧.୧୧୫.୧)

**ଓଁ ନମୋ ମିତ୍ରସ୍ୟେତ୍ୟସ୍ୟ ମନ୍ତ୍ରସ୍ୟ । ଅଭିତପା ଋଷିଃ ।**
**ଜଗତୀଛନ୍ଦଃ । ଶ୍ରୀ ସୂର୍ଯ୍ୟୋ ଦେବତା । ଉପସ୍ଥାନେ ବିନିଯୋଗଃ ॥**

ଓଁ ନମୋ ମିତ୍ରସ୍ୟ ବରୁଣସ୍ୟ ଚକ୍ଷସେ ମହୋ ଦେବାୟ ତଦୃତଂ ସପର୍ଯତ ।
ଦୂରେ ଦୃଶେ ଦେବଜାତାୟ କେତବେ ଦିବସ୍ପୁତ୍ରାୟ ସୂର୍ଯ୍ୟାୟ ଶଂସତ ॥
(ଋଗ୍ ୧୦.୩୭.୧)

ଏହା ପଢି ସୂର୍ଯ୍ୟାଭିମୁଖ ହୋଇ ସୂର୍ଯ୍ୟଙ୍କୁ ପ୍ରାର୍ଥନା କରିବ ।

## ଗାୟତ୍ରୀଜପବିଧି

**ଋଷ୍ୟାଦି** - ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ରଋଷିଃ, ଗାୟତ୍ରୀଛନ୍ଦଃ,
ସବିତା ଦେବତା, ଗାୟତ୍ରୀଜପକର୍ମଣି ବିନିଯୋଗଃ ।

**କରନ୍ୟାସ** -

ଓଁ ଭୂଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଭୁବଃ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ସ୍ୱଃ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ତତ୍ସବିତୁର୍ବରେଣ୍ୟମ୍ ଅନାମିକାଭ୍ୟାଂ ହୁମ୍ ।
ଓଁ ଭର୍ଗୋଦେବସ୍ୟ ଧୀମହି କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଏହା ପଢି କରନ୍ୟାସ କରିବ ।

**ଅଙ୍ଗନ୍ୟାସ** - ଓଁ ଭୂଃ ହୃଦୟାୟ ନମଃ । ଓଁ ଭୁବଃ ଶିରସେ ସ୍ୱାହା ।
ଓଁ ସ୍ୱଃ ଶିଖାୟୈ ବଷଟ୍ ।
ଓଁ ତତ୍ସବିତୁର୍ବରେଣ୍ୟଂ କବଚାଭ୍ୟାଂ ହୁମ୍ ।
ଓଁ ଭର୍ଗୋ ଦେବସ୍ୟ ଧୀମହି ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍
କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଏହା ପଢି ଅଙ୍ଗନ୍ୟାସ କରିବ ।

ଧ୍ୟାନମ୍ - ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ
ହାରୀହିରଣ୍ମୟବପୁର୍ଧୃତଶଂଖଚକ୍ରଃ ॥

ଏହି ଧ୍ୟାନ ବ୍ୟତୀତ ପ୍ରାତଃସଂଧ୍ୟା ଧ୍ୟାନ, ମଧ୍ୟାହ୍ନସଂଧ୍ୟା ଧ୍ୟାନ, ଓ ସାୟାହ୍ନସଂଧ୍ୟା ଧ୍ୟାନ ମଧ୍ୟ ଏଠାରେ ପାଠ କରାଯାଇପାରେ । (ଯଜୁର୍ବେଦୋକ୍ତ ସନ୍ଧ୍ୟାବିଧି ଦ୍ରଷ୍ଟବ୍ୟ ପୃଷ୍ଠା ୩୭/୩୮) ।

**ଗାୟତ୍ର୍ୟାବାହନ -**

**ଓଁ ଆୟାହି ବରଦେ ଦେବି ତ୍ର୍ୟକ୍ଷରେ ବ୍ରହ୍ମବାଦିନି ।**
**ଗାୟତ୍ରି ! ଛନ୍ଦସାଂ ମାତ ସ୍ୱୟଂ ବ୍ରହ୍ମ ଭୂର୍ଭୁବଃସ୍ୱରୋମ୍ ॥**

ଏହା ବୋଲି ଗାୟତ୍ରୀଙ୍କର ଆବାହନ କରିବ ।

**ଗାୟତ୍ରୀମନ୍ତ୍ର - ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟଂ ଭର୍ଗୋ**
**ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ॥**

ଏହି ମନ୍ତ୍ରକୁ ୧୦୮ ଥର, ଅଥବା ୫୪, ଅଥବା ୨୮ ବା ୧୮ ଥର ଜପ କରିବ ।

**ଜପସମର୍ପଣମନ୍ତ୍ର -**

**ଓଁ ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍କୃତଂ ଜପମ୍ ।**
**ସିଦ୍ଧିର୍ଭବତୁ ମେ ଦେବି ! ତ୍ୱତ୍ ପ୍ରସାଦାତ୍ ସୁରେଶ୍ୱରି ॥**

ଏହି ମନ୍ତ୍ର ପଢି ଦକ୍ଷିଣହାତରେ ଜଳ ଧରି ଜପ ସମର୍ପଣ କରିବ । ପୂରକ-କୁମ୍ଭକ-ରେଚକ କ୍ରମରେ ଥରେ ପ୍ରାଣାୟାମ କରିବ ।

## ଗାୟତ୍ରୀବିସର୍ଜନମନ୍ତ୍ର -

ଯାହି ଦେବି ! ଦେବମାତଃ ସୂର୍ଯ୍ୟଂ ସତ୍ୟଂ ବଳଂ କ୍ରମାତ୍ ।
ପ୍ରବିଶ୍ୟ ପରମାତ୍ମାନଂ ଜ୍ୟୋତୀରୂପେ ନମୋ ନମଃ ॥

ଏହା ପାଠ କରି ନମସ୍କାରପୂର୍ବକ ଗାୟତ୍ରୀ ବିସର୍ଜନ କରିବ । ଏହା ପରେ ଅନାମିକାଙ୍ଗୁଳି କପାଳରେ ଲଗାଇ ନିମ୍ନ ମନ୍ତ୍ର ପଢିବ । ଯଥା -

ଓଁ ଜାତବେଦସେ ସୁନବାମ ସୋମମରାତୀୟତୋ ନିଦହାତି ବେଦଃ ।
ସ ନଃ ପର୍ଷଦତି ଦୁର୍ଗାଣି ବିଶ୍ୱା ନାବେବ ସିନ୍ଧୁଂ ଦୁରିତାତ୍ୟଗ୍ନିଃ ॥
(ଋଗ୍ ୧.୯୯.୧)

## ଦିନରେ ସୂର୍ଯ୍ୟନମସ୍କାର -

ଓଁ ମିତ୍ରସ୍ୟ ଚର୍ଷଣୀଧୃତୋଽବୋ ଦେବସ୍ୟ ସାନସି ।
ଦ୍ୟୁମ୍ନଂ ଚିତ୍ରଶ୍ରବସ୍ତମମ୍ ॥
ଅଭି ଯୋ ମହିନା ଦିବଂ ମିତ୍ରୋ ବଭୂବ ସପ୍ରଥାଃ ।
ଅଭିଶ୍ରବୋଭିଃ ପୃଥିବୀମ୍ ॥
ମିତ୍ରାୟ ପଞ୍ଚ ଯେମିରେ ଜନା ଅଭିଷ୍ଟିଶବସେ ।
ସ ଦେବାନ୍ ବିଶ୍ୱାନ୍ ବିଭର୍ତ୍ତି ॥
ମିତ୍ରୋ ଦେବେଷ୍ୱାୟୁଷୁ ଜନାୟ ବୃକ୍ତବର୍ହିଷେ ।
ଇଷ ଇଷ୍ଟବତା ଅକଃ ॥ (ଋଗ୍. ୩.୫୯.୬-୯)

ଏହି ମନ୍ତ୍ରମାନ ଉଚ୍ଚାରଣ କରି ସୂର୍ଯ୍ୟନମସ୍କାର କରିବ । କିନ୍ତୁ ସାୟଂ ସନ୍ଧ୍ୟାରେ ଏହି ମନ୍ତ୍ରମାନ ପଢି ବରୁଣଙ୍କୁ ନମସ୍କାର କରିବ । ମନ୍ତ୍ର ଯଥା-

ଓଁ ଯଚ୍ଚିଦ୍ଧି ତେ ବିଶୋ ଯଥା ପ୍ର ଦେବ ବରୁଣ ବ୍ରତମ୍ ।
ମିନୀମସି ଦ୍ୟବି ଦ୍ୟବି ॥

ମାନୋ ବଧାୟ ହତ୍ନବେ ଜିହୀଳାନସ୍ୟ ରୀରଧଃ ।
ମା ହୃଣାନସ୍ୟ ମନ୍ୟବେ ॥
ବି ମୃଳୀକାୟ ତେ ମନୋ ରଥୀରଶ୍ୱଂ ନ ସଂଦିତମ୍ ।
ଗୀଭିର୍ବରୁଣ ସୀମହି ॥
ପରା ହି ମେ ବିମନ୍ୟବଃ ପତନ୍ତି ବସ୍ୟ ଇଷ୍ଟୟେ ।
ବୟୋ ନ ବସତୀରୁପ ॥
କଦା କ୍ଷତ୍ରଶ୍ରିୟଂ ନରମା ବରୁଣଂ କରାମହେ ।
ମୃଳୀକାୟୋରୁଚକ୍ଷସମ୍ ॥ (ଋଗ୍ ୧.୨୫.୧/୫)

**ସାୟଂସନ୍ଧ୍ୟାରେ ଜଳାଞ୍ଜଳିଦାନ -**

ଓଁ ଅଗ୍ନୟେ ସ୍ୱାହା, ଓଁ ପ୍ରଜାପତୟେ ସ୍ୱାହା ।

**ଦିନରେ -ଓଁ ସୂର୍ଯ୍ୟାୟ ସ୍ୱାହା, ଓଁ ପ୍ରଜାପତୟେ ସ୍ୱାହା ।**

ଓଁ ବ୍ରହ୍ମଣେ ନମଃ, ଓଁ ବିଷ୍ଣବେ ନମଃ, ଓଁ ରୁଦ୍ରାୟ ନମଃ ।
ଓଁ ପରମାତ୍ମନେ ନମଃ, ଓଁ ଜ୍ୟୋତୀରୂପାୟ ନମୋ ନମଃ ।

ଏହା ପାଠ କରି ପ୍ରତ୍ୟେକଙ୍କୁ ଜଳାଞ୍ଜଳି ଦେବ ।

**ସୂର୍ଯ୍ୟାର୍ଘ୍ୟ -** ଓଁ ହଂସଃ ଶୁଚିଷଦିତ୍ୟସ୍ୟ ମନ୍ତ୍ରସ୍ୟ
ଗୌତମପୁତ୍ରୋ ବାମଦେବଋଷିଃ, ନିବୃଜ୍ଜଗତୀଛନ୍ଦଃ,
ସୂର୍ଯ୍ୟୋ ଦେବତା, ସୂର୍ଯ୍ୟାର୍ଘ୍ୟେ ବିନିଯୋଗଃ ।
ଓଁ ହଂସଃ ଶୁଚିଷଦ୍ ବସୁରନ୍ତରିକ୍ଷସଦ୍ଧୋତା
ବେଦିଷଦତିଥିର୍ଦ୍ଦୁରୋଣସଦ୍ ।
ନୃଷଦ୍ ବରସଦୃତସଦ୍ ବ୍ୟୋମସଦବ୍ଜା
ଗୋଜା ଋତଜା ଅଦ୍ରିଜା ଋତମ୍ ॥ (ଋଗ୍ ୪.୪୦.୫)

ଏହି ମନ୍ତ୍ରରେ ସୂର୍ଯ୍ୟାର୍ଘ୍ୟ ପ୍ରଦାନ କରିବ । ସାୟଂସନ୍ଧ୍ୟାରେ ସୂର୍ଯ୍ୟାର୍ଘ୍ୟ ଦିଆଯାଏ ନାହିଁ ।

**ସୂର୍ଯ୍ୟନମସ୍କାରମନ୍ତ୍ର -**

ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ,
ଜଗତ୍ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ,
ବିରଞ୍ଚିନାରାୟଣଶଙ୍କରାତ୍ମନେ ।।
ଓଁ ନମସ୍ତେ ବିଷ୍ଣୁରୂପାୟ ନମସ୍ତେ ବ୍ରହ୍ମରୂପିଣେ ।
ସହସ୍ରରଶ୍ମୟେ ନିତ୍ୟଂ ନମସ୍ତେ ସର୍ବତେଜସେ ।।
ନମସ୍ତେ ରୁଦ୍ରବପୁଷେ ନମସ୍ତେ ଭକ୍ତବତ୍ସଳ ।
ଜଗତ୍ସ୍ୱାମିନ୍ ନମସ୍ତୁଽସ୍ତୁ ଦିବ୍ୟଚନ୍ଦନରୂପଧୃକ୍ ।।
ପଦ୍ମନାଭ ନମସ୍ତେଽସ୍ତୁ କୁଣ୍ଡଳାଙ୍ଗଦଭୂଷିତ ।
ନମସ୍ତେ ସର୍ବଲୋକେଶ ସୁପ୍ତାନାଂ ସଂପ୍ରବୋଧକ ।।
ସୁକୃତଂ ଦୁଷ୍କୃତଂ ଚୈବ ସର୍ବଂ ପଶ୍ୟସି ସର୍ବଦା ।
ସର୍ବଦେବ ନମସ୍ତେଽସ୍ତୁ ପ୍ରସୀଦ ମମ ଭାସ୍କର ।
ଦିବାକର ନମସ୍ତେଽସ୍ତୁ ପ୍ରଭାକର ନମୋଽସ୍ତୁ ତେ ।।

ଏହା ପାଠ କରି ସୂର୍ଯ୍ୟଙ୍କୁ ନମସ୍କାର କରିବ । ଏହା ପରେ କେହି କେହି ଅଚ୍ୟୁତନାମାଷ୍ଟକ ପାଠ କରିବା ବିଧାନ ମଧ୍ୟ ଉଲ୍ଲେଖ କରିଅଛନ୍ତି । (ଅଚ୍ୟୁତନାମାଷ୍ଟକ ପାଇଁ ଯଜୁର୍ବେଦୀୟ ସନ୍ଧ୍ୟାବିଧି ଦ୍ରଷ୍ଟବ୍ୟ)

ଇତି ଋଗ୍‌ବେଦୀୟ ସନ୍ଧ୍ୟାବିଧିଃ ସମାପ୍ତଃ ।।

# ସାମବେଦୀୟସନ୍ଧ୍ୟାବିଧିଃ

ପୂର୍ବୋତ୍ତର କୋଣକୁ ମୁଖ କରି ଉପବେଶନ କରିବ । ଦକ୍ଷିଣ ହସ୍ତର ବୃଦ୍ଧ ଓ ଅନାମିକା ଅଙ୍ଗୁଳିରେ କୁଶଦ୍ୱୟ ଓ ବାମହସ୍ତର ମଧ୍ୟମା ଓ ଅନାମିକା ଅଙ୍ଗୁଳିରେ କୁଶଗୁଡିଏ ଧରି ବିଷ୍ଣୁଙ୍କୁ ସ୍ମରଣ ପୂର୍ବକ 'ଓଁ ବିଷ୍ଣୁଃ' ବୋଲି ୬ଥର (ଦ୍ୱିରାଚମନ) ଆଚମନ କରିବ । ତା ପରେ ଦକ୍ଷିଣ ହସ୍ତ ଅଙ୍ଗୁଷ୍ଠ, ମଧ୍ୟମା ଓ ଅନାମିକା ଅଙ୍ଗୁଳି ଦ୍ୱାରା ଚକ୍ଷୁ, କର୍ଣ୍ଣ ଓ ନାସିକାରେ ଜଳସ୍ପର୍ଶ କରିବ ।

**ଓଁ ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା ।**
**ଯଃ ସ୍ମରେତ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ ॥**
**ଓଁ ଭୂର୍ଭୁବଃ ସ୍ୱଃ ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ**
**ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ॥**

ଏହି ମନ୍ତ୍ର ଉଚ୍ଚାରଣ କରି ୩ ଥର ଆଚମନ କରିବ ।

**ଓଁ ପ୍ରଣବମନ୍ତ୍ରସ୍ୟ, ବ୍ରହ୍ମା ଋଷିଃ, ଗାୟତ୍ରୀ ଛନ୍ଦଃ,**
**ପରମାତ୍ମା ଦେବତା, ମାର୍ଜନେ ବିନିଯୋଗଃ ।**

ଏହି ଋଷ୍ୟାଦି କରି ଓଁକାରରେ ପ୍ରଥମ ମାର୍ଜନା କରିବ ।

**ବ୍ୟାହୃତୀନାଂ, ପ୍ରଜାପତିଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍‌ଛନ୍ଦାଂସି,**
**ଅଗ୍ନିବାୟୁସୂର୍ଯ୍ୟାଃ ଦେବତାଃ, ମାର୍ଜନେ ବିନିଯୋଗଃ ॥**

ଏହି ଋଷ୍ୟାଦି କରି 'ଭୂର୍ଭୁବଃ ସ୍ୱଃ' ଏହା ବୋଲି ଦ୍ୱିତୀୟ ମାର୍ଜନ କରିବ ।

**ଓଁ ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ**
**ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ॥**

ଏହି ଗାୟତ୍ରୀ ମନ୍ତ୍ର ପାଠ କରି ତୃତୀୟ ମାର୍ଜନ କରିବ ।

**ଓଁ ଆପୋ ହିଷ୍ଠେତି ମନ୍ତ୍ରସ୍ୟ, ସିନ୍ଧୁଦ୍ୱୀପଋଷିଃ, ଗାୟତ୍ରୀଛନ୍ଦଃ,**
**ଆପୋ ଦେବତା, ମାର୍ଜନେ ବିନିଯୋଗଃ ।**

ଏହି ଋଷ୍ୟାଦି କରି -

**ଆପୋହିଷ୍ଠା ମୟୋଭୁବଃ, ତା ନ ଊର୍ଜେ**
**ଦଧାତନ, ମହେରଣାୟ ଚକ୍ଷସେ । ଯୋ ବଃ**
**ଶିବତମୋ ରସଃ, ତସ୍ୟ ଭାଜୟତେ ହ ନଃ ।।**

ଏହା ପଢ଼ି ଭୂମିରେ ମାର୍ଜନରୀତିରେ ଜଳ ସିଞ୍ଚିବ ।

**'ଉଶତୀରିବ ମାତରସ୍ତସ୍ମା ଅରଂ ଗମାମ ବୋ,**
**ଯସ୍ୟ କ୍ଷୟାୟ ଜିନ୍ୱଥ, ଆପୋ ଜନୟଥା ଚ ନଃ ।।**

ଏହା ପଢ଼ି ମସ୍ତକରେ ଜଳସେଚନପୂର୍ବକ ମାର୍ଜନ କରିବ ।

**ଆସନଶୁଦ୍ଧି -ଓଁ ଆସନମନ୍ତ୍ରସ୍ୟ, ମେରୁପୃଷ୍ଠଋଷିଃ, ସୁତଳଂ ଛନ୍ଦଃ,**
**ଶ୍ରୀକୂର୍ମୋ ଦେବତା, ଆସନଶୁଦ୍ଧୌ ବିନିଯୋଗଃ ।**
**ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବି ତ୍ୱଂ ବିଷ୍ଣୁନା ଧୃତା ।**
**ତ୍ୱଂ ଚ ଧାରୟ ମାଂ ଦେବି ପବିତ୍ରମାସନଂ କୁରୁ ।।**

ଏହିପରି ଋଷ୍ୟାଦିନ୍ୟାସ ସହିତ ମନ୍ତ୍ର ପାଠ କରି ଭୂମିକୁ ପ୍ରାର୍ଥନା କରି ତିନିଗୋଟି କୁଶ ପୂର୍ବାଗ୍ର କରି ପକାଇ ବସିବ । 'ଓଁ ବ୍ରହ୍ମଣେ ନମଃ' ବୋଲି ଜଳଚଳୁଏ ଧରି ଦକ୍ଷିଣାବର୍ତ୍ତରେ ନିଜ ଦେହର ଚାରିଆଡେ ବୁଲାଇ ପକାଇଦେବ ।

**ଓଁ କାରସ୍ୟ, ବ୍ରହ୍ମାଋଷିଃ, ଗାୟତ୍ରୀଛନ୍ଦଃ, ପରମାତ୍ମା**
**(ଅଗ୍ନିର୍ବା) ଦେବତା, ସର୍ବକର୍ମାରମ୍ଭେ ବିନିଯୋଗଃ ।।**

ଏହି ଋଷ୍ୟାଦି କରି 'ଓଁ ଖଂ ବ୍ରହ୍ମ' ଇତ୍ୟାଦି ବ୍ରାହ୍ମଣ ବୋଲିବ । ବ୍ରାହ୍ମଣ ଯଥା -

ଓଁ ଖଂ ବ୍ରହ୍ମ ଖଂ ପୁରାଣଂ ବାୟୁଃ ଖମିତି ହ ସ୍ମାହ
କୌରବ୍ୟାୟଣୀପୁତ୍ରଃ ବେଦୋଽୟଂ ବ୍ରାହ୍ମଣା
ବିଦୁର୍ବେଦୈନେନ ଯଦ୍‌ବେଦିତବ୍ୟମ୍ ॥

(ବୃ.ଆ.ଉ.ଅ.୫)

ସପ୍ତବ୍ୟାହୃତୀନାମ୍, ପ୍ରଜାପତିରଷିଃ, ଗାୟତ୍ର୍ୟଷ୍ଣିଗନୁଷ୍ଟୁବ୍-ବୃହତୀପଂକ୍ତିସ୍ତ୍ରିଷ୍ଟୁବ୍‌ଜଗତ୍ୟଶ୍ଛନ୍ଦାଂସି, ଅଗ୍ନିବାୟୁସୂର୍ଯ୍ୟବୃହସ୍ପତି-ବରୁଣେନ୍ଦ୍ରବିଶ୍ୱେଦେବାଦେବତାଃ, ପ୍ରାଣାୟାମେ ବିନିଯୋଗଃ ॥

ଏହି ଋଷ୍ୟାଦି କରି 'ଓଁ ପ୍ରଜାପତିର୍ଲୋକାନଭ୍ୟତପଦିତ୍ୟାଦି' ବ୍ରାହ୍ମଣ ବୋଲିବ । ବ୍ରାହ୍ମଣ ଯଥା -

'ପ୍ରଜାପତିର୍ଲୋକାନଭ୍ୟତପତ୍ । ତେଷାଂ ତପ୍ୟମାନାନାଂ ରସାନ୍ ପ୍ରାବୃହତ୍ । ଅଗ୍ନିଂ ପୃଥିବ୍ୟାଃ ବାୟୁମନ୍ତରିକ୍ଷାଦାଦିତ୍ୟଂ ଦିବଃ ॥ ୧ ॥ ସ ଏତାସ୍ତିସ୍ରୋ ଦେବତା ଅଭ୍ୟତପତ୍ । ତାସାଂ ତପ୍ୟମାନାନାଂ ରସାନ୍ ପ୍ରାବୃହଦଗ୍ନେର୍ଋଚୋ ବାୟୋର୍ଯଜୂଂଷି, ସାମାନ୍ୟାଦିତ୍ୟାତ୍ ॥ ୨ ॥ ସ ଏତାଂ ତ୍ରୟୀଂ ବିଦ୍ୟାମଭ୍ୟତପତ୍ତସ୍ୟାସ୍ତପ୍ୟମାନାୟା ରସାନ୍ ପ୍ରାବୃହଦ୍ । ଭୂରିତ୍ୟୃଗ୍‌ଭ୍ୟୋ, ଭୁବରିତି ଯଜୁର୍ଭ୍ୟ ସ୍ୱରିତି ସାମଭ୍ୟଃ ॥ ୩ ॥ ତଦ୍ୟଦ୍ୟୃକ୍ତୋ ରିଷ୍ୟେଦ୍ ଭୂଃ ସ୍ୱାହେତି ଗାର୍ହପତ୍ୟେ ଜୁହୁୟାଦୃଚାମେବ ତଦ୍ରସେନର୍ଚାଂ ବୀର୍ଯ୍ୟେଣର୍ଚାଂ ଯଜ୍ଞସ୍ୟ ବିରିଷ୍ଟଂ ସନ୍ଦଧାତି ॥ ୪ ॥

ଅଥ ଯଦି ଯଜୁଷ୍ଟୋ ରିଷ୍ୟେଦ୍ ଭୁବଃ ସ୍ୱାହେତି
ଦକ୍ଷିଣାଗ୍ନୌ ଜୁହୁୟାଦ୍ୟଜୁଷାମେବ ତଦ୍ରସେନ ଯଜୁଷାଂ
ବୀର୍ଯେଣ ଯଜୁଷାଂ ଯଜ୍ଞସ୍ୟ ବିରିଷ୍ଟଂ ସନ୍ଦଧାତି ॥ ୫ ॥
ଅଥ ଯଦି ସାମତୋ ରିଷ୍ୟେତ୍ ସ୍ୱଃ ସ୍ୱାହେତ୍ୟାହବନୀୟେ

ଜୁହୁୟାତ୍ ସାମ୍ନାମେବ ତଦ୍ରସେନ ସାମ୍ନାଂ ବୀର୍ଯେ୍ୟଣ
ସାମ୍ନାଂ ଯଜ୍ଞସ୍ୟ ବିରିଷ୍ଟଂ ସନ୍ଦଧାତି ॥ ୬ ॥
(ଛାନ୍ଦୋ. ଉପ. ଅ ୪/ଖ ୧୭/୧-୬)

ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ରଋଷିଃ, ଗାୟତ୍ରୀଛନ୍ଦଃ, ସବିତା ଦେବତା, ଅଗ୍ନିର୍ମୁଖମୁପନୟନେ ବିନିଯୋଗଃ ।

ଏହି ଋଷ୍ୟାଦି କରି 'ଓଁ ଗାୟତ୍ରୀ ବା ଇଦଂ ସର୍ବମିତ୍ୟାଦି' ବ୍ରାହ୍ମଣ ବୋଲିବ । ବ୍ରାହ୍ମଣ ଯଥା -

ଓଁ ଗାୟତ୍ରୀ ବା ଇଦଂ ସର୍ବଂ ଭୂତଂ ଯଦିଦଂ କିଂ ଚ ବାଗ୍ ବୈ
ଗାୟତ୍ରୀ ବାଗ୍ ବା ଇଦଂ ସର୍ବଂ ଭୂତଂ ଗାୟତି ଚ ତ୍ରାୟତେ ଚ ॥ ୧ ॥
ଯା ବୈ ସା ଗାୟତ୍ରୀୟଂ ବାବା ସ୍ୱା ଯେୟଂ ପୃଥିବ୍ୟସ୍ୟାଂ
ହୀଦଂ ସର୍ବଂ ଭୂତଂ ପ୍ରତିଷ୍ଠିତମେତାମେବ ନାତିଶୀୟତେ ॥ ୨ ॥
ଯା ବୈ ସା ପୃଥିବୀୟଂ ବାବ ସା ଯଦିଦମସ୍ମିନ୍ ପୁରୁଷେ
ଶରୀରମସ୍ମିନ୍ ହୀମେ ପ୍ରାଣାଃ ପ୍ରତିଷ୍ଠିତା ଏତଦେବ ନାତିଶୀୟନ୍ତେ ॥ ୩ ॥
ଯଦ୍ ବୈ ତତ୍ପୁରୁଷେ ଶରୀରମିଦଂ ବାବ
ତଦ୍ୟଦିଦମସ୍ମିନ୍ନନ୍ତଃ ପୁରୁଷେ ହୃଦୟମସ୍ମିନ୍
ହୀମେ ପ୍ରାଣାଃ ପ୍ରତିଷ୍ଠିତା ଏତଦେବ ନାତିଶୀୟନ୍ତେ ॥ ୪ ॥
ସୈଷା ଚତୁଷ୍ପଦା ଷଡ୍‌ବିଧା ଗାୟତ୍ରୀ ତଦେତଦୃଚାଭ୍ୟନୂକ୍ତମ୍ ॥ ୫ ॥
ତାବାନସ୍ୟ ମହିମା ତତୋ ଜ୍ୟାୟାଁଶ୍ଚ ପୁରୁଷଃ ।
ପାଦୋଽସ୍ୟ ସର୍ବା ଭୂତାନି ତ୍ରିପାଦସ୍ୟାମୃତଂ ଦିବୀତି ॥ ୬ ॥
(ଛାନ୍ଦୋ. ଉପ. ଅ.୩. ଖ ୧୨. ୧-୬)

ଓଁ ଶିରସଃ, ପ୍ରଜାପତି ଋଷିଃ, ଯଜୁଶ୍ଛନ୍ଦଃ, ବ୍ରହ୍ମାଗ୍ନିବାୟୁ-ସୂର୍ଯ୍ୟା ଦେବତା, ପ୍ରାଣାୟାମେ ବିନିଯୋଗଃ ।

ଏହି ଋଷ୍ୟାଦି କରି 'ଓଁ ସଶିରସ୍କାଂ ତ୍ରିଃ ପଠେଦ୍' ଇତ୍ୟାଦି ବ୍ରାହ୍ମଣ ପଢିବ ।

**ଓଁ ଭୂଃ, ଓଁ ଭୁବଃ, ଓଁ ସ୍ୱଃ, ଓଁ ମହଃ, ଓଁ ଜନଃ, ଓଁ ତପଃ, ଓଁ ସତ୍ୟମ୍,**
**ଓଁ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ।**
**ଧିୟୋ ଯୋ ନଃ ପ୍ରଚୋଦୟାତ୍ ।**
**ଓଁ ଆପୋ ଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋମ୍ ॥**

ଏହି ମନ୍ତ୍ର ପଢି ତିନିଥର ପ୍ରାଣାୟାମ କରିବ ।

**ପ୍ରାତଃସନ୍ଧ୍ୟାରେ -**

**ଓଁ ଅହଶ୍ଚେତ୍ୟସ୍ୟ ମନ୍ତ୍ରସ୍ୟ, ବ୍ରହ୍ମା ଋଷିଃ, ଗାୟତ୍ରୀ ଛନ୍ଦଃ,**
**ଆପୋ ଦେବତା, ଆଚମନେ ବିନିଯୋଗଃ ॥**

ଏହି ଋଷ୍ୟାଦିନ୍ୟାସ କରି 'ଓଁ ଭୂର୍ଭୁବଃ ସ୍ୱଃ ସତ୍ୟଂ ପୁରୁଷଃ ଅହଶ୍ଚ ଆଦିତ୍ୟଶ୍ଚ ପୁନାତୁ ସ୍ୱାହା' ଏହି ମନ୍ତ୍ର ପଢି ତିନିଥର ଆଚମନ କରିବ ।

**ସାୟଂସନ୍ଧ୍ୟାରେ -**

**ଓଁ ରାତ୍ରିଶ୍ଚ ଇତ୍ୟସ୍ୟ ମନ୍ତ୍ରସ୍ୟ, ରୁଦ୍ରଋଷିଃ, ଜଗତୀଛନ୍ଦଃ,**
**ବରୁଣୋ ଦେବତା, ଆଚମନେ ବିନିଯୋଗଃ ॥**

ଏହି ଋଷ୍ୟାଦି କରି 'ଓଁ ଭୂର୍ଭୁବଃ ସ୍ୱଃ ସତ୍ୟଂ ପୁରୁଷଂ ରାତ୍ରିଶ୍ଚ ମା ବରୁଣଶ୍ଚ ପୁନାତୁ ସ୍ୱାହା' ଏହି ମନ୍ତ୍ର ପଢି ତିନିଥର ଆଚମନ କରିବ । ଏହାପରେ ପ୍ରଥମେ ଗାୟତ୍ରୀ ଓ ତାପରେ ଆପୋହିଷ୍ଠାଦି ମନ୍ତ୍ରଗୁଡ଼ିକର ଋଷ୍ୟାଦିନ୍ୟାସ କରି ସେହି ମନ୍ତ୍ରଗୁଡିକ ଦ୍ୱାରା ମାର୍ଜନ କରିବ ।

**ଓଁ ଅଘମର୍ଷଣସୂକ୍ତସ୍ୟ, ଅଘମର୍ଷଣଋଷିଃ, ଅନୁଷ୍ଟୁପ୍ଛନ୍ଦଃ,**
**ଭାବବୃତ୍ତଂ ଦୈବତମ୍, ଅଶ୍ୱମେଧାବଭୃଥେ ବିନିଯୋଗଃ ॥**

ଏହି ଋଷ୍ୟାଦି କରି ଦକ୍ଷିଣହସ୍ତରେ ଜଳଚଳୁଏ ଧରି ନିଃଶ୍ୱାସରୋଧ କରି ୩ ଥର ଅଥବା ନିଃଶ୍ୱାସରୋଧ ନ କରି ଏକବାର ନିମ୍ନ ମନ୍ତ୍ର ପାଠ କରିବ ।

ଓଁ ଋତଂ ଚ ସତ୍ୟଂ ଚାଭୀଦ୍ଧାତ୍ ତପସୋଽଧ୍ୟଜାୟତ ।
ତତୋ ରାତ୍ରିରଜାୟତ, ତତଃ ସମୁଦ୍ରୋଽଅର୍ଣ୍ଣବଃ ॥
ସମୁଦ୍ରାଦର୍ଣ୍ଣବାଦଧି ସଂବତ୍ସରୋଽଅଜାୟତ ।
ଅହୋରାତ୍ରାଣି ବିଦଧଦ୍ ବିଶ୍ୱସ୍ୟ ମିଷତୋ ବଶୀ ॥
ସୂର୍ଯ୍ୟାଚନ୍ଦ୍ରମସୌ ଧାତା ଯଥାପୂର୍ବମକଳ୍ପୟତ୍ ।
ଦିବଂ ଚ ପୃଥିବୀଂ ଚାନ୍ତରିକ୍ଷମଥୋ ସ୍ୱଃ ॥

ଏହି ମନ୍ତ୍ର ପଢ଼ି ଜଳଚଳୁକକୁ ନାକରେ ଲଗାଇ ତଳେ ପକାଇବ ।

ଓଁ ଭୂର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ
ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ॥

ଏହି ମନ୍ତ୍ରରେ ୩ ଥର ସୂର୍ଯ୍ୟଙ୍କୁ ଜଳାଞ୍ଜଳି ଦେବ ।

## ସୂର୍ଯ୍ୟୋପସ୍ଥାନ -

ଦୁଇହାତ ଯୋଡି ସୂର୍ଯ୍ୟାଭିମୁଖ ହୋଇ ନିମ୍ନ ମନ୍ତ୍ର ପାଠ କରିବ ।
ଯଥା - ଓଁ ଅସାବାଦିତ୍ୟୋ ବ୍ରହ୍ମ, ଏହି ବାକ୍ୟ ପଢ଼ି -

ଓଁ ଉଦୁତ୍ୟମିତି ମନ୍ତ୍ରସ୍ୟ, ପ୍ରସ୍କଣ୍ୱଋଷିଃ, ଗାୟତ୍ରୀ ଛନ୍ଦଃ,
ଶ୍ରୀ ସୂର୍ଯ୍ୟୋ ଦେବତା, ଉପସ୍ଥାନେ ବିନିଯୋଗଃ ।

ଏହି ଋଷ୍ୟାଦି କରି -

ଓଁ ଉଦୁତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ,
ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ।
ଚିତ୍ରଂ ଦେବାନାମୁଦଗାଦନୀକଂ ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରା ଦ୍ୟାବା ପୃଥିବୀ ଅନ୍ତରିକ୍ଷଂ ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥
ଉଦ୍ୱୟଂ ତମସସ୍ପରି ଜ୍ୟୋତିଃ ପଶ୍ୟନ୍ତ ଉତ୍ତରମ୍ ।
ସ୍ୱଃ ପଶ୍ୟନ୍ତ ଉତ୍ତରଂ ଦେବଂ ଦେବତ୍ରା ସୂର୍ଯ୍ୟମଗନ୍ମ ଜ୍ୟୋତିରୁତ୍ତମମ୍ ॥

## ଗାୟତ୍ରୀଜପଃ

ଋଷ୍ୟାଦିନ୍ୟାସ -

ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ରଋଷିଃ, ଗାୟତ୍ରୀଛନ୍ଦଃ,
ସବିତା ଦେବତା, ଣୀଂ ବୀଜଂ, ୟଂ ଶକ୍ତିଃ, ଜପକର୍ମଣି ବିନିଯୋଗଃ ।

କରନ୍ୟାସ -

ଓଁ ଭୂଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଭୁବଃ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ସ୍ୱଃ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ତତ୍ ସବିତୁର୍ବରେଣ୍ୟମ୍ ଅନାମିକାଭ୍ୟାଂ ହୁମ୍ ।
ଓଁ ଭର୍ଗୋଦେବସ୍ୟ ଧୀମହି କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସ - ଓଁ ଭୂଃ ହୃଦୟାୟ ନମଃ ।
ଓଁ ଭୁବଃ ଶିରସେ ସ୍ୱାହା ।
ଓଁ ସ୍ୱଃ ଶିଖାୟୈ ବଷଟ୍ ।
ଓଁ ତତ୍‌ସବିତୁର୍ବରେଣ୍ୟଂ କବଚାଭ୍ୟାଂ ହୁମ୍ ।
ଓଁ ଭର୍ଗୋ ଦେବସ୍ୟ ଧୀମହି ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍
କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍ - ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ-
ହାରୀହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ॥

(ଏଠାରେ ପ୍ରାତଃସନ୍ଧ୍ୟା, ମଧ୍ୟାହ୍ନସନ୍ଧ୍ୟା ଓ ସାୟଂସନ୍ଧ୍ୟା ଭେଦରେ ଯଜୁର୍ବେଦୋକ୍ତ ଗାୟତ୍ରୀଧ୍ୟାନ ମଧ୍ୟ ବୋଲାଯାଇପାରେ ।)

**ଆୟାହି ବରଦେ ଦେବି ତ୍ର୍ୟକ୍ଷରେ ବ୍ରହ୍ମବାଦିନି ।**
**ଗାୟତ୍ରି ଛନ୍ଦସାଂ ମାତଃ ସ୍ୱୟଂ ବ୍ରହ୍ମ ଜୁଷସ୍ୱ ମେ ।।**

**ଗାୟତ୍ରୀମନ୍ତ୍ର -ଓଁ ଭୂର୍ଭୁବଃ ସ୍ୱଃ ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।।**

ଏହି ଗାୟତ୍ରୀ ମନ୍ତ୍ର ଯଥାଶକ୍ତି ଶହେ ଆଠ, ବା ଅଠାବନ, ଅଠାଇଶ, ଅଠର, ଅଥବା ଆଠଥର ଜପ କରିବ । ଜପସମର୍ପଣ ମନ୍ତ୍ର ଯଥା -

**ଓଁ ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍ କୃତଂ ଜପମ୍ ।**
**ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ ପ୍ରସାଦାତ୍ ସୁରେଶ୍ୱରି ।।**

ଏହି ମନ୍ତ୍ର ପଢି ଜପ ସମର୍ପଣ କରିବ ।

**ଓଁ ଉତ୍ତରେ ଶିଖରେ ଜାତେ ଭୂମ୍ୟାଂ ପର୍ବତବାସିନି !**
**ବ୍ରହ୍ମଣା ସମନୁଜ୍ଞାତେ ଗଚ୍ଛ ଦେବି ଯଥେଚ୍ଛୟା ।।**

ଏହି ମନ୍ତ୍ର ବୋଲି ଜଳାଞ୍ଜଳି ଦେଇ ଗାୟତ୍ରୀ ଦେବୀଙ୍କୁ ବିସର୍ଜନ କରିବ । ଏହାପରେ ଥରେ ପ୍ରାଣାୟାମ କରିବ ଓ ଏହାପରେ -

**ଓଁ ସୂର୍ଯ୍ୟାୟ ସ୍ୱାହା, ଇଦଂ ସୂର୍ଯ୍ୟାୟ ।**
**ଓଁ ପ୍ରଜାପତୟେ ସ୍ୱାହା, ଇଦଂ ପ୍ରଜାପତୟେ ।।**

ଏହା ବୋଲି ଦୁଇଥର ଜଳାଞ୍ଜଳି ଦେବ ।

**ସାୟଂସନ୍ଧ୍ୟାରେ -**

**ଓଁ ଅଗ୍ନୟେ ସ୍ୱାହା, ଇଦମଗ୍ନୟେ ।**
**ଓଁ ପ୍ରଜାପତୟେ ସ୍ୱାହା, ଇଦଂ ପ୍ରଜାପତୟେ ।।**

ଏହା ପରେ ନିମ୍ନ ମନ୍ତ୍ର ପାଠ କରି ଜଳରେ ଅଷ୍ଟଦଳ ପଦ୍ମ ଲେଖିବ । ମନ୍ତ୍ର ଯଥା-

ଓଁ ବଣ୍‌ମହାଁ ଅସି, ସୂର୍ଯ୍ୟ ବଡାଦିତ୍ୟମହାଁ ଅସି ।
ମହସ୍ତେ ସତୋ ମହିମାପନସ୍ୟ ତେଦ୍ଧା ଦେବ ମହାଁ ଅସି ।
ବଟ୍‌ସୂର୍ଯ୍ୟ ଶ୍ରବସାମହାଁ ଅସି, ସତ୍ରା ଦେବମହାଁ ଅସି ।
ମହ୍ନା ଦେବାନାମସୂର୍ଯ୍ୟଃ ପୁରୋହିତୋ ବିଭୁ ଜ୍ୟୋତିରଦାଭ୍ୟମ୍ ॥

**ସୂର୍ଯ୍ୟାର୍ଘ୍ୟଦାନମନ୍ତ୍ର -**

ଓଁ ଏହି ସୂର୍ଯ୍ୟ ସହସ୍ରାଂଶୋ ତେଜୋରାଶେ ଜଗଦ୍‌ପତେ ।
ଅନୁକମ୍ପୟ ମାଂ ଭକ୍ତ୍ୟା ଗୃହାଣାର୍ଘ୍ୟଂ ନମୋଽସ୍ତୁ ତେ ॥

ଏହି ମନ୍ତ୍ର ପଢି ସୂର୍ଯ୍ୟାର୍ଘ୍ୟ ଦେବ । ତା ପରେ 'ଓଁ ବିଷ୍ଣୁଃ' ଏହି ମନ୍ତ୍ରରେ ଦ୍ୱିରାଚମନ (୨ଥର) ଆଚମନ କରିବ ।

**ସୂର୍ଯ୍ୟନମସ୍କାର -**

ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ,
ଜଗଦ୍‌ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ,
ବିରଞ୍ଚିନାରାୟଣଶଙ୍କରାତ୍ମନେ ॥

ଏହି ମନ୍ତ୍ରରେ ସୂର୍ଯ୍ୟନମସ୍କାର କରି ତାପରେ ଅଚ୍ୟୁତନାମାଷ୍ଟକ ପାଠ କରିବା ବିଧି ଅଛି ।

**ନାମାଷ୍ଟକଂ ଯଥା -**

ଅଚ୍ୟୁତଂ କେଶବଂ ବିଷ୍ଣୁଂ ହରିଂ ସତ୍ୟଂ ଜନାର୍ଦ୍ଦନମ୍ ।
ହଂସଂ ନାରାୟଣଂ ଚୈବ ଏତନ୍ନାମାଷ୍ଟକଂ ଶୁଭମ୍ ॥

**ତ୍ରିସନ୍ଧ୍ୟଂ ଯଃ ପଠେନ୍ନିତ୍ୟଂ ଦାରିଦ୍ର୍ୟଂ ତସ୍ୟ ନଶ୍ୟତି ।**
**ଶତ୍ରୁବର୍ଗାଃ କ୍ଷୟଂ ଯାନ୍ତି ଦୁଃସ୍ୱପ୍ନଂ ଚାପକର୍ଷତି ॥**
**ଗଙ୍ଗାୟାଂ ମରଣଂ ଚୈବ ଦୃଢାଭକ୍ତିଶ୍ଚ କେଶବେ ।**
**ବ୍ରହ୍ମବିଦ୍ୟାପ୍ରବୋଧଶ୍ଚ ତସ୍ମାନ୍ନିତ୍ୟଂ ପଠେନ୍ନରଃ ॥**

ଏହି ନାମାଷ୍ଟକ ପଢି ନମସ୍କାର କରିବ ।

ଇତି ସାମବେଦୀୟସନ୍ଧ୍ୟା ସମାପ୍ତା ।

## ଅଥର୍ବବେଦୀୟସନ୍ଧ୍ୟାବିଧିଃ

ପୂର୍ବାଭିମୁଖୀ ହୋଇ ଉପବେଶନ କରି ବିଷ୍ଣୁଙ୍କୁ ସ୍ମରଣ ପୂର୍ବକ 'ଓଁ ବିଷ୍ଣୁଃ' ବୋଲି କହି ଦ୍ୱିରାଚମନ (୨ଥର) କରିବ । ତା ପରେ ଦକ୍ଷିଣହସ୍ତ ଅଙ୍ଗୁଷ୍ଠ, ମଧ୍ୟମା ଓ ଅନାମିକା ଅଙ୍ଗୁଳିଦ୍ୱାରା ଚକ୍ଷୁ, କର୍ଣ୍ଣ ଓ ନାସିକାରେ ଜଳସ୍ପର୍ଶ କରିବ । ତାପରେ-

**ଓଁ ତଦ୍ ବିଷ୍ଣୋଃ ପରମଂ ପଦଂ ସଦା ପଶ୍ୟନ୍ତି ସୂରୟଃ ।**
**ଦିବୀବ ଚକ୍ଷୁରାତତମ୍ ॥** (ଅଥର୍ବ ୭.୨୬.୭)
**ଅପବିତ୍ରଃ ପବିତ୍ରୋ ବା ସର୍ବାବସ୍ଥାଂ ଗତୋଽପି ବା ।**
**ଯଃ ସ୍ମରେଦ୍ ପୁଣ୍ଡରୀକାକ୍ଷଂ ସ ବାହ୍ୟାଭ୍ୟନ୍ତରଃ ଶୁଚିଃ ॥**

ଏହି ମନ୍ତ୍ର ପଢି ନାରାୟଣଙ୍କୁ ସ୍ମରଣ କରିବ ।

**ଆସନଶୁଦ୍ଧି -ଓଁ ଆସନମନ୍ତ୍ରସ୍ୟ, ମେରୁପୃଷ୍ଠ ଋଷିଃ, ସୁତଲଂ ଛନ୍ଦଃ,**
**ଶ୍ରୀକୂର୍ମୋ ଦେବତା, ଆସନଶୁଦ୍ଧୌ ବିନିଯୋଗଃ ।**
**ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବି ତ୍ୱଂ ବିଷ୍ଣୁନା ଧୃତା ।**
**ତ୍ୱଂ ଚ ଧାରୟ ମାଂ ନିତ୍ୟଂ ପବିତ୍ରମାସନଂ କୁରୁ ॥**

ଏହି ମନ୍ତ୍ରରେ ଆସନକୁ ଅଭିମନ୍ତ୍ରିତ କରି ସେଥିରେ ତିନିଗୋଟି କୁଶ ପକାଇ ବସିବ ।

## ପ୍ରାଣାୟାମ -

ଓଁ କାରସ୍ୟ, ବ୍ରହ୍ମାଋଷିଃ, ଦୈବୀଗାୟତ୍ରୀଛନ୍ଦଃ,
ପରମାତ୍ମା (ଅଗ୍ନି)ଦେବତା, ପ୍ରାଣାୟାମେ ବିନିଯୋଗଃ ।
ସପ୍ତବ୍ୟାହୃତୀନାଂ, ପ୍ରଜାପତି ଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍-
ବୃହତୀତ୍ରିଷ୍ଟୁବ୍‌ଜଗତ୍ୟଶ୍ଛନ୍ଦାଂସି, ଅଗ୍ନିବାୟୁବୃହସ୍ପତିବରୁଣେନ୍ଦ୍ର-
ବିଶ୍ୱେଦେବା ଦେବତାଃ, ପ୍ରାଣାୟାମେ ବିନିଯୋଗଃ ।
ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ, ଗାୟତ୍ରୀ ଛନ୍ଦଃ,
ସବିତା ଦେବତା, ପ୍ରାଣାୟାମେ ବିନିଯୋଗଃ ।
ଗାୟତ୍ରୀଶିରସଃ, ପ୍ରଜାପତିଋଷିଃ, ଅନୁଷ୍ଟୁପ୍‌ଛନ୍ଦଃ,
ବ୍ରହ୍ମାଗ୍ନିବାୟୁସୂର୍ଯ୍ୟା ଦେବତାଃ, ପ୍ରାଣାୟାମେ ବିନିଯୋଗଃ ।

ଏହିପରି ଚାରିଗୋଟି ଋଷ୍ୟାଦି କରି -

ଓଁ ଭୂଃ, ଓଁ ଭୁବଃ, ଓଁ ସ୍ୱଃ, ଓଁ ମହଃ, ଓଁ ଜନଃ, ଓଁ ତପଃ, ଓଁ ସତ୍ୟମ୍,
ଓଁ ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ।
ଧିୟୋ ଯୋ ନଃ ପ୍ରଚୋଦୟାତ୍ ॥
ଓଁ ଆପୋ ଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ
ସ୍ୱରୋମ୍ । ପରୋରଜସେଽବସାଦୋମ୍ ॥

ଏହି ମନ୍ତ୍ର ପଢି ତିନିଥର ପ୍ରାଣାୟାମ କରିବ । ପ୍ରାଣାୟାମ କରି ସାରି ନିମ୍ନ ମନ୍ତ୍ର ପାଠ କରିବ । ଯଥା -

ଓଁ ଅବ୍ୟସଶ୍ଚ ବ୍ୟବସଶ୍ଚ ବିଲଂ ବକ୍ଷ୍ୟାମି ମାୟୟା ।
ତାଭ୍ୟାମୁଦ୍ଧୃତ୍ୟ ବେଦମଥ କର୍ମାଣି କୃଣ୍ମହେ ॥

ମନ୍ତ୍ରସ୍ନାନ -ଓଁହିରଣ୍ୟବର୍ଣ୍ଣା ଇତିସୂକ୍ତସ୍ୟ, କାଶ୍ୟପଋଷିଃ, ତ୍ରିଷ୍ଟୁପ୍ଛନ୍ଦଃ,
ଆପୋ ଦେବତା, ମନ୍ତ୍ରସ୍ନାନେ ବିନିଯୋଗଃ ।

ଏହି ଋଷ୍ୟାଦି କରିସାରି -

ଓଁ ହିରଣ୍ୟବର୍ଣ୍ଣାଃ ଶୁଚୟଃ ପାବକାଃ ଯାସୁ ଜାତଃ ସବିତା ଯାସ୍ୱଗ୍ନିଃ ।
ଯା ଅଗ୍ନିଂ ଗର୍ଭଂ ଦଧିରେ ସୁବର୍ଣ୍ଣାସ୍ତା ନ ଆପଃ ଶଂ ସ୍ୟୋନା ଭବନ୍ତୁ ॥
ଯାସାଂ ରାଜା ବରୁଣୋ ଯାତିମଧ୍ୟେ ସତ୍ୟାନୃତେ ଅବପଶ୍ୟନ୍ ଜନାନାମ୍ ।
ଯା ଅଗ୍ନିଂ ଗର୍ଭଂ ଦଧିରେ ସୁବର୍ଣ୍ଣାସ୍ତା ନ ଆପଃ ଶଂ ସ୍ୟୋନା ଭବନ୍ତୁ ॥
ଯାସାଂ ଦେବା ଦିବି କୃଣ୍ୱନ୍ତି ଭକ୍ଷଂ ଯା ଅନ୍ତରିକ୍ଷେ ବହୁଧା ଭବନ୍ତି ।
ଯା ଅଗ୍ନିଂ ଗର୍ଭଂ ଦଧିରେ ସୁବର୍ଣ୍ଣାସ୍ତା ନ ଆପଃ ଶଂ ସ୍ୟୋନା ଭବନ୍ତୁ ॥
ଶିବେନ ମା ଚକ୍ଷୁଷା ପଶ୍ୟତାପଃ ଶିବୟା ତନ୍ୱୋପସ୍ପୃଶତ ତ୍ୱଚଂ ମେ ।
ଧୃତଶ୍ଚୁତଃ ଶୁଚୟୋ ଯାଃ ପାବକାସ୍ତା ନ ଆପଃ ଶଂ ସ୍ୟୋନା ଭବନ୍ତୁ ॥
(ଅଥର୍ବ ୧.୩୩.୧/୪)

ଏହି ସୂକ୍ତରେ ମନ୍ତ୍ରସ୍ନାନ (ମୁଣ୍ଡରେ ପାଣି ଛିଞ୍ଚିବ) କରିବ ।

ଓଁମ୍ ଅରିପ୍ରା ଇତ୍ୟାଦି ମନ୍ତ୍ରସ୍ୟ, ସ୍ୱୟମ୍ଭୁର୍ବ୍ରହ୍ମାଋଷିଃ,
ଦୈବୀଗାୟତ୍ରୀଛନ୍ଦଃ, ଅଗ୍ନିର୍ଦେବତା,
ପ୍ରାତଃସନ୍ଧ୍ୟୋପାସନକର୍ମାରମ୍ଭେ ବିନିଯୋଗଃ ।

**ମଧ୍ୟାହ୍ନସନ୍ଧ୍ୟାରେ-**

ମଧ୍ୟାହ୍ନସନ୍ଧ୍ୟୋପାସନକର୍ମାରମ୍ଭେ ବିନିଯୋଗଃ ।

**ସାୟଂସନ୍ଧ୍ୟାରେ -**

ସାୟଂ ସନ୍ଧ୍ୟୋପାସନକର୍ମାରମ୍ଭେ ବିନିଯୋଗଃ ।

ଏହି ଋଷ୍ୟାଦି କରି -

ଓଁମ୍ ଅରିପ୍ରା ଆପୋ ଅପ ରିପ୍ରମସ୍ମଦ୍ ।
ପ୍ରାସ୍ମଦେନୋ ଦୁରିତଂ ସୁପ୍ରତୀକାଃ ପ୍ରଦୁଷ୍ୱପ୍ନ୍ୟଂ ପ୍ର ମଲଂ ବହନ୍ତୁ ॥
(ଅଥର୍ବ ୧୦.୫.୨୪)

ଓଁ ଅବରେଣୁମବରଜୋ ନେନିଜେ ହସ୍ତୀୟଂ ମଳମ୍ ।
ଧାତା ନୋ ଭଦ୍ରୟା ନେଷଦ୍ ସ ନ ଗୋପାୟତୁ ପ୍ରଜାମ୍ ॥
କୃଣେବଽହଂ ରୋଦସୀ ବର୍ମ ସ୍ୟାମି ସବିତୁଃ ସବେ ।
ମାତା ନୋ ଭଦ୍ରୟା ଭୂମିର୍ଦେ୍ୟୌଷ୍ଟାସ୍ମାନ୍ ପାତ୍ୱଂହସଃ ॥
ଯଦସୁରାଣାମହଂ ନ୍ୟସ୍ମାନ୍ ପାପା ଉପେଥନ ।
ଦେବାନାଂ ପୟସ୍ୟ ଦୈବ୍ୟମାପଃ ଶୁନ୍ଧନ୍ତୁ ମାମିମାଃ ॥

ଏହି ମନ୍ତ୍ରରେ ହସ୍ତ ପ୍ରକ୍ଷାଳନ କରିବ ।

ଓଁ ପୟସ୍ୱତୀରୋଷଧୟଃ ପୟସ୍ୱନ୍ମାମକଂ ପୟଃ ।
ଅପାଂ ପୟସୋ ଯତ୍ପୟସ୍ତେନ ମାମିନ୍ଦ୍ର ସଂସୃଜ ॥
ପୟଃ ପିବାମି ରସମୋଷଧୀନାଂ ଜାମାତରୋ ଜନୟତି ଗର୍ଭମ୍ ।
ତାଃ ପୀୟମାନା ଅମୃତେନ ସାର୍ଦ୍ଧଂ କୃଣ୍ୱନ୍ତୁ ମାମଧରେଷୁ ପ୍ରପୀତମ୍ ॥
(ଅଥର୍ବ ୧୮.୩.୫)

ଓଁ ପ୍ରିୟମେତି ଯଜ୍ଞୋପବୀତମନ୍ତ୍ରସ୍ୟ, ଗୌତମାଦ୍ୟାଃ ସପ୍ତ ଋଷୟଃ,
ତ୍ରିଷ୍ଟୁପ୍ ଛନ୍ଦଃ, ବ୍ରହ୍ମା-ବିଷ୍ଣୁ-ଶିବ-ପ୍ରଜାପତିଦେବତାଃ,
ଯଜ୍ଞୋପବୀତାଭିମନ୍ତ୍ରଣେ ବିନିଯୋଗଃ ।
ଓଁ ପ୍ରିୟଂ ମା କୃଣୁ ଦେବେଷୁ ପ୍ରିୟଂ ରାଜସୁ ମା କୃଣୁ ।
ପ୍ରିୟଂ ସର୍ବସ୍ୟ ପଶ୍ୟତ ଉତ ଶୂଦ୍ର ଉତାର୍ଯେ୍ୟ ॥
(ଅଥର୍ବ ୧୯.୬୨.୧)

**ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ପ୍ରଜାପତେର୍ଯଦ୍ ସହଜଂ ପୁରସ୍ତାଦ୍ ।**
**ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ ॥**
**ତନ୍ତେଽହଂ ତନ୍ତୁ ବଧ୍ନାମ୍ୟାୟୁଷେ ବର୍ଚ୍ଚସେ ଓଜସେ ।**
**ତେଜସେ ବର୍ଚ୍ଚସେ ବ୍ରହ୍ମବର୍ଚ୍ଚସାୟ ଚ ॥**

ଏହି ମନ୍ତ୍ରରେ ଯଜ୍ଞୋପବୀତର ଅଭିମନ୍ତ୍ରଣ କରିବ ।

**ଓଁ ଆପୋହିଷ୍ଠେତି ମନ୍ତ୍ରସ୍ୟ, ସିନ୍ଧୁଦ୍ୱୀପ ଋଷିଃ, ଗାୟତ୍ରୀଛନ୍ଦଃ, ଆପୋ ଦେବତା, ମାର୍ଜନେ ବିନିଯୋଗଃ ।**

'**ଓଁ ଆପୋହିଷ୍ଠା ମୟୋ ଭୁବଃ**' ଏହି ମନ୍ତ୍ରରେ ଆକାଶରେ,
'**ଓଁ ତା ନ ଊର୍ଜ୍ଜେ ଦଧାତନ**' ଏହି ମନ୍ତ୍ରରେ ଭୂମିରେ,
'**ଓଁ ମହେରଣାୟ ଚକ୍ଷସେ**' ଏହି ମନ୍ତ୍ରରେ ମୂର୍ଦ୍ଧାରେ,
'**ଓଁ ଯୋ ବଃ ଶିବତମୋ ରସଃ**' ଏହି ମନ୍ତ୍ରରେ ଭୂମିରେ,
'**ଓଁ ତସ୍ୟ ଭାଜୟତେ ହ ନଃ**' ଏହି ମନ୍ତ୍ରରେ ଆକାଶରେ,
'**ଓଁ ଉଶତୀରିବ ମାତରଃ**' ଏହି ମନ୍ତ୍ରରେ ମୂର୍ଦ୍ଧାରେ,
'**ଓଁ ତସ୍ମା ଅରଂ ଗମାମ ବଃ**' ଏହି ମନ୍ତ୍ରରେ ଆକାଶରେ,
'**ଓଁ ଯସ୍ୟ କ୍ଷୟାୟ ଜିନ୍ୱଥ**' ଏହି ମନ୍ତ୍ରରେ ଭୂମିରେ,
'**ଓଁ ଆପୋ ଜନୟଥା ଚ ନଃ**' ଏହି ମନ୍ତ୍ରରେ ମୂର୍ଦ୍ଧାରେ ମାର୍ଜନ କରିବ ।
'**ଓଁ ଇହ ବର୍ଚ୍ଚ ଇହ ପୟ ଇହ ଚକ୍ଷୁରୁପହ୍ୱୟେ । ଇହେନ୍ଦ୍ରିୟଂ ଦଧାତନ ।**'
ଏହି ମନ୍ତ୍ରରେ ଚକ୍ଷୁରେ ଜଳ ଲଗାଇବ ।

**ଓଁ ଯଦପ୍‌ସୁ ତେ ସରସ୍ୱତୀ ଗୋଷ୍ୱଶ୍ୱେଷୁ ଯନ୍ମଧୁ ।**
**ତେନ ନୋ ବାଜିନୀବତି ମୁଖମଙ୍‌ଧି ସରସ୍ୱତୀ ବର୍ଚ୍ଚସା ॥**

ଏହି ମନ୍ତ୍ରରେ ମୁଖମାର୍ଜନ କରିବ ।

**ଓଁ ଦ୍ରୁପଦାଦିବେତି ମନ୍ତ୍ରସ୍ୟ, ଦ୍ରୁପଦ ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ବରୁଣୋ ଦେବତା, ସୌତ୍ରାମଣ୍ୟବଭୃଥେ ବିନିଯୋଗଃ ।**

**ଓଁ ଦ୍ରୁପଦାଦିବ ମୁମୁଚାନଃ ସ୍ୱିନ୍ନଃ ସ୍ନାତ୍ୱା ମଳାଦିବ ।**
**ପୂତଂ ପବିତ୍ରେଣେବାଜ୍ୟଂ ବିଶ୍ୱେ ଶୁନ୍ଧନ୍ତୁ ମୈନସଃ ।।**
(ଅଥର୍ବ ୬.୧୧୫.୩)

ଏହି ମନ୍ତ୍ରରେ ପାଣି ତିନିଥର ଶୁଙ୍ଘି ଫିଙ୍ଗିବ ।

**ଓଁ ଜୀବାସ୍ଥ ଜୀବ୍ୟାସଂ ସର୍ବମାୟୁର୍ଜୀବ୍ୟାସମ୍ ।**
**ଉପଜୀବାସ୍ଥୋପଜୀବ୍ୟାସଂ ସର୍ବମାୟୁର୍ଜୀବ୍ୟାସମ୍ ।**
**ସଂଜୀବାସ୍ଥ ସଂଜୀବ୍ୟାସଂ ସର୍ବମାୟୁର୍ଜୀବ୍ୟାସମ୍ ।**
**ଜୀବାସ୍ଥ ଜୀବ୍ୟାସଂ ସର୍ବମାୟୁର୍ଜୀବ୍ୟାସମ୍ ।।**
(ଅଥର୍ବ ୧୯.୬୯.୧/୪)

ଏହି ମନ୍ତ୍ରରେ ତିନିଥର ଆଚମନ କରିବ ।

**ଓଁ ଇନ୍ଦ୍ର ଜୀବ ସୂର୍ଯ୍ୟ ଜୀବ ଦେବା ଜୀବା-ଜୀବ୍ୟାସମହମ୍ ।**
**ସର୍ବମାୟୁର୍ଜୀବ୍ୟାସମ୍ ।।** (ଅଥର୍ବ ୧୯.୭୦.୧)

ଏହ ମନ୍ତ୍ରରେ ହୃଦୟକୁ ଅଭିମନ୍ତ୍ରଣ କରିବ । ଏହାପରେ ନିମ୍ନଲିଖିତ ପ୍ରତ୍ୟେକ ମନ୍ତ୍ରରେ ଗୋଟିଏ ଲେଖାଏଁ ଜଳାଞ୍ଜଳି ଦେବ । ଯଥା -

୧. **ଓଁ ବସୁଭ୍ୟୋ ନମଃ ।**
୨. **ଓଁ ବ୍ରହ୍ମଣେ ନମଃ ।**
୩. **ଓଁ ବିଷ୍ଣବେ ନମଃ ।**
୪. **ଓଁ ପ୍ରଜାପତୟେ ନମଃ ।**
୫. **ଓଁ ବୈଶ୍ରବଣାୟ ନମଃ ।**
୬. **ଓଁ ସର୍ବେଭ୍ୟୋ ଦେବେଭ୍ୟୋ ନମଃ ।**

**ସୂର୍ଯ୍ୟାର୍ଘ୍ୟ** -ଓଁ ଅର୍ଘ୍ୟପ୍ରଦାନମନ୍ତ୍ରସ୍ୟ, ପ୍ରଜାପତି ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ,
ଶ୍ରୀ ସୂର୍ଯ୍ୟୋ ଦେବତା, ଅର୍ଘ୍ୟପ୍ରଦାନେ ବିନିଯୋଗଃ ।
ଓଁ ହରିଃ ସୁପର୍ଣ୍ଣୋ ଦିବମାରୁହୋଽର୍ଚ୍ଚିଷା
ଯେ ତ୍ୱା ଦିପ୍ସନ୍ତି ଦିବମୁତ୍ପତନ୍ତମ୍ ।।
ଅବ ତାଂ ଜହି ହରସା ଜାତବେଦୋଽବିଭ୍ୟଦୁଗ୍ରୋଽର୍ଚ୍ଚିଷା
ଦିବମାରୋହ ସୂର୍ଯ୍ୟ ।। (ଅଥର୍ବ ୧୯.୬୫.୧)
ଅୟୋଜାଲା ଅସୁରା ମାୟିନୋଽୟସ୍ମୟୈଃ
ପାଶୈରଙ୍କିନୋ ଯେ ଚରନ୍ତି । ତାଂସ୍ତେ ରନ୍ଧୟାମି
ହରସା ଜାତବେଦଃ ସହସ୍ରଋଷ୍ଟିଃ ସପତ୍ନାନ୍
ପ୍ରମୃଣନ୍ ପାହି ବଜ୍ରଃ ।। (ଅଥର୍ବ ୧୯.୬୬.୧)

ସୂର୍ଯ୍ୟଙ୍କ ଆଡକୁ ଚାହିଁ ପ୍ରାତଃସନ୍ଧ୍ୟାରେ ଏହି ମନ୍ତ୍ରରେ ଅର୍ଘ୍ୟ ଦେବ ।

**ମଧ୍ୟାହ୍ନସନ୍ଧ୍ୟାରେ ଅର୍ଘ୍ୟଦାନବିଧି -**

ଓଁ ଉଦୁତ୍ୟମିତି ମନ୍ତ୍ରସ୍ୟ, ପ୍ରସ୍କନ୍ଦ ଋଷିଃ, ଦୈବୀଗାୟତ୍ରୀଛନ୍ଦଃ,
ଶ୍ରୀସୂର୍ଯ୍ୟୋ ଦେବତା, ସୂର୍ଯ୍ୟାର୍ଘ୍ୟପ୍ରଦାନେ ବିନିଯୋଗଃ ।
ଓଁ ଉଦୁତ୍ୟଂ ଜାତବେଦସଂ ଦେବଂ ବହନ୍ତି କେତବଃ ।
ଦୃଶେ ବିଶ୍ୱାୟ ସୂର୍ଯ୍ୟମ୍ ।।
ପ୍ରାଣାପାନୌ ଜନୟନ୍ନ ବ୍ୟାନଂ ଚକ୍ଷୁଃ ଶ୍ରୋତ୍ରଂ ଜନୟନ୍
ବ୍ରହ୍ମମେଧାମ୍ । ବାଚଂ ଶ୍ରେଷ୍ଠାଂ ଯଶୋସ୍ମାସୁ ଧେହି ।
ଅନ୍ନଂ ରେତୋ ଲୋହିତମୁଦରଂ ତାନି କଳ୍ପମ୍ ।
ବ୍ରହ୍ମଚାରୀ ସଲିଳସ୍ୟ ପୃଷ୍ଠେ ତପୋ ତିଷ୍ଠନ୍ତ୍ୟପ୍ୟମାନଃ ସମୁଦ୍ରେ ।।

ଏହି ମନ୍ତ୍ରରେ ସୂର୍ଯ୍ୟଙ୍କୁ ଚାହିଁ ଊର୍ଦ୍ଧ୍ୱବାହୁପୂର୍ବକ ଓ କୃତାଞ୍ଜଳିପୂର୍ବକ ଗାୟତ୍ରୀଙ୍କୁ ଆବାହନ କରିବ ।

**ଗାୟତ୍ରୀଧ୍ୟାନ -**

**ଗାୟତ୍ରୀ ବାଳା ରକ୍ତା ରକ୍ତବର୍ଣ୍ଣା ରକ୍ତବସନା**
**ଅକ୍ଷସୂତ୍ରକମଣ୍ଡଳୁଧରା ହଂସବାହିନୀ ବ୍ରହ୍ମାଣୀ ବ୍ରହ୍ମଦୈବତ୍ୟା**
**ବ୍ରହ୍ମଲୋକନିବାସିନୀ ଦେବୀ ଅଗ୍ନିମୁଖୀ ବ୍ରହ୍ମଶିରାଃ ରୁଦ୍ରଶିଖା**
**ବିଷ୍ଣୁହୃଦୟା ତ୍ରୈଲୋକ୍ୟଚରଣା ଅନଳପ୍ରବରା ସାଂଖ୍ୟାୟନସଗୋତ୍ରା,**
**ବିନିଯୋଗୋପନୟନା ବଦରିକାଶ୍ରମବାସିନୀ ପୃଥିବୀକୁକ୍ଷିଃ**
**ଗାୟତ୍ରୀ ସୂର୍ଯ୍ୟମଣ୍ଡଳାଦାଗଚ୍ଛତୁ ॥**

ଏହି ଧ୍ୟାନ ପ୍ରାତଃସନ୍ଧ୍ୟାରେ ପାଠ କରିବ ।

**ଓଁ ସାବିତ୍ରୀ ଯୁବତୀ ବରରୂପା କୃଷ୍ଣା କୃଷ୍ଣାବର୍ଣ୍ଣା କୃଷ୍ଣବସନା ଶଙ୍ଖ-**
**ଚକ୍ରଗଦାପଦ୍ମଧାରିଣୀ ଗରୁଡାସନା ବୈଷ୍ଣବୀ ବିଷ୍ଣୁଦୈବତା**
**ବିଷ୍ଣୁଲୋକନିବାସିନୀ । ଦେବୀ ଅଗ୍ନିମୁଖୀ ବ୍ରହ୍ମଶିରାଃ ରୁଦ୍ରଶିଖା**
**ବିଷ୍ଣୁହୃଦୟା ତ୍ରୈଲୋକ୍ୟଚରଣା ଅନଳପ୍ରବରା ସାଂଖ୍ୟାୟନସଗୋତ୍ରା**
**ବିନିଯୋଗୋପନୟନା ବଦରିକାଶ୍ରମବାସିନୀ**
**ପୃଥିବୀକୁକ୍ଷିଃ ସାବିତ୍ରୀ ସୂର୍ଯ୍ୟମଣ୍ଡଳାଦାଗଚ୍ଛତୁ ॥**

ଏହି ଧ୍ୟାନ ମଧ୍ୟାହ୍ନସନ୍ଧ୍ୟାରେ ପାଠ କରିବ ।

**ଓଁ ସରସ୍ୱତୀ ବୃଦ୍ଧା ଶୁକ୍ଳା ଶୁକ୍ଳବର୍ଣ୍ଣା ଶୁକ୍ଳବସନା ବୃଷଭାରୂଢା**
**ତ୍ରିଲୋଚନା ଡମରୁତ୍ରିଶୂଳହସ୍ତା କୈଳାସନିଳୟା ରୁଦ୍ରାଣୀ ରୁଦ୍ର-**
**ଦୈବତା ରୁଦ୍ରଲୋକନିବାସିନୀ ଦେବୀ ଅଗ୍ନିମୁଖୀ ବ୍ରହ୍ମଶିରାଃ**
**ରୁଦ୍ରଶିଖା ବିଷ୍ଣୁହୃଦୟା ତ୍ରୈଲୋକ୍ୟଚରଣା ଅନଳପ୍ରବରା**

ସାଂଖ୍ୟାୟନସଗୋତ୍ରା ବିନିଯୋଗୋପନୟନା ବଦରିକାଶ୍ରମ-
ବାସିନୀ ପୃଥ୍ୱୀକୁକ୍ଷିଃ ସରସ୍ୱତୀ ସୂର୍ଯ୍ୟମଣ୍ଡଳାଦାଗଚ୍ଛତୁ ।

ଏହି ଧ୍ୟାନ ସାୟଂସନ୍ଧ୍ୟାରେ ପାଠ କରିବ ।

ଓଁ କାରସ୍ୟ, ବ୍ରହ୍ମାଋଷିଃ, ଦୈବୀଗାୟତ୍ରୀଛନ୍ଦଃ,
ଅଗ୍ନିର୍ଦେବତା, ସନ୍ଧ୍ୟାଜପେ ବିନିଯୋଗଃ ।
ଓଁ ତିସୃଣାଂ ବ୍ୟାହୃତୀନାଂ, ପ୍ରଜାପତିଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍-
ଛନ୍ଦାଂସି, ଅଗ୍ନିର୍ବାୟୁଃ ସୂର୍ଯ୍ୟୋ ଦେବତା, ସନ୍ଧ୍ୟାଜପେ ବିନିଯୋଗଃ ।
ଓଁ ଗାୟତ୍ର୍ୟାଃ, ବିଶ୍ୱାମିତ୍ର ଋଷିଃ, ଗାୟତ୍ରୀ ଛନ୍ଦଃ, ସବିତା ଦେବତା,
ଣୀଂ ବୀଜଂ, ୟଂ ଶକ୍ତିଃ, ନଃ ପ୍ରାଣାଃ, ତତଃ କୀଳକଂ, ଋତୁଃ ପାଦଃ,
ଅଗ୍ନିର୍ମୁଖଂ,-ସନ୍ଧ୍ୟାଜପେ ବିନିଯୋଗଃ ।

କରନ୍ୟାସ -ଓଁ ଭୂଃ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଭୁବଃ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ସ୍ୱଃ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ତତ୍ସବିତୁର୍ବରେଣ୍ୟମ୍ ଅନାମିକାଭ୍ୟାଂ ହୁମ୍ ।
ଓଁ ଭର୍ଗୋ ଦେବସ୍ୟ ଧୀମହି କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଅଙ୍ଗନ୍ୟାସ -ଓଁ ଭୂଃ ହୃଦୟାୟ ନମଃ ।
ଓଁ ଭୁବଃ ଶିରସେ ସ୍ୱାହା ।
ଓଁ ସ୍ୱଃ ଶିଖାୟୈ ବଷଟ୍ ।
ଓଁ ତତ୍ ସବିତୁର୍ବରେଣ୍ୟଂ କବଚାଭ୍ୟାଂ ହୁମ୍ ।
ଓଁ ଭର୍ଗୋ ଦେବସ୍ୟ ଧୀମହି ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାମ୍ ଅସ୍ତ୍ରାୟ ଫଟ୍ ।

ଧ୍ୟାନମ୍ - ଓଁ ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ-
ହାରୀହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ॥

ଗାୟତ୍ରୀମନ୍ତ୍ର -ଓଁ ଭୂର୍ଭୁବଃ ସ୍ୱସ୍ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ
ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ॥

ଏହି ମନ୍ତ୍ରକୁ ୧୦୮ ଥର ଅଥବା ଯଥାଶକ୍ତି ଜପ କରିବ ।

ଜପସମର୍ପଣ -

ଓଁ ଗୁହ୍ୟାତିଗୁହ୍ୟଗୋପ୍ତ୍ରୀ ତ୍ୱଂ ଗୃହାଣାସ୍ମତ୍କୃତଂ ଜପମ୍ ।
ସିଦ୍ଧିର୍ଭବତୁ ମେ ଦେବି ତ୍ୱତ୍ ପ୍ରସାଦାତ୍ ସୁରେଶ୍ୱରି ॥

ଏହି ମନ୍ତ୍ରରେ ଜପ ସମର୍ପଣ କରିବ ।

ବିସର୍ଜନମନ୍ତ୍ର -

ଓଁ ଉତ୍ତରେ ଶିଖରେ ଜାତେ ଭୂମ୍ୟାଂ ପର୍ବତବାସିନି ।
ବ୍ରହ୍ମଣା ସମନୁଜ୍ଞାତେ ଗଚ୍ଛ ଦେବି ଯଥେଚ୍ଛୟା ॥
ଓଁ ସ୍ତୁତା ମୟା ବରଦା ବେଦମାତା ।
ପ୍ରଚୋଦୟନ୍ତୀଂ ପାବମାନୀ ଦ୍ୱିଜାନାମ୍ ।
ଆୟୁଃ ପ୍ରଜାଂ ଦିବ୍ୟଂ ପଶୁଂ ଶ୍ରିୟଂ ଯଶସଂ ଦ୍ରବିଣଂ ବ୍ରହ୍ମବର୍ଚ୍ଚସମ୍ ।
ମହ୍ୟଂ ଦତ୍ତ୍ୱା ବ୍ରଜତ ବ୍ରହ୍ମଲୋକମ୍ ॥ (ଅଥର୍ବ ୧୯.୭୧.୧)

ଏହା ପ୍ରାତଃସନ୍ଧ୍ୟାରେ ପାଠ କରି ବିସର୍ଜନ କରିବ । ମଧ୍ୟାହ୍ନସନ୍ଧ୍ୟାରେ ବ୍ରହ୍ମଲୋକ ସ୍ଥାନରେ 'ବିଷ୍ଣୁଲୋକମ୍' ଓ ସାୟାହ୍ନ ସନ୍ଧ୍ୟାରେ 'ରୁଦ୍ରଲୋକମ୍' ପାଠ କରି ବିସର୍ଜନ କରିବ ।

ପ୍ରାତଃ ସୂର୍ଯ୍ୟୋପସ୍ଥାନ -

ଓଁ ଚିତ୍ରଂ ଦେବାନାମିତି ମନ୍ତ୍ରସ୍ୟ, କୌତ୍ସଋଷିଃ, ତ୍ରିଷ୍ଟୁପ୍ଛନ୍ଦଃ,
ଶ୍ରୀ ସୂର୍ଯ୍ୟୋ ଦେବତା, ଉପସ୍ଥାନେ ବିନିଯୋଗଃ ।
ଓଁ ଚିତ୍ରଂ ଦେବାନାଂ କେତୁରନୀକଂ
ଜ୍ୟୋତିଷ୍ମାନ୍ ପ୍ରଦିଶଃ ସୂର୍ଯ୍ୟ ଉଦ୍ୟନ୍ ।
ଦିବାକରୋଽତି ଦ୍ୟୁମ୍ନୈସ୍ତମାଂସି
ବିଶ୍ୱାତାରୀଦ୍ ଦୁରିତାନି ଶୁକ୍ରଃ ॥
ଓଁ ଚିତ୍ରଂ ଦେବାନାମୁଦଗାଦନୀକଂ
ଚକ୍ଷୁର୍ମିତ୍ରସ୍ୟ ବରୁଣସ୍ୟାଗ୍ନେଃ ।
ଆପ୍ରାଦ୍ ଦ୍ୟାବା ପୃଥିବୀ ଅନ୍ତରିକ୍ଷଂ
ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ ॥ (ଅଥର୍ବ ୧୩.୨.୩୪, ୩୫)
ଓଁ ପଶ୍ୟେମ ଶରଦଃ ଶତମ୍ ।
ଜୀବେମ ଶରଦଃ ଶତମ୍ ।
ବୁଧ୍ୟେମ ଶରଦଃ ଶତମ୍ ।
ରୋହେମ ଶରଦଃ ଶତମ୍ ।
ପୂଷେମ ଶରଦଃ ଶତମ୍ ।
ଭବେମ ଶରଦଃ ଶତମ୍ ।
ଭୂୟେମ ଶରଦଃ ଶତମ୍ ।
ଭୂୟସୀଃ ଶରଦଃ ଶତାତ୍ ॥ (ଅଥର୍ବ ୧୯.୬୭.୧/୮)

ଏହି ମନ୍ତ୍ରମାନ ଜପ କରିବ ।

ଓଁ ଉଦୀରାଣା ଉତାସୀନାସ୍ତିଷ୍ଠନ୍ତଃ ପ୍ରକ୍ରାମନ୍ତଃ ।
ପଦ୍‌ଭ୍ୟାଂ ଦକ୍ଷିଣସବ୍ୟାଭ୍ୟାଂ ମା ବ୍ୟଥିଷ୍ମହି ଭୂମ୍ୟାମ୍ ॥

ଏହି ମନ୍ତ୍ର ପାଠ କରି ଆସନରୁ ଉଠିବ । (ଅଥର୍ବ ୧୨.୧.୨୮)

**ମଧ୍ୟାହ୍ନସୂର୍ଯ୍ୟୋପସ୍ଥାନ -**

ଓଁ ଉଦ୍‌ବୟମିତି ମନ୍ତ୍ରସ୍ୟ । ବସୁକଣ୍ୱ ଋଷିଃ । ତ୍ରିଷ୍ଟୁପ୍ ଛନ୍ଦଃ ।
ଶ୍ରୀ ସୂର୍ଯ୍ୟୋ ଦେବତା । ଉପସ୍ଥାନେ ବିନିଯୋଗଃ ॥
ଓଁ ଉଦ୍‌ବୟଂ ତପସସ୍ପରି ରୋହନ୍ତୀଂ ନାକମୁତ୍ତମମ୍ ।
ଦେବଂ ଦେବତ୍ରା ସୂର୍ଯ୍ୟମଗନ୍ମ ଜ୍ୟୋତିରୁତ୍ତମମ୍ ॥
(ଅଥର୍ବ ୭.୫୩.୭)

ଆରୋକୋ ଭ୍ରାଜଃ ପଟରପତଙ୍ଗଃ ସ୍ୱନରୋ ଜ୍ୟୋତିଷ୍ମାନ୍ ବିଭାସଃ ।
ତେଽସ୍ମୈ ସର୍ବେ ଘୃତମାତପନ୍ତୁ ଯଂ ଦୁହାନା ଅନପୁସ୍‌ଫୁରନ୍ତଃ ॥

ମଧ୍ୟାହ୍ନସନ୍ଧ୍ୟାରେ ଏହି ମନ୍ତ୍ରମାନ ପଢି ସୂର୍ଯ୍ୟୋପସ୍ଥାନ କରିବ ।

**ସାୟାହ୍ନସୂର୍ଯ୍ୟୋପସ୍ଥାନ -**

ଓଁ ଉଦ୍‌ଘେଦଭିଶ୍ରୁତମିତି ମନ୍ତ୍ରସ୍ୟ, ପ୍ରସ୍କନ୍ଦ ଋଷିଃ, ଅନୁଷ୍ଟୁପ୍‌ଛନ୍ଦଃ,
ଶ୍ରୀ ସୂର୍ଯ୍ୟୋ ଦେବତା, ଉପସ୍ଥାନେ ବିନିଯୋଗଃ ।
ଓଁ ଉଦ୍‌ଘେଦଭି ଶ୍ରୁତାମଘଂ ବୃଷଭଂ ନର୍ଯାପସମ୍ ।
ଅସ୍ତାରମେଷି ସୂର୍ଯ୍ୟ ॥
ନବ ଯୋ ନବତିଂ ପୁରୋ ବିଭେଦ ବାହ୍ୱୋଜିସା ।
ଅହିଂ ଚ ବୃତ୍ରହାବଧୀତ୍ ॥
ସ ନ ଇନ୍ଦ୍ରଃ ଶିବଃ ସଖାଶ୍ୱାବଦ୍ ଗୋମଦ୍ ଯବମଦ୍ ।
ଉରୁଧାରେବ ଦୋହତେ ॥ (ଅଥର୍ବ ୨୦.୭.୧/୩)
ଯଦଦ୍ୟ କଚ୍ଚ ବୃତ୍ରହନ୍ନୁଦଗା ଅଭି ସୂର୍ଯ୍ୟ ।
ସର୍ବଂ ତଦିନ୍ଦ୍ର ତେ ବଶେ ॥
ଯଦ୍ ବା ପ୍ରବୃଦ୍ଧ ସତ୍‌ପତେ ନ ମରା ଇତି ମନ୍ୟସେ ।
ଉତୋ ତତ୍ ସତ୍ୟମିତ୍ ତବ ॥ (ଅଥର୍ବ ୨୦.୧୧୨.୧/୨)

ସାୟାହ୍ନସନ୍ଧ୍ୟାରେ ଏହି ମନ୍ତ୍ରମାନ ପଢି ସୂର୍ଯ୍ୟୋପସ୍ଥାନ କରିବ ।

**ଓଁ ସୂର୍ଯ୍ୟସ୍ୟାବୃତମିତି ମନ୍ତ୍ରସ୍ୟ, ପ୍ରଜାପତି ଋଷିଃ, ମୁକ୍ତଂ ଛନ୍ଦଃ, ପୃଥିବୀ ଦେବତା, ପରିଭ୍ରମଣେ ବିନିଯୋଗଃ ।**

**ଓଁ ସୂର୍ଯ୍ୟସ୍ୟାବୃତମନ୍ୱାବର୍ତ୍ତେ ଦକ୍ଷିଣାମନ୍ୱାବୃତ୍ତମ୍ ।**
**ସା ମେ ଦ୍ରବିଣଂ ଯଚ୍ଛତୁ ସା ମେ ବ୍ରାହ୍ମଣବର୍ଚ୍ଚସମ୍ ॥**
**ଦିଶୋ ଜ୍ୟୋତିଷ୍ମତୀରଭ୍ୟାବର୍ତ୍ତେ ।**
**ତା ମେ ଦ୍ରବିଣଂ ଯଚ୍ଛନ୍ତୁ ତା ମେ ବ୍ରାହ୍ମଣବର୍ଚ୍ଚସମ୍ ॥**
**ସପ୍ତଋଷୀନଭ୍ୟାବର୍ତ୍ତେ ।**
**ତେ ମେ ଦ୍ରବିଣଂ ଯଚ୍ଛନ୍ତୁ ତେ ମେ ବ୍ରାହ୍ମଣବର୍ଚ୍ଚସମ୍ ॥**
**ବ୍ରହ୍ମାଭ୍ୟାବର୍ତ୍ତେ ।**
**ତନ୍ମେ ଦ୍ରବିଣଂ ଯଚ୍ଛତୁ ତନ୍ମେ ବ୍ରାହ୍ମଣବର୍ଚ୍ଚସମ୍ ॥**
**ବ୍ରାହ୍ମଣାଂ ଅଭ୍ୟାବର୍ତ୍ତେ ।**
**ତେ ମେ ଦ୍ରବିଣଂ ଯଚ୍ଛନ୍ତୁ ତେ ମେ ବ୍ରାହ୍ମଣବର୍ଚ୍ଚସମ୍ ॥**

(ଅଥର୍ବ ୧୦.୫.୩୭/୪୧)

ଏହି ମନ୍ତ୍ର ପଢି ଦକ୍ଷିଣହସ୍ତର ବୃଦ୍ଧାଙ୍ଗୁଳିକୁ ଦକ୍ଷିଣସ୍କନ୍ଧରେ ଲଗାଇ ଭ୍ରମଣ କରିବ ।

**ଓଁ ଅସପତ୍ନଂ ପୁରସ୍ତାଦ୍ ପଶ୍ଚାନ୍ନୋ ଅଭୟଂ କୃତମ୍ ।**
**ସବିତା ମା ଦକ୍ଷିଣତ ଉତ୍ତରାନ୍ମା ଶଚୀପତିଃ ॥**
**ଦିବୋ ମାଦିତ୍ୟା ରକ୍ଷନ୍ତୁ ଭୂମ୍ୟା ରକ୍ଷନ୍ତ୍ୱଗ୍ନୟଃ ।**
**ଇନ୍ଦ୍ରାଗ୍ନୀ ରକ୍ଷତାଂ ମା ପୁରସ୍ତାଦଶ୍ୱିନାବଭିତଃ ଶର୍ମ ଯଚ୍ଛତାମ୍ ।**
**ତିରଶ୍ଚୀନଘ୍ନ୍ୟା ରକ୍ଷତୁ ଜାତବେଦା ଭୂତକୃତୋ ମେ ସର୍ବତଃ ସନ୍ତୁ ବର୍ମ ॥**

(ଅଥର୍ବ ୧୯.୧୬.୧/୨)

ଏହି ମନ୍ତ୍ରରେ ଦିଗ୍‌ବନ୍ଧନ କରିବ ।

**ଓଁ ଭୂମେର୍ମାତର୍ନିଧେହି ମା ଭଦ୍ରୟା ସୁପ୍ରତିଷ୍ଠିତମ୍ ।**
**ସଂବିଦାନା ଦିବା କବେ ଶ୍ରୟିଂ ମା ଧେହି ଭୂତ୍ୟାମ୍ ॥**
(ଅଥର୍ବ ୧୨.୧.୬୩)

ଏହି ମନ୍ତ୍ରରେ ମୃତ୍ତିକାକୁ ଅଭିମନ୍ତ୍ରଣ କରି ତିଳକ କରିବ ।

**ଓଁ ଯସ୍ମାଦିତି ମନ୍ତ୍ରସ୍ୟ, ବ୍ରହ୍ମା ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ,**
**ପରମାତ୍ମା ଦେବତା, ହୃଦୟାଭିମନ୍ତ୍ରଣେ ବିନିଯୋଗଃ ॥**
**ଓଁ ଯସ୍ମାଦ୍ କୋଶାଦୁଦଭରାମ ତସ୍ମିନ୍ନନ୍ତରବ ଦଧ୍ମ ଏନମ୍ ।**
**କୃତମିଷ୍ଟଂ ବ୍ରହ୍ମଣୋ ବୀର୍ଯ୍ୟେଣ ତେନ ମା ଦେବାସ୍ତପସା ବତେହ ॥**
(ଅଥର୍ବ ୧୯.୭୨.୧)

ଏହି ମନ୍ତ୍ରରେ ହୃଦୟ ଅଭିମନ୍ତ୍ରଣ କରିବ ।

## ସୂର୍ଯ୍ୟାର୍ଘ୍ୟବିଧି -

ସମ୍ମୁଖରେ ଅଷ୍ଟଦଳ ପଦ୍ମ ଲେଖି ତାମ୍ରପାତ୍ରରେ ରକ୍ତଚନ୍ଦନ, ରକ୍ତପୁଷ୍ପ ଓ ଅକ୍ଷତ ସହିତ ଜଳ ଧରି ଦୁଇ ଆଣ୍ଠୁତଳେ ପକାଇ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କରିବ ।

## ଅର୍ଘ୍ୟଦାନମନ୍ତ୍ର -

**ଓଁ ସୂଭୂରସି ରଶ୍ମିରସ୍ୟାୟୁର୍ଧାସ୍ୟାୟୁର୍ମୟି ଧେହି ।**
**ସୁଭୂରସି ରଶ୍ମିରସି ବର୍ଚ୍ଚୋଧାସି ବର୍ଚ୍ଚୋ ମୟି ଧେହି ।**
**ସୁଭୂରସି ରଶ୍ମିରସି ତେଜୋଧାସି ତେଜୋ ମୟି ଧେହି ।**
**ସୂର୍ଯ୍ୟୋ ମେ ବର୍ଚ୍ଚୋଧା ବର୍ଚ୍ଚୋ**
**ଦଧାତ୍ୱିନ୍ଦ୍ରିୟମସୀନ୍ଦ୍ରିୟଂ ମୟି ଧେହି ।**
**ବର୍ଚ୍ଚୋସି ବର୍ଚ୍ଚୋ ମୟି ଧେହି ।**

ଶକ୍ୱରୀସ୍ଥ ପଶବୋ ମୋପସ୍ଥେଷୁ ମିତ୍ରାବରୁଣୌ ମେ
ପ୍ରାଣାପାନାବଗ୍ନିର୍ମେ ଦକ୍ଷଂ ଦଧାତୁ ।
ଇଦମର୍ଘ୍ୟଂ ଶ୍ରୀ ସୂର୍ଯ୍ୟାୟ ନମଃ ।

ଉପସ୍ଥାନ - ଓଁ ଯଦ୍ରାଜାନଂ ଶକଧୂମଂ ନକ୍ଷତ୍ରାଣ୍ୟକୃଣ୍ୱତ ।
ଭଦ୍ରାହମସ୍ମୈ ପ୍ରାୟଚ୍ଛ ତତୋ ରାଷ୍ଟ୍ରମଜାୟତ ।
ଭଦ୍ରାହମସ୍ତୁ ନଃ ସାୟଂ ଭଦ୍ରାହ ପ୍ରାତରସ୍ତୁ ନଃ ।।
ଭଦ୍ରାହମସ୍ମଭ୍ୟଂ ତ୍ୱଂ ଶକଧୂମ ସଦା କୃଣୁ ।
ଯୋ ନୋ ଭଦ୍ରାହମକରଃ ସାୟଂ ନକ୍ତମଥୋ ଦିବା ।
ତସ୍ମୈ ତେ ନକ୍ଷତ୍ରରାଜ ଶକଧୂମ ସଦା ନମଃ ।।
ଯଦାହୁ ଶକଧୂମାହଂ ନକ୍ଷତ୍ରାଣାଂ ପ୍ରଥମଜଂ ଜ୍ୟୋତିରଗ୍ରେ ।
ତନ୍ନଶନିଂ ମଧୁମତୀଂ କୃଣୋତୁ ଭୟଂ ଚ ନଃ ସର୍ବବୀରଂ ନିଁୟଚ୍ଛତ୍ ।।
(ଅଥର୍ବ ୬-୧୨୮-୧/୪)

ଏହି ମନ୍ତ୍ରରେ ସୂର୍ଯ୍ୟଙ୍କୁ ଉପସ୍ଥାନ କରିବ ।

ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ
ଜଗତ୍ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ
ବିରଞ୍ଚିନାରାୟଣଶଙ୍କରାତ୍ମନେ ।।
ଯସ୍ୟୋଦୟେନେହ ଜଗତ୍ ପ୍ରବୁଧ୍ୟତେ
ପ୍ରବର୍ତ୍ତତେ ଚାଖିଳକର୍ମସିଦ୍ଧୟେ ।
ବ୍ରହ୍ମେନ୍ଦ୍ରନାରାୟଣରୁଦ୍ରବନ୍ଦିତଃ
ସ ନଃ ସଦା ଯଚ୍ଛତୁ ମଙ୍ଗଳଂ ରବିଃ ।।

ଏହି ମନ୍ତ୍ରମାନ ପଢି ସୂର୍ଯ୍ୟଙ୍କୁ ନମସ୍କାର କରିବ ।। ଇତି ।।

ଆଥର୍ବଣୀୟସନ୍ଧ୍ୟା ସମାପ୍ତା ।

# ଯଜ୍ଞୋପବୀତାଭିମନ୍ତ୍ରଣବିଧିଃ

## (ଋଗ୍‌ବେଦୀୟ ଓ ଯଜୁର୍ବେଦୀୟ)

ଜୀବତ୍‌ପିତୃକ ବ୍ୟକ୍ତି ଦୁଇପଟ ଓ ପିତୃରହିତ ବ୍ୟକ୍ତି ତିନିପଟ ଯଜ୍ଞୋପବୀତ ଧାରଣ କରିବେ । ଉପନୟନକାଳରେ ବ୍ରହ୍ମଚାରୀ ଏକପଟ ଓ ଦଶାହ ତିଳୋଦକଦାନ ସମୟରେ ତିଳୋଦକ ଦାତାମାନେ ଏକପଟ ଯଜ୍ଞୋପବୀତ ଧାରଣ କରିବେ ।

ଯଜ୍ଞୋପବୀତ ଧାରଣ କରିବା ବ୍ୟକ୍ତି ସ୍ନାନ କରି ପୂର୍ବାଭିମୁଖ ହୋଇ ବସି ପଇତା ଦୁଇପଟରେ ବ୍ରହ୍ମଗ୍ରନ୍ଥି ପକାଇ ଦ୍ୱିରାଚମନ(ଛଅଥର) କରି ତଦନନ୍ତର ନିମ୍ନ ମନ୍ତ୍ର ପାଠ କରି ପଇତାକୁ ଧୋଇବେ ।

**ଓଁ ଆପୋହିଷ୍ଠା ମୟୋଭୁବସ୍ତା ନ ଊର୍ଜେ ଦଧାତନ ।**
**ମହେରଣାୟ ଚକ୍ଷସେ ।**
**ଯୋ ବଃ ଶିବତମୋ ରସସ୍ତସ୍ୟ ଭାଜୟତେ ହ ନଃ ।**
**ଉଶତୀରିବ ମାତରଃ ।**
**ତସ୍ମା ଅରଂ ଗମାମ ବୋ ଯସ୍ୟ କ୍ଷୟାୟ ଜିନ୍ୱଥ ।**
**ଆପୋ ଜନୟଥା ଚ ନଃ ॥**

ଏହାପରେ ପଇତାକୁ ଦୁଇହାତର ବୁଢା ଆଙ୍ଗୁଳିରେ ଧରି ଋଷ୍ୟାଦି ଓ କରାଙ୍ଗନ୍ୟାସ କରିବ ।

**ଋଷ୍ୟାଦିନ୍ୟାସ -**

**ଓଁ ଯଜ୍ଞୋପବୀତମନ୍ତ୍ରସ୍ୟ । ଗୌତମାତ୍ରିଭରଦ୍ୱାଜଋଷୟଃ ।**
**(ଅଥବା ଗୌତମଭାରଦ୍ୱାଜବିଶ୍ୱାମିତ୍ରଜମଦଗ୍ନୟଃ ଋଷୟଃ) ।**

ଋଗ୍‌ଯଜୁଃସାମାନି ଛନ୍ଦାଂସି । ବ୍ରହ୍ମାବିଷ୍ଣୁମହେଶ୍ୱରାଃ ଦେବତାଃ । ରକ୍ତଶ୍ୱେତପୀତାନି ବୀଜମ୍ । ଗାୟତ୍ରୀ-ସାବିତ୍ରୀ-ସରସ୍ୱତ୍ୟଃ ଶକ୍ତୟଃ । ଅକାର-ଉକାର-ମକାରାଃ କୀଲକମ୍ । ଅମୁକସଗୋତ୍ରସ୍ୟ ଅମୁକ-ଶର୍ମଣୋ ମମ ଶ୍ରୌତ-ସ୍ମାର୍ତ୍ତନିତ୍ୟନୈମିତ୍ତିକକାମ୍ୟକର୍ମସାଧନାର୍ଥଂ ଯଜ୍ଞୋପବୀତାଭିମନ୍ତ୍ରଣେ ବିନିଯୋଗଃ ।

କରନ୍ୟାସଃ - ଓଁ ଯଜ୍ଞୋପବୀତମ୍ ଅଙ୍ଗୁଷ୍ଠାଭ୍ୟାଂ ନମଃ ।

ଓଁ ପରମଂ ପବିତ୍ରଂ ତର୍ଜନୀଭ୍ୟାଂ ସ୍ୱାହା ।

ଓଁ ବୃହସ୍ପତେର୍ଯତ୍ ସହଜଂ ପୁରସ୍ତାତ୍ ମଧ୍ୟମାଭ୍ୟାଂ ବଷଟ୍ ।

ଓଁ ଆୟୁଷ୍ୟମଗ୍ର୍ୟମ୍ ଅନାମିକାଭ୍ୟାଂ ହୁମ୍ ।

ଓଁ ପ୍ରତିମୁଞ୍ଚ ଶୁଭ୍ରଂ କନିଷ୍ଠାଭ୍ୟାଂ ବୌଷଟ୍ ।

ଓଁ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସ - ଓଁ ଯଜ୍ଞୋପବୀତଂ ହୃଦୟାୟ ନମଃ ।

ଓଁ ପରମଂ ପବିତ୍ରଂ ଶିରସେ ସ୍ୱାହା ।

ଓଁ ବୃହସ୍ପତେର୍ଯତ୍ ସହଜଂ ପୁରସ୍ତାତ୍ ଶିଖାୟୈ ବଷଟ୍ ।

ଓଁ ଆୟୁଷ୍ୟମଗ୍ର୍ୟଂ କବଚାଭ୍ୟାଂ ହୁମ୍ ।

ଓଁ ପ୍ରତିମୁଞ୍ଚ ଶୁଭ୍ରଂ ନେତ୍ରାଭ୍ୟାଂ ବୌଷଟ୍ ।

ଓଁ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ
କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଯଜ୍ଞୋପବୀତମନ୍ତ୍ର -

ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ବୃହସ୍ପତେର୍ଯତ୍ ସହଜଂ ପୁରସ୍ତାତ୍ ।
ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ ॥

ମନ୍ତ୍ରାର୍ଥ - ବୃହସ୍ପତିଙ୍କ ସହିତ ପୂର୍ବରୁ ଉତ୍ପନ୍ନ ହୋଇଥିବା ଏହି ଯଜ୍ଞୋପବୀତ ଅତ୍ୟନ୍ତ ପବିତ୍ର ଅଟେ । ଏହି ଯଜ୍ଞୋପବୀତ ଆୟୁର୍ବର୍ଦ୍ଧକ, ଶ୍ରେଷ୍ଠତା ପ୍ରତିପାଦକ ଓ ନିର୍ମଳ ଅଟେ । ତେଣୁ ଯଜ୍ଞୋପବୀତ ଧାରଣ କରିଥିବା ବ୍ୟକ୍ତିକୁ ଏହା ବଳ ଓ ତେଜଃ ପ୍ରଦାନ କରୁ ।

ଏହି ମନ୍ତ୍ରକୁ ତିନିବାର ପାଠ କରି ଯଜ୍ଞୋପବୀତର ଅଭିମନ୍ତ୍ରଣ କରିବେ । ଏହାପରେ ଋଷ୍ୟାଦି ଓ କରାଙ୍ଗନ୍ୟାସ ପୂର୍ବକ ଗାୟତ୍ରୀମନ୍ତ୍ରରେ ତିନିବାର ଅଭିମନ୍ତ୍ରଣ କରିବ ।

**ଋଷ୍ୟାଦିନ୍ୟାସଃ -**

**ଓଁ ଅସ୍ୟ ଶ୍ରୀଗାୟତ୍ରୀମନ୍ତ୍ରସ୍ୟ, ବିଶ୍ୱାମିତ୍ରଋଷିଃ, ଗାୟତ୍ରୀ ଛନ୍ଦଃ, ସବିତା ଦେବତା, ଗାୟତ୍ରୀଜପକର୍ମଣି ବିନିଯୋଗଃ ।**

**କରନ୍ୟାସଃ -ଓଁ ଭୂଃ ଅଙ୍ଗୁଷ୍ଠାଭ୍ୟାଂ ନମଃ ।**
**ଓଁ ଭୁବଃ ତର୍ଜନୀଭ୍ୟାଂ ସ୍ୱାହା ।**
**ଓଁ ସ୍ୱଃ ମଧ୍ୟମାଭ୍ୟାଂ ବଷଟ୍ ।**
**ଓଁ ତତ୍ ସବିତୁର୍ବରେଣ୍ୟମ୍ ଅନାମିକାଭ୍ୟାଂ ହୁମ୍ ।**
**ଓଁ ଭର୍ଗୋ ଦେବସ୍ୟ ଧୀମହି କନିଷ୍ଠାଭ୍ୟାଂ ବୌଷଟ୍ ।**
**ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ।**

**ଅଙ୍ଗନ୍ୟାସଃ -ଓଁ ଭୂଃ ହୃଦୟାୟ ନମଃ ।**
**ଓଁ ଭୁବଃ ଶିରସେ ସ୍ୱାହା ।**
**ଓଁ ସ୍ୱଃ ଶିଖାୟୈ ବଷଟ୍ ।**
**ଓଁ ତତ୍ସବିତୁର୍ବରେଣ୍ୟମ୍ କବଚାଭ୍ୟାଂ ହୁମ୍ ।**
**ଓଁ ଭର୍ଗୋ ଦେବସ୍ୟ ଧୀମହି ନେତ୍ରାଭ୍ୟାଂ ବୌଷଟ୍ ।**
**ଓଁ ଧିୟୋ ଯୋ ନଃ ପ୍ରଚୋଦୟାତ୍ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।**

ଧ୍ୟାନମ୍ - ଧ୍ୟେୟଃ ସଦା ସବିତୃମଣ୍ଡଳମଧ୍ୟବର୍ତ୍ତୀ
ନାରାୟଣଃ ସରସିଜାସନସନ୍ନିବିଷ୍ଟଃ ।
କେୟୂରବାନ୍ ମକରକୁଣ୍ଡଳବାନ୍ କିରୀଟୀ -
ହାରୀହିରଣ୍ମୟବପୁର୍ଧୃତଶଙ୍ଖଚକ୍ରଃ ।।

ଗାୟତ୍ରୀମନ୍ତ୍ରଃ -

ଓଁ ଭୂର୍ଭୁବଃ ସ୍ୱସ୍ତତ୍ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ
ଧୀମହି । ଧିୟୋ ଯୋ ନଃ ପ୍ରଚୋଦୟାତ୍ ଓଁ ।

ତାପରେ 'ଯେନ ଧାତା' ମନ୍ତ୍ରରେ ଯଜ୍ଞୋପବୀତକୁ ତିନିବାର ଅଭିମନ୍ତ୍ରଣ କରିବ ।

ଋଷ୍ୟାଦିନ୍ୟାସଃ -

ଓଁ ଯେନ ଧାତା ଇତ୍ୟସ୍ୟ ମନ୍ତ୍ରସ୍ୟ । ବୃହସ୍ପତିଋଷି । ଅନୁଷ୍ଟୁପ୍ଛନ୍ଦଃ ।
ଇନ୍ଦ୍ରୋ ଦେବତା । ଯଜ୍ଞୋପବୀତାଭିମନ୍ତ୍ରଣେ ବିନିଯୋଗଃ ।।

କରନ୍ୟାସଃ -ଓଁ ଯେନ ଧାତା ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ବୃହସ୍ପତେରିନ୍ଦ୍ରସ୍ୟ ତର୍ଜନୀଭ୍ୟାଂ ସ୍ୱାହା ।
ତ୍ର୍ୟାୟୁଷେ ବପତ୍ ମଧ୍ୟମାଭ୍ୟାଂ ବଷଟ୍ ।
ତେନ ତେ ବପାମି ବ୍ରହ୍ମଣା ଅନାମିକାଭ୍ୟାଂ ହୁମ୍ ।
ଜୀବାତବେ କନିଷ୍ଠାଭ୍ୟାଂ ବୌଷଟ୍ ।
ଜୀବନାୟ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସଃ -ଓଁ ଯେନ ଧାତା ହୃଦୟାୟ ନମଃ ।
ବୃହସ୍ପତେରିନ୍ଦ୍ରସ୍ୟ ଶିରସେ ସ୍ୱାହା ।

ତ୍ର୍ୟାୟୁଷେ ବପତ୍ ଶିଖାୟୈ ବଷଟ୍ ।
ତେନ ତେ ବପାମି ବ୍ରହ୍ମଣା କବଚାଭ୍ୟାଂ ହୁମ୍ ।
ଜୀବାତବେ ନେତ୍ରାଭ୍ୟାଂ ବୌଷଟ୍ ।
ଜୀବନାୟ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

**ମନ୍ତ୍ରଃ -ଓଁ ଯେନ ଧାତା ବୃହସ୍ପତେରିନ୍ଦ୍ରସ୍ୟ ତ୍ର୍ୟାୟୁଷେ ବପତ୍ ।**
**ତେନ ତେ ବପାମି ବ୍ରହ୍ମଣା ଜୀବାତବେ ଜୀବନାୟ ଓଁ ।।**

ଏହା ପରେ ନିମ୍ନ ମନ୍ତ୍ର ପାଠ କରିବ ।

**ଓଁ ଯସ୍ତେ ପ୍ରାଣାଃ ପଶୁଷୁ ପ୍ରବିଷ୍ଟା ଦେବାନାଂ ବିଷ୍ଠା ମୁନୟୋ ବିତସ୍ତେ ।**
**ଆମ୍ନ୍ବାନ୍ ସୋମ ଘୃତବାନ୍ ହି ସ୍ୱର୍ଗଚ୍ଛାଗ୍ନିର୍ଯଜମାନାୟ ବିନ୍ଦ ।।**

ଏହାପରେ ନିମ୍ନ ମନ୍ତ୍ର ପଢ଼ି ପଇତାଗଣ୍ଠିରେ ହଳଦୀ ଲଗାଇବ ।

**ଓଁ କଶ୍ୟପସ୍ୟ ତ୍ର୍ୟାୟୁଷଂ, ଜମଦଗ୍ନେସ୍ତ୍ର୍ୟାୟୁଷଂ,**
**ଯଦ୍ଦେବାନାଂ ତ୍ର୍ୟାୟୁଷଂ, ତନ୍ନେ ଅସ୍ତୁ ତ୍ର୍ୟାୟୁଷମ୍ ଓଁ ।।**

ଏହାପରେ ଦେବତା ସ୍ମରଣ କରି ଯଜ୍ଞୋପବୀତ ଧାରଣ କରିବେ ।

**ଦେବତାସ୍ମରଣମନ୍ତ୍ର ଯଥା-**

**ଓଁକାରଃ ପ୍ରଥମସ୍ତନ୍ତୁ ଦ୍ୱିତୀୟୋଽଗ୍ନିସ୍ତଥୈବ ଚ ।**
**ତୃତୀୟୋ ନାଗଦୈବତ୍ୟଶ୍ଚତୁର୍ଥଃ ସୋମଦୈବତଃ ।।**
**ପଞ୍ଚମଃ  ପିତୃଦୈବତ୍ୟଃ ଷଷ୍ଠଶ୍ଚୈବ ପ୍ରଜାପତିଃ ।**
**ସପ୍ତମୋ ବାୟୁଦେବତ୍ୟଶ୍ଚାଷ୍ଟମଃ ସୂର୍ଯ୍ୟଦୈବତଃ ।।**
**ବିଶ୍ୱେଦେବାସ୍ତୁ ନବମେ ବିନ୍ୟସେନ୍ନବସୂତ୍ରକେ ।।**

ଉତ୍ତରୀୟଭାବରେ ଆଉ ପଟେ ପଇତା ଧାରଣ କରିବା ବ୍ୟକ୍ତି ପୂର୍ବୋକ୍ତ ପ୍ରକାରେ ବ୍ରହ୍ମଗ୍ରନ୍ଥି ପକାଇ ଯଜ୍ଞୋପବୀତ ଧାରଣ କରିବା ସମୟରେ

ଦକ୍ଷିଣ କର୍ଣ୍ଣରେ ଲମ୍ବାଇ ରଖିଥିବେ । ଯଜ୍ଞୋପବୀତ ଧାରଣ କରିବା ପରେ ତାହା ନିମ୍ନ ମନ୍ତ୍ର ତିନିଥର ପାଠ କରି ଧାରଣ କରିବେ ।

**ଓଁ ଯଶସା ମା ଦ୍ୟାବେତି ମନ୍ତ୍ରସ୍ୟ । ପରଂବ୍ରହ୍ମଋଷିଃ ।**
**ଅନୁଷ୍ଟୁପ୍ ଛନ୍ଦଃ । ବୃହସ୍ପତିର୍ଦେବତା ।**
**ଉତ୍ତରୀୟଯଜ୍ଞୋପବୀତାଭିମନ୍ତ୍ରଣେ ବିନିଯୋଗଃ ।**
**ଓଁ ଯଶସା ମା ଦ୍ୟାବା ପୃଥିବୀ ଯଶସେନ୍ଦ୍ରାବୃହସ୍ପତୀ ।**
**ଯଶୋ ଭଗଶ୍ଚ ମା ବିଶଦ୍ ଯଶୋ ମା ପ୍ରତିପଦ୍ୟତାମ୍ ଓଁ ।।**

ଏହି ମନ୍ତ୍ର ପାଠ କରି ସାରି ପୁନର୍ବାର ଗାୟତ୍ରୀମନ୍ତ୍ର ତିନିବାର ପାଠ କରିବେ । ତାପରେ ପୁରାତନ ଯଜ୍ଞୋପବୀତକୁ ଦେହରୁ କାଢ଼ି ଭୂମିରେ ସ୍ଥାପନ କରି ନିମ୍ନ ମନ୍ତ୍ର ପାଠ କରି ତା ଉପରେ ଜଳଚଳୁକ ପ୍ରଦାନ କରିବ । ମନ୍ତ୍ର ଯଥା-

**ଓଁ ପବିତ୍ରବନ୍ତମିତ୍ୟସ୍ୟ ମନ୍ତ୍ରସ୍ୟ ।**
**ନାରଦାଦ୍ୟାଃ ସପ୍ତ ଋଷୟଃ । ଷୋଡଶୀ ତ୍ରିଷ୍ଟୁପ୍ ଛନ୍ଦଃ ।**
**ପରମାତ୍ମା ଦେବତା ।**
**ମମ ଜୀର୍ଣ୍ଣଯଜ୍ଞୋପବୀତବିସର୍ଜନେ ବିନିଯୋଗଃ ।।**

**ମନ୍ତ୍ର -**

**ଓଁ ଯଜ୍ଞୋପବୀତଂ ଯଦି ଜୀର୍ଣ୍ଣବନ୍ତଂ ବେଦାନ୍ତବେଦ୍ୟଂ ପୁରୁଷଂ ପ୍ରଧାନଂ ।**
**ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଜୀର୍ଣ୍ଣୋପବୀତଂ ତୁ ବିସର୍ଜନୀୟମ୍ ଓଁ ।।**

ଏହାପରେ ଓଁ ବିଷ୍ଣୁଃ, ଓଁ ବିଷ୍ଣୁଃ, ଓଁ ବିଷ୍ଣୁଃ କହି ଦ୍ୱିରାଚମନ କରିବ । ଏହାପରେ ସୂର୍ଯ୍ୟାର୍ଘ୍ୟ ଦେଇ ସୂର୍ଯ୍ୟ ନମସ୍କାର କରିବ । ସୂର୍ଯ୍ୟାର୍ଘ୍ୟମନ୍ତ୍ର ଯଥା -

**ଓଁ ଏହି ସୂର୍ଯ୍ୟ ସହସ୍ରାଂଶୋ ତେଜୋରାଶେ ଜଗତ୍ପତେ ।**
**ଅନୁକମ୍ପୟ ମାଂ ଭକ୍ତ୍ୟା ଗୃହାଣାର୍ଘ୍ୟଂ ନମୋଽସ୍ତୁ ତେ ॥**

**ସୂର୍ଯ୍ୟନମସ୍କାରମନ୍ତ୍ର -**

**ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ,**
**ଜଗତ୍ ପ୍ରସୂତିସ୍ଥିତିନାଶହେତବେ ।**
**ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ**
**ବିରଞ୍ଚିନାରାୟଣଶଙ୍କରାତ୍ମନେ ॥**

ଏହାପରେ ସନ୍ଧ୍ୟାକର୍ମ ଅନୁଷ୍ଠାନ କରିବେ ।

## ସାମବେଦୀୟ ଯଜ୍ଞୋପବୀତାଭିମନ୍ତ୍ରଣବିଧିଃ

ସାମବେଦୀୟ ସନ୍ଧ୍ୟାରୁ ପ୍ରାଣାୟାମ ପର୍ଯ୍ୟନ୍ତ ଶେଷ କରିବ । ତା ପରେ-

**ଓଁ କଶ୍ୟପସ୍ୟ ତ୍ର୍ୟାୟୁଷଂ ଜମଦଗ୍ନେସ୍ତ୍ର୍ୟାୟୁଷମ୍ ।**
**ଯଦ୍ଦେବାନାଂ ତ୍ର୍ୟାୟୁଷଂ ତନ୍ନୋ ଅସ୍ତୁ ତ୍ର୍ୟାୟୁଷମ୍ ॥**

ଏହି ମନ୍ତ୍ର ପଢି ନୂତନ ଯଜ୍ଞୋପବୀତରେ ହଳଦୀ ଲଗାଇବ । ତା ପରେ-

**ଓଁ ଯଜ୍ଞୋପବୀତମନ୍ତ୍ରସ୍ୟ,**
**ପରଂବ୍ରହ୍ମଋଷିଃ, ଗାୟତ୍ର୍ୟୁଷ୍ଣିଗନୁଷ୍ଟୁବ୍ଛନ୍ଦାଂସି,**
**ବ୍ରହ୍ମାବିଷ୍ଣୁମହେଶ୍ୱରାଃ ଦେବତାଃ, ରକ୍ତପୀତଶ୍ୱେତାନି ବୀଜମ୍,**
**ଋଗ୍ୟଜୁଃସାମବେଦାସ୍ତତ୍ତ୍ୱମ୍,**
**ଗାର୍ହପତ୍ୟାହବନୀୟଦକ୍ଷିଣାଗ୍ନୟଃ ସ୍ଥାନମ୍ ।**
**ଶ୍ରୌତସ୍ମାର୍ତ୍ତନିତ୍ୟନୈମିତ୍ତିକକାମ୍ୟଫଳସିଦ୍ଧ୍ୟର୍ଥଂ**
**ଯଜ୍ଞୋପବୀତଧାରଣେ ବିନିଯୋଗଃ ।**

ଏହାପରେ ଋଷ୍ୟାଦି କରିବ । ତା' ପରେ - ଓଁ ଯଜ୍ଞମସି ଯଜ୍ଞମସି ଯଜ୍ଞସ୍ୟ ତ୍ୱୋପବୀତେନୋପନହ୍ୟାମି' ଏହି ମନ୍ତ୍ର ତିନି ଥର ପଢି ପଇତାକୁ ଅଭିମନ୍ତ୍ରିତ କରିବ । ତା ପରେ ପଇତାକୁ ପିନ୍ଧି ଯଥାଶକ୍ତି ଗାୟତ୍ରୀମନ୍ତ୍ର ଜପ କରିବ । ତା ପରେ-

**ଓଁ ଯେନ ଧାତା ବୃହସ୍ପତେରିନ୍ଦ୍ରସ୍ୟ ତ୍ର୍ୟାୟୁଷେ ବପତ୍ ।**
**ତେନ ତେ ବପାମି ବ୍ରହ୍ମଣା ଜୀବାତବେ ଜୀବନାୟ ॥**
**ଦୀର୍ଘାୟୁଷ୍ଟ୍ୱାୟ ବଳାୟ ବର୍ଚ୍ଚସେ ॥**

ଏହି ମନ୍ତ୍ର ପଢ଼ି ପୁରାତନ ଯଜ୍ଞୋପବୀତ ବିସର୍ଜନ କରିବ । ତା ପରେ -

**'ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ...'**

ଇତ୍ୟାଦି ମନ୍ତ୍ର ପଢ଼ି ସୂର୍ଯ୍ୟ ନମସ୍କାର କରିବ ॥ ଇତି ॥

# ଚଳୁବିଧାନମ୍

## (ଋଗ୍‌ବେଦୀୟ ଓ ଯଜୁର୍ବେଦୀୟ)

ଆସନରେ ବସି ସମ୍ମୁଖରେ ଥିବା ଅନ୍ନପାତ୍ରର ଡାହାଣପଟ ଭୂମିରେ 'ଓଁ ବ୍ରହ୍ମଣେ ନମଃ' ବୋଲି ପାଣି ସିଞ୍ଚିବ । ତା ପରେ 'ଓଁ ଧର୍ମରାଜାୟ ନମଃ, ଓଁ ଚିତ୍ରଗୁପ୍ତାୟ ନମଃ' ବୋଲି କହି ପାଣି ଛିଞ୍ଚାଯାଇଥିବା ସ୍ଥାନରେ ତଳ ଆଡୁ ଉପରକୁ ଦୁଇଜାଗାରେ ବରକୋଳି ବା ଅଁଳାକୋଳି ପରିମିତ ଘୃତ ବା ବ୍ୟଞ୍ଜନ ମିଶ୍ରିତ ଅନ୍ନ ରଖିବ । ତଦନନ୍ତର ଜଳଚଳୁକ ପାତ୍ର ଧରି 'ଓଁ ଧର୍ମରାଜାୟ ସ୍ୱାହା, ଓଁ ଚିତ୍ରଗୁପ୍ତାୟ ସ୍ୱାହା' ଏହା ପାଠ କରି ପୂର୍ବ କ୍ରମରେ ଅନ୍ନ ଉପରେ ଜଳ ପକାଇବ । ତା ପରେ ଜଳ ଚଳୁଏ ଧରି 'ଓଁ ଅମୃତୋପସ୍ତରଣମସି ସ୍ୱାହା' କହି ଆଚମନ କରିବ ।

ତାପରେ 'ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା' କହି ପ୍ରାଣାଦି ମୁଦ୍ରାରେ ପାଞ୍ଚଥର ଅନ୍ନ ଗ୍ରହଣ କରିବ । ଭୋଜନ ସମାପ୍ତ ପରେ 'ଓଁ ଅମୃତାପିଧାନମସି ସ୍ୱାହା' କହି ଜଳ ଚଳୁଏ ପାନ କରିବ ।

## (ସାମବେଦୀୟ)

ପ୍ରଥମେ 'ଓଁ ବ୍ରହ୍ମଣେ ନମଃ' ବୋଲି ସମ୍ମୁଖରେ ଥିବା ଅନ୍ନପାତ୍ରର ଡାହାଣ ପଟ ଭୂମିରେ ପାଣି ସିଞ୍ଚିବ । ତା ପରେ 'ଓଁ ଭୂପତୟେ ନମଃ, ଓଁ ଭୁବନପତୟେ ନମଃ, ଓଁ ଭୂତାନାଂ ଚ ପତୟେ ନମଃ' ଏହା ଉଚ୍ଚାରଣ କରି ତଳଆଡୁ ଉପରକୁ ବରକୋଳି ବା ଅଁଳାଫଳ ପରିମାଣ ଅନ୍ନ ତିନୋଟି ଜାଗାରେ ରଖିବ । ତା ପରେ ଜଳଚଳୁକ ଧରି 'ଓଁ ଭୂପତୟେ ସ୍ୱାହା, ଓଁ ଭୁବନପତୟେ ସ୍ୱାହା, ଓଁ ଭୂତାନାଂ ଚ ପତୟେ ସ୍ୱାହା' ଏହା କହି ପୂର୍ବକ୍ରମରେ ଅନ୍ନ ଉପରେ ଜଳ ପକାଇବ । ତା ପରେ ଜଳ ଚଳୁଏ ଧରି 'ଓଁ ଅମୃତୋପସ୍ତରଣମସି ସ୍ୱାହା' ବୋଲି ଆଚମନ କରିବ ।

ତାପରେ 'ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା' କହି ପ୍ରାଣାଦି ପଞ୍ଚ ମୁଦ୍ରାରେ ପାଞ୍ଚ ଥର ଅନ୍ନ ଭୋଜନ କରିବ । ଭୋଜନ ଶେଷରେ 'ଓଁ ଅମୃତାପିଧାନମସି ସ୍ୱାହା' ବୋଲି ଜଳ ଚଳୁଏ ପାନ କରିବ ।

## (ଅଥର୍ବବେଦୀୟ)

ପ୍ରଥମେ 'ଓଁ ବ୍ରହ୍ମଣେ ନମଃ' କହି ଅନ୍ନପାତ୍ରର ଡାହାଣପଟେ ଭୂମିରେ ପାଣି ସିଞ୍ଚିବ । ତାପରେ 'ଓଁ ନାଗାୟ ନମଃ, ଓଁ କୂର୍ମାୟ ନମଃ, ଓଁ ଧନଞ୍ଜୟାୟ ନମଃ, ଓଁ ଦେବଦତ୍ତାୟ ନମଃ, ଓଁ କଶ୍ୟପାୟ ନମଃ, ଓଁ ଭୂପତୟେ ନମଃ, ଓଁ ଭୁବସ୍ପତୟେ ନମଃ, ଓଁ ସ୍ୱସ୍ପତୟେ ନମଃ, ଏହା

ଉଚ୍ଚାରଣ କରି ତଳଆଡୁ ଉପରକୁ ବରକୋଳି ବା ଅଁଳାଫଳ ପରିମିତ ଅନ୍ନ ଆଠୋଟି ଜାଗାରେ ରଖିବ । ତାହାପରେ ଜଳଚଳୁକ ଧରି ଓଁ ନାଗଃ ତୃପ୍ୟତୁ, ଓଁ କୂର୍ମଃ ତୃପ୍ୟତୁ, ଓଁ ଧନଞ୍ଜୟଃ ତୃପ୍ୟତୁ, ଓଁ ଦେବଦତ୍ତଃ ତୃପ୍ୟତୁ, ଓଁ କଶ୍ୟପଃ ତୃପ୍ୟତୁ, ଓଁ ଭୂପତିସ୍ତୃପ୍ୟତୁ, ଓଁ ଭୁବଃପତିସ୍ତୃପ୍ୟତୁ, ଓଁ ସ୍ୱଃପତିସ୍ତୃପ୍ୟତୁ' ଏହି ପ୍ରତ୍ୟେକ ମନ୍ତ୍ରରେ ଗୋଟିଏ କରି ଆଠଗୋଟି ବଳି ଦେବ । ତାପରେ ନିମ୍ନ ମନ୍ତ୍ରରେ ଆଚମନ କରିବ । ମନ୍ତ୍ର ଯଥା -

**ଓଁ ପୟସ୍ୱତୀରୋଷଧୟଃ ପୟସ୍ୱନ୍ମାମକଂ ପୟଃ ।**
**ଅପାଂ ପୟସୋ ଯତ୍ପୟସ୍ତେନମାମିନ୍ଦ୍ର ସଂସୃଜ ॥**
**ପୟଃ ପିବାମି ରସମୋଷଧୀନାଂ**
**ଦେବାନାଂ ଯାତୁ ପ୍ରଥମା ପୁରସ୍ତାତ୍ ଓଁ ॥**

ଏହାପରେ 'ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା' ବୋଲି ପ୍ରାଣାଦି ପଞ୍ଚମୁଦ୍ରାରେ ପାଞ୍ଚଥର ଅନ୍ନଭୋଜନ କରିବ । ତା ପରେ ଭୋଜନ ଶେଷରେ 'ଓଁ ଅମୃତାପିଧାନମସି ସ୍ୱାହା' କହି ଆଚମନ କରିବ ।

## ତର୍ପଣବିଧିଃ

## (ଦେବ-ଋଷି-ମନୁଷ୍ୟ-ପିତୃତର୍ପଣାନି)

ପ୍ରାତଃକାଳରେ ଶଯ୍ୟାତ୍ୟାଗଠାରୁ ପ୍ରାତଃସନ୍ଧ୍ୟାସମାପନ ପର୍ଯ୍ୟନ୍ତ କର୍ମମାନ କ୍ରମାନୁସାରେ ଅନୁଷ୍ଠାନ କରିବ । ଏହା ପରେ ସଂକଳ୍ପ କରିବ ।

**ସଂକଳ୍ପ** - ହାତରେ ତ୍ରିକୁଶ, ଯବ, ଅକ୍ଷତ ଓ ଜଳ ପାତ୍ରୀରେ ଗ୍ରହଣ କରି ନିମ୍ନ ପ୍ରକାରେ ସଂକଳ୍ପ କରିବ । ଯଥା - ଓଁ ବିଷ୍ଣୁଃ, ଓଁ ବିଷ୍ଣୁଃ, ଓଁ ବିଷ୍ଣୁଃ ।

ଅଦ୍ୟ ପୂର୍ବୋଚ୍ଚାରିତ ଏବଂଗୁଣବିଶେଷଣବିଶିଷ୍ଟାୟାଂ ଶୁଭପୁଣ୍ୟତିଥୌ ଶ୍ରୁତିସ୍ମୃତି-ପୁରାଣୋକ୍ତଫଳପ୍ରାପ୍ତ୍ୟର୍ଥଂ ଓ ତତ୍‌ସତ୍‌ପରମେଶ୍ୱରପ୍ରୀତ୍ୟର୍ଥଂ ଦେବ-ଋଷି-ମନୁଷ୍ୟ-ପିତୃତର୍ପଣମହଂ କରିଷ୍ୟେ । ଏହାପରେ ଶିବସଂକଳ୍ପସୂକ୍ତ ପାଠ କରିବ । ଶିବସଂକଳ୍ପସୂକ୍ତ ଯଥା -

**ଓଁ ଯଜ୍ଜାଗ୍ରତ ଇତି ମନ୍ତ୍ରସ୍ୟ, ପ୍ରଜାପତିଋଷିଃ,**

**ତ୍ରିଷ୍ଟୁପ୍ ଛନ୍ଦଃ, ମନୋ ଦେବତା, ଉପସ୍ଥାନେ ବିନିଯୋଗଃ ।**

**ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ ତଦୁ ସୁପ୍ତସ୍ୟ ତଥୈବୈତି ।**
**ଦୂରଙ୍ଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୧ ॥**
**ଓଁ ଯେନ କର୍ମାଣ୍ୟପସୋ ମନୀଷିଣୋ ଯଜ୍ଞେ କୃଣ୍ୱନ୍ତି ବିଦଥେଷୁ ଧୀରାଃ ।**
**ଯଦପୂର୍ବଂ ଯକ୍ଷମନ୍ତଃ ପ୍ରଜାନାଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୨ ॥**
**ଓଁ ଯତ୍ପ୍ରଜ୍ଞାନମୁତ ଚେତୋ ଧୃତିଶ୍ଚ ଯଜ୍ଜ୍ୟୋତିରନ୍ତରମୃତଂ ପ୍ରଜାସୁ ।**
**ଯସ୍ମାନ୍ନ ଋତେ କିଞ୍ଚନ କର୍ମ କ୍ରିୟତେ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୩ ॥**
**ଓଁ ଯେନେଦଂ ଭୂତଂ ଭୁବନଂ ଭବିଷ୍ୟଦ୍ ପରିଗୃହୀତମମୃତେନ ସର୍ବମ୍ ।**
**ଯେନ ଯଜ୍ଞସ୍ତାୟତେ ସପ୍ତହୋତା ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୪ ॥**
**ଓଁ ଯସ୍ମିନ୍ନୃଚଃ ସାମଯଜୂଂଷି ଯସ୍ମିନ୍ ପ୍ରତିଷ୍ଠିତା ରଥନାଭାବିବାରାଃ ।**
**ଯସ୍ମିନ୍ ଚିତ୍ତଂ ସର୍ବମୋତଂ ପ୍ରଜାନାଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୫ ॥**
**ଓଁ ସୁଷାରଥିରଶ୍ୱାନି ବୟନ୍ମନୁଷ୍ୟାନ୍ନେନୀୟତେଽଭୀଷୁଭିର୍ବାଜିନ ଇବ ।**
**ହୃତ୍ପ୍ରତିଷ୍ଠଂ ଯଦଜିରଂ ଜବିଷ୍ଠଂ ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ୬ ॥**

ଏହି ମନ୍ତ୍ରମାନ ପାଠ କରିବା ପରେ ଡାହାଣହାତର ଅନାମିକା ଅଙ୍ଗୁଳିରେ ଯଜ୍ଞୋପବୀତ ଧାରଣ କରି ନିମ୍ନ ମନ୍ତ୍ର ପାଠ କରିବ । ମନ୍ତ୍ର ଯଥା -

**ଓଁ ପବିତ୍ରେସ୍ଥୋ ବୈଷ୍ଣବ୍ୟୌ ସବିତୁର୍ବ ପ୍ରସବ ଉତ୍ପୁନାମି ।**
**ଅଛିଦ୍ରେଣ ପବିତ୍ରେଣ ସୂର୍ଯ୍ୟସ୍ୟ ରଶ୍ମିଭିଃ ।।**
**ତସ୍ୟ ତେ ପବିତ୍ରପତେ ପବିତ୍ରପୂତସ୍ୟ ଯତ୍କାମଂ ପୁନେତଚ୍ଛକେୟମ୍ ।।**

ଏହାପରେ ଜଳପୂର୍ଣ୍ଣ ପାତ୍ରୀରେ ତିନିଗୋଟି କୁଶ ସ୍ଥାପନପୂର୍ବକ ପାତ୍ରୀକୁ ବାମହାତପାପୁଲିରେ ସ୍ଥାପନ କରି ଡାହାଣହାତ ପାତ୍ରୀ ଉପରେ ରଖି ନିମ୍ନ ମନ୍ତ୍ରମାନ ତିନିଥର ଆବୃତ୍ତି କରିବ । ମନ୍ତ୍ର ଯଥା -

**ଓଁ ଇଷେ ତ୍ୱୋର୍ଜେ ତ୍ୱା ବାୟବ ସ୍ଥ,**
**ଦେବୋ ବଃ ସବିତା ପ୍ରାର୍ପୟତୁ ଶ୍ରେଷ୍ଠତମାୟ କର୍ମଣେ ।।**
**ଆପ୍ୟାୟଧ୍ୱମଘ୍ନ୍ୟା ଇନ୍ଦ୍ରାୟ ଭାଗଂ ପ୍ରଜାବତୀରନମୀବା ଅଯକ୍ଷ୍ମା ।**
**ମା ବସ୍ତେନ ଈଶତ ମାଂଘଶଂସଃ ।**
**ଧ୍ରୁବା ଅସ୍ମିନ୍ ଗୋପତୌ ସ୍ୟାତ ବହ୍ୱୀଃ ।**
**ଯଜମାନସ୍ୟ ପଶୂନ୍ ପାହି । ବସୋଃ ପବିତ୍ରମସି ।**

(ଯଜୁ. ୧ . ୧ -୩)

ଏହାପରେ ତିନିବାର ଗାୟତ୍ରୀ ମନ୍ତ୍ର ପାଠ କରି ପାତ୍ରୀରେ ଥିବା ତିନିଗୋଟି କୁଶ ଦ୍ୱାରା ଶିରଃପ୍ରଦେଶ ମାର୍ଜନ କରିବ । ବ୍ୟବହୃତ କୁଶକୁ ବିସର୍ଜନ କରି ଆଚମନ କରିବ । ତା ପରେ ତାମ୍ରପାତ୍ରରେ ବା ଭୂମିରେ ପୂର୍ବମୁହାଁ କରି ତିନୋଟି କୁଶ ପକାଇ ଅକ୍ଷତ ଓ ପୁଷ୍ପପୂର୍ବକ ବିଶ୍ୱେଦେବାଙ୍କୁ ଆବାହନ କରିବ । ମନ୍ତ୍ର ଯଥା -

**ଓଁ ବିଶ୍ୱେଦେବାସ ଆଗତ ଶୃଣୁତା ମ ଇମଂ ହବମ୍ ।**
**ଇଦଂ ବର୍ହିର୍ନିଷୀଦତ ।।** (ଯଜୁ. ୭-୩୪)

ଏହାପରେ ବିଶ୍ୱେଦେବାଙ୍କୁ ନିମ୍ନ ମନ୍ତ୍ର ପାଠ କରି ନମସ୍କାର କରିବ । ଯଥା-

**ଓଁ ବିଶ୍ୱେଦେବାଃ ଶୃଣୁତେମଂ ହବଂ ମେ ଯେ ଅନ୍ତରିକ୍ଷେ**
**ଯ ଉପଦ୍ୟବିଷ୍ଟ । ଯେ ଅଗ୍ନିଜିହ୍ୱା ଉତ ବା ଯଜତ୍ରା**
**ଆସଦ୍ୟାସ୍ମିନ୍ ବର୍ହିଷି ମାଦୟଧ୍ୱମ୍ ।। (ଯଜୁ. ୩୩/୫୩)**
**ଆଗଚ୍ଛନ୍ତୁ ମହାଭାଗା ବିଶ୍ୱେଦେବା ମହାବଳାଃ ।**
**ଯେ ତର୍ପଣେଽତ୍ର ବିହିତାଃ ସାବଧାନା ଭବନ୍ତୁ ତେ ।।**
**ଓଁ ବ୍ରହ୍ମାଦୟୋ ବିଶ୍ୱେଦେବା ଅତ୍ରାଗଚ୍ଛତ ।**

ଅକ୍ଷତ ଭୂମିରେ ବୁଣି ଆବାହନ କରି ହାତଯୋଡି ଏହି ମନ୍ତ୍ରମାନ ପଢିବ ଓ ତାପରେ ନମସ୍କାର କରିବ ।

## ଦେବତର୍ପଣମ୍

ଦେବତାମାନଙ୍କୁ ଆବାହନ କରି କୁଶାସନ ଦେବ । ସେହି ପୂର୍ବାଗ୍ରକୁଶମାନଙ୍କ ଦ୍ୱାରା ଡାହାଣହାତର ସମସ୍ତ ଅଙ୍ଗୁଳିମାନଙ୍କର ଅଗ୍ରଭାଗରେ (ଦେବତୀର୍ଥରେ) ବ୍ରହ୍ମାଦିଦେବତାମାନଙ୍କ ଉଦ୍ଦେଶ୍ୟରେ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ଅଞ୍ଜଳି ଜଳ ପୂର୍ବନିର୍ଦ୍ଦିଷ୍ଟ ପାତ୍ରରୁ ଅକ୍ଷତ ମିଶ୍ରିତ କରି ଅନ୍ୟ ଏକ ପାତ୍ରରେ ଢାଳିବ ଏବଂ ପ୍ରତ୍ୟେକ ମନ୍ତ୍ରରେ ଗୋଟିଏ ଦେବତାଙ୍କ ନାମ ସହିତ ଗୋଟିଏ ଅଞ୍ଜଳି ଅଥବା ତାମ୍ରପାତ୍ରୀରେ ଜଳ ଦେବ । ମନ୍ତ୍ର ଯଥା -

ବ୍ରହ୍ମତୀର୍ଥରେ - **ଓଁ ବ୍ରହ୍ମା ତୃପ୍ୟତାମ୍ ।**

ଦେବତୀର୍ଥରେ - **ଓଁ ବିଷ୍ଣୁସ୍ତୃପ୍ୟତାମ୍ । ଓଁ ରୁଦ୍ରସ୍ତୃପ୍ୟତାମ୍ ।**

ପ୍ରଜାପତିତୀର୍ଥରେ - **ଓଁ ପ୍ରଜାପତିସ୍ତୃପ୍ୟତାମ୍ ।**

ପୁନର୍ବାର ଦେବତୀର୍ଥରେ - **ଓଁ ବେଦାସ୍ତୃପ୍ୟନ୍ତାମ୍ ।**

**ଓଁ ଛନ୍ଦାଂସି ତୃପ୍ୟନ୍ତାମ୍ । ଓଁ ଦେବାସ୍ତୃପ୍ୟନ୍ତାମ୍ ।**

ଓଁ ଋଷୟସ୍ତୃପ୍ୟନ୍ତାମ୍ । ଓଁ ପୁରାଣାଚାର୍ଯ୍ୟାସ୍ତୃପ୍ୟନ୍ତାମ୍ ।
ଓଁ ଗନ୍ଧର୍ବାସ୍ତୃପ୍ୟନ୍ତାମ୍ । ଓଁ ଇତରାଚାର୍ଯ୍ୟାସ୍ତୃପ୍ୟନ୍ତାମ୍ ।
ଓଁ ସଂବତ୍ସରଃ ସାବୟବସ୍ତୃପ୍ୟତାମ୍ ।
ଓଁ ଦେବ୍ୟସ୍ତୃପ୍ୟନ୍ତାମ୍ । ଓଁ ଅପ୍ସରସସ୍ତୃପ୍ୟନ୍ତାମ୍ ।
ଓଁ ଦେବାନୁଗାସ୍ତୃପ୍ୟନ୍ତାମ୍ । ଓଁ ନାଗାସ୍ତୃପ୍ୟନ୍ତାମ୍ ।
ଓଁ ସାଗରାସ୍ତୃପ୍ୟନ୍ତାମ୍ । ଓଁ ପର୍ବତାସ୍ତୃପ୍ୟନ୍ତାମ୍ ।
ଓଁ ସରିତସ୍ତୃପ୍ୟନ୍ତାମ୍ । ଓଁ ମନୁଷ୍ୟାସ୍ତୃପ୍ୟନ୍ତାମ୍ ।
ଓଁ ଯକ୍ଷାସ୍ତୃପ୍ୟନ୍ତାମ୍ । ଓଁ ରକ୍ଷାଂସି ତୃପ୍ୟନ୍ତାମ୍ ।
ଓଁ ପିଶାଚାସ୍ତୃପ୍ୟନ୍ତାମ୍ । ଓଁ ସୁପର୍ଣ୍ଣାସ୍ତୃପ୍ୟନ୍ତାମ୍ ।
ଓଁ ଭୂତାନି ତୃପ୍ୟନ୍ତାମ୍ । ଓଁ ପଶବସ୍ତୃପ୍ୟନ୍ତାମ୍ ।
ଓଁ ବନସ୍ପତୟସ୍ତୃପ୍ୟନ୍ତାମ୍ । ଓଁ ଓଷଧୟସ୍ତୃପ୍ୟନ୍ତାମ୍ ।
ଓଁ ଭୂତଗ୍ରାମଶ୍ଚତୁର୍ବିଧସ୍ତୃପ୍ୟତାମ୍ ।

**ଋଷିତର୍ପଣମ୍ -**

ଏହାପରେ ନିମ୍ନମନ୍ତ୍ରମାନଙ୍କ ଦ୍ୱାରା ମରୀଚି ପ୍ରଭୃତି ଋଷିମାନଙ୍କୁ ଏକ ଏକ ଅଞ୍ଜଳି ଜଳ ତର୍ପଣ କରିବ ।

ଓଁ ମରୀଚିସ୍ତୃପ୍ୟତାମ୍ । ଓଁ ଅତ୍ରିସ୍ତୃପ୍ୟତାମ୍ ।
ଓଁ ଅଙ୍ଗିରାସ୍ତୃପ୍ୟତାମ୍ । ଓଁ ପୁଲସ୍ତ୍ୟସ୍ତୃପ୍ୟତାମ୍ ।
ଓଁ ପୁଲହସ୍ତୃପ୍ୟତାମ୍ । ଓଁ କ୍ରତୁସ୍ତୃପ୍ୟତାମ୍ ।
ଓଁ ବଶିଷ୍ଠସ୍ତୃପ୍ୟତାମ୍ । ଓଁ ପ୍ରଚେତାସ୍ତୃପ୍ୟତାମ୍ ।
ଓଁ ଭୃଗୁସ୍ତୃପ୍ୟତାମ୍ । ଓଁ ନାରଦସ୍ତୃପ୍ୟତାମ୍ ।

## ଦିବ୍ୟମନୁଷ୍ୟତର୍ପଣମ୍ -

ଏହାପରେ ଆବାହନ କୁଶଗୁଡ଼ିକୁ ଉତ୍ତରାଗ୍ର କରି ନିଜେ ମଧ୍ୟ ଉତ୍ତରାଭିମୁଖ ହୋଇ ଉପବୀତକୁ କଣ୍ଠରେ ଧାରଣ କରି ସନକାଦି ସପ୍ତମନୁଷ୍ୟଙ୍କୁ ପ୍ରତ୍ୟେକଙ୍କୁ ଅକ୍ଷତପୁଷ୍ପ ଦ୍ୱାରା ଆବାହନ କରିବ । 'ଓଁ ସନକାଦ୍ୟା ସପ୍ତମନୁଷ୍ୟା ଅତ୍ରାଗଚ୍ଛତ' ।

ଏହା କହି ଭୂମିରେ ଯବ ବିକିରଣ କରି ପ୍ରଜାପତିତୀର୍ଥରେ ପ୍ରତ୍ୟେକଙ୍କୁ ଦୁଇ ଦୁଇ ଆଞ୍ଜୁଳି ତର୍ପଣ କରିବ । ଯଥା -

ଓଁ ସନକସ୍ତୃପ୍ୟତାମ୍ । ଓଁ ସନନ୍ଦନସ୍ତୃପ୍ୟତାମ୍ ।
ଓଁ ସନାତନସ୍ତୃପ୍ୟତାମ୍ । ଓଁ କପିଳସ୍ତୃପ୍ୟତାମ୍ ।
ଓଁ ଆସୁରିସ୍ତୃପ୍ୟତାମ୍ । ଓଁ ବୋଢୁସ୍ତୃପ୍ୟତାମ୍ ।
ଓଁ ପଞ୍ଚଶିଖସ୍ତୃପ୍ୟତାମ୍ ।　　　　॥ ଇତି ॥

## ପିତୃତର୍ପଣମ୍ -

ତା ପରେ ଅପସବ୍ୟ ହୋଇ କୁଶଗୁଡିକୁ ଦକ୍ଷିଣାଗ୍ର କରି ବାମଜାନୁ ଭୂମିରେ ପକାଇ ତିଳପୁଷ୍ପତୁଳସୀଦ୍ୱାରା କବ୍ୟବାଡନଳାଦି ଦିବ୍ୟପିତୃମାନଙ୍କୁ ଆବାହନ କରିବ ।

ଓଁ କବ୍ୟବାଡନଳାଦୟୋ ଦିବ୍ୟପିତରଃ ଅତ୍ରାଗଚ୍ଛତ ।
ଓଁ ବସବୋ ରୁଦ୍ରାଦିତ୍ୟାଚାର୍ଯ୍ୟା ଅତ୍ରାଗଚ୍ଛତ ।
ଓଁ ଉଶନ୍ତସ୍ତ୍ୱା ନିଧୀମହ୍ୟୁଶନ୍ତଃ ସମିଧୀମହି ।
ଉଶନ୍ନୁଶତ ଆବହ ପିତୄନ୍ ହବିଷେ ଅତ୍ତବେ ॥ (ଯଜୁ.୧୯/୭୦)
ଓଁ ପିତୄନାବାହୟିଷ୍ୟେ, ଆବାହୟ ।

ଏହା କହି ମନୁଷ୍ୟ ପିତୃମାନଙ୍କୁ ଆବାହନ କରିବ ।

ଅମୁକସଗୋତ୍ର ଅସ୍ମତ୍‌ପିତଃ ଅମୁକଦେବଶର୍ମନ୍ ଅତ୍ରାଗଚ୍ଛତ ।
ଅମୁକସଗୋତ୍ର ଅସ୍ମତ୍‌ପିତାମହ ଅମୁକଦେବଶର୍ମନ୍ ଅତ୍ରାଗଚ୍ଛତ ।
ଅମୁକସଗୋତ୍ର ଅସ୍ମତ୍‌ପ୍ରପିତାମହ ଅମୁକଦେବଶର୍ମନ୍ ଅତ୍ରାଗଚ୍ଛତ ।
ଅମୁକସଗୋତ୍ରା ଅସ୍ମନ୍ମାତଃ ଅମୁକଦେବି ଅତ୍ରାଗଚ୍ଛତ ।
ଅମୁକସଗୋତ୍ରା ଅସ୍ମତ୍‌ପିତାମହି ଅମୁକଦେବି ଅତ୍ରାଗଚ୍ଛତ ।
ଅମୁକସଗୋତ୍ରା ଅସ୍ମତ୍‌ପ୍ରପିତାମହି ଅମୁକଦେବି ଅତ୍ରାଗଚ୍ଛତ ।
ଅମୁକସଗୋତ୍ର ଅସ୍ମନ୍ମାତାମହ ଅମୁକଦେବଶର୍ମନ୍ ଅତ୍ରାଗଚ୍ଛତ ।
ଅମୁକସଗୋତ୍ର ଅସ୍ମତ୍ ପ୍ରମାତାମହ ଅମୁକଦେବଶର୍ମନ୍ ଅତ୍ରାଗଚ୍ଛତ ।
ଅମୁକସଗୋତ୍ର ଅସ୍ମଦ୍‌ବୃଦ୍ଧପ୍ରମାତାମହ ଅମୁକଦେବଶର୍ମନ୍ ଅତ୍ରାଗଚ୍ଛତ ।

ପିତୃନମସ୍କାରମନ୍ତ୍ରଃ -

ଓଁ ଆୟନ୍ତୁ ନଃ ପିତରଃ ସୋମ୍ୟାସୋଽଗ୍ନିଷ୍ୱାତ୍ତାଃ ପଥିଭିର୍ଦେବଯାନୈଃ ।
ଅସ୍ମିନ୍ ଯଜ୍ଞେ ସ୍ୱଧୟା ମଦନ୍ତୋଽଧିବ୍ରୁବନ୍ତୁ ତେଽବନ୍ତ୍ୱସ୍ମାନ୍ ॥

(ଯଜୁ. ୧୯/୫୮)

ଏହି ମନ୍ତ୍ରରେ ପିତୃ ନମସ୍କାର କରି ତମ୍ବା ପାତ୍ରୀରେ ତିନୋଟି କୁଶ ମୂଳ ଓ ଅଗ୍ରତୋୟାଭିମୁଖ କରି ଅଙ୍ଗୁଷ୍ଠାନାମିକା ମୁଦ୍ରାରେ ତମ୍ବାପାତ୍ରୀରେ ତିଳ ପକାଇ ଅଥବା ଆଞ୍ଜୁଳିରେ ତିଳମିଶ୍ରିତ ଜଳ ଗ୍ରହଣ କରି ପିତୃତୀର୍ଥରେ ପ୍ରତ୍ୟେକଙ୍କୁ ତିନିଥର ଜଳ ଦେବ ।

ଓଁ କବ୍ୟବାଡନଳସ୍ତୃପ୍ୟତାମ୍, ଇଦଂ ସତିଳଂ ଜଳଂ (ଗଙ୍ଗାଜଳଂ ବା) ତସ୍ମୈ ସ୍ୱଧା ନମଃ, ତସ୍ମୈ ସ୍ୱଧା ନମଃ, ତସ୍ମୈ ସ୍ୱଧା ନମଃ ।
ଓଁ ସୋମସ୍ତୃପ୍ୟତାମ୍ ଇଦଂ ସତିଳଂ ଜଳଂ ତସ୍ମୈ ସ୍ୱଧା ନମଃ ।

ଓଁ ଯମସ୍ତୃପ୍ୟତାମ୍ ଇଦଂ ସତିଳଂ ଜଳଂ ତସ୍ମୈ ସ୍ୱଧା ନମଃ ।
ଓଁ ଅର୍ଯମା ତୃପ୍ୟତାମ୍ ଇଦଂ ସତିଳଂ ଜଳଂ ତସ୍ମୈ ସ୍ୱଧା ନମଃ ।
ଓଁ ଅଗ୍ନିଷ୍ୱାତ୍ତାଃ ପିତରସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।
ଓଁ ସୋମପାଃ ପିତରସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।
ଓଁ ବର୍ହିଷଦଃ ପିତରସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।
ଓଁ ବସବସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।
ଓଁ ରୁଦ୍ରାସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।
ଓଁ ଆଦିତ୍ୟାସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।
ଓଁ ଆଚାର୍ଯ୍ୟାସ୍ତୃପ୍ୟନ୍ତାମିଦଂ ସତିଳଂ ଜଳଂ ତେଭ୍ୟଃ ସ୍ୱଧା ନମଃ ।

ଯମତର୍ପଣମ୍ -

ଏହାପରେ ନିମ୍ନମନ୍ତ୍ରମାନ ପାଠ କରି ଚତୁର୍ଦ୍ଦଶ ଯମଙ୍କ ଉଦ୍ଦେଶ୍ୟରେ ପିତୃତୀର୍ଥରେ ତିଳ ସହିତ ପ୍ରତ୍ୟେକଙ୍କୁ ତିନି ତିନି ଅଞ୍ଜଳି ଜଳ ତର୍ପଣ କରିବ ।

ମନ୍ତ୍ର ଯଥା - ଓଁ ଯମାୟ ନମଃ । ଓଁ ଧର୍ମରାଜାୟ ନମଃ ।
ଓଁ ମୃତ୍ୟବେ ନମଃ । ଓଁ ଅନ୍ତକାୟ ନମଃ ।
ଓଁ ବୈବସ୍ୱତାୟ ନମଃ । ଓଁ କାଳାୟ ନମଃ ।
ଓଁ ସର୍ବଭୂତକ୍ଷୟାୟ ନମଃ । ଓଁ ଔଦୁମ୍ବରାୟ ନମଃ ।
ଓଁ ଦଧ୍ନାୟ ନମଃ । ଓଁ ନୀଳାୟ ନମଃ ।
ଓଁ ପରମେଷ୍ଠିନେ ନମଃ । ଓଁ ବୃକୋଦରାୟ ନମଃ ।
ଓଁ ଚିତ୍ରାୟ ନମଃ । ଓଁ ଚିତ୍ରଗୁପ୍ତାୟ ନମଃ ।।

## ପିତୃତର୍ପଣମ୍-

ଏହାପରେ କୁଶ ଓ ତିଳୋଦକ ଗ୍ରହଣ କରି ପିତୃରୂପକୁ ଧ୍ୟାନ କରିବେ । ମନ୍ତ୍ର ଯଥା -

**ଓଁ ଉଦୀରତାମବର ଉତ୍ ପରାସ ଉନ୍ମଧମାଃ ପିତରଃ ସୋମ୍ୟାସଃ ।**
**ଅସୁଂ ଯ ଈୟୁରବୃକା ଋତଜ୍ଞାସ୍ତେ ନୋଽବନ୍ତୁ ପିତରୋ ହବେଷୁ ।।**

(ଯଜୁ. ୧୯/୪୮)

**ଓଁ ଅମୁକସଗୋତ୍ରଃ ଅସ୍ମତ୍‌ପିତା ଅମୁକଦେବଶର୍ମା ତୃପ୍ୟତାମ୍**
**ଇଦଂ ଜଲଂ ତସ୍ମୈ ସ୍ୱଧା ନମଃ । ଅମୁକସଗୋତ୍ରାୟ**
**ଇଦମସ୍ମତ୍‌ପିତ୍ରେ ଅମୁକଦେବଶର୍ମଣେ ।**
**ଓଁ ଅଙ୍ଗିରସୋ ନଃ ପିତରୋ ନବଗ୍ୱା ଅଥର୍ବାଣୋ ଭୃଗବଃ ସୋମ୍ୟାସଃ ।**
**ତେଷାଂ ବୟଂ ସୁମତୌ ଯଜ୍ଞିୟାନାମପି ଭଦ୍ରେ ସୌମନସେ ସ୍ୟାମଃ ।।**

(ଯଜୁ. ୧୯/୫୦)

**ଅମୁକସଗୋତ୍ରଃ ଅସ୍ମତ୍‌ପିତା ଅମୁକଦେବଶର୍ମା ତୃପ୍ୟତାମ୍**
**ଇଦଂ ଜଲଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍‌ପିତ୍ରେ ଅମୁକଦେବଶର୍ମଣେ ।**
**ଓଁ ଆୟନ୍ତୁ ନଃ ପିତରଃ ସୋମ୍ୟାସୋଽଗ୍ନିଷ୍ୱାତ୍ତାଃ ପଥିଭିର୍ଦେବୟାନୈଃ ।**
**ଅସ୍ମିନ୍ ଯଜ୍ଞେ ସ୍ୱଧୟା ମଦନ୍ତୋଽଧିବ୍ରୁବନ୍ତୁ ତେଽବନ୍ତ୍ୱସ୍ମାନ୍ ।।**

(ଯଜୁ. ୧୯/୫୮)

**ଅମୁକସଗୋତ୍ରୋଽସ୍ମତ୍‌ପିତା ଅମୁକଦେବଶର୍ମା ତୃପ୍ୟତାମିଦଂ**
**ଜଲଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍‌ପିତ୍ରେ ଅମୁକଦେବଶର୍ମଣେ ।**

## ପିତାମହତର୍ପଣମ୍ -

ଏହାପରେ କୁଶ ଓ ତିଳୋଦକ ଗ୍ରହଣ କରି ନିମ୍ନ ମନ୍ତ୍ରରେ ପିତାମହଙ୍କ ରୂପକୁ ଧ୍ୟାନ କରିବ । ଯଥା -

**ଓଁ ଊର୍ଜଂ ବହନ୍ତୀରମୃତଂ ଘୃତଂ ପୟଃ କୀଲାଳଂ ପରିସ୍ରୁତମ୍ ।**
**ସ୍ୱଧା ସ୍ଥ ତର୍ପୟତ ମେ ପିତୃନ୍ ।।** (ଯଜୁ. ୨/୩୪)
**ଅମୁକସଗୋତ୍ରୋଽସ୍ମତ୍‌ପିତାମହଃ ଅମୁକଦେବଶର୍ମା ତୃପ୍ୟତାମ୍,**
**ଇଦଂ ଜଳଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍‌ପିତାମହାୟ ଅମୁକଦେବଶର୍ମଣେ ।**
**ଓଁ ପିତୃଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧା ନମଃ ।**
**ପିତାମହେଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧା ନମଃ ।**
**ପ୍ରପିତାମହେଭ୍ୟଃ ସ୍ୱଧାୟିଭ୍ୟଃ ସ୍ୱଧା ନମଃ ।**
**ଓଁ ଅକ୍ଷନ୍ ପିତରୋଽମୀମଦନ୍ତ ପିତରୋଽତୀତୃପନ୍ତ,**
**ପିତରଃ ପିତରଃ ଶୁନ୍ଧଧ୍ୱମ୍ ।** (ଯଜୁ. ୧୯/୩୬)
**ଅମୁକସଗୋତ୍ରଃ ଅସ୍ମତ୍‌ପିତାମହଃ ଅମୁକଦେବଶର୍ମା ତୃପ୍ୟତାମ୍,**
**ଇଦଂ ଜଳଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍ ପିତାମହାୟ ଅମୁକଦେବଶର୍ମଣେ ।**
**ଯେ ଚେହ ପିତରୋ ଯେ ଚ ନେହ ଯାଁଶ୍ଚ ବିଦ୍ମ ଯାଁ ଉ ଚ ନ ପ୍ରବିଦ୍ମ ।**
**ତ୍ୱଂ ବେତ୍ଥ ଯତି ତେ ଜାତବେଦଃ ସ୍ୱଧାଭିର୍ଯଜ୍ଞଂ ସୁକୃତଂ ଜୁଷସ୍ୱ ।**
(ଯଜୁ. ୧୯/୬୭)
**ଅମୁକସଗୋତ୍ରୋଽସ୍ମତ୍ ପିତାମହଃ ଅମୁକଦେବଶର୍ମା ତୃପ୍ୟତାମ୍,**
**ଇଦଂ ଜଳଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍‌ପିତାମହାୟ ଅମୁକଦେବଶର୍ମଣେ ।।**

## ପ୍ରପିତାମହତର୍ପଣମ୍ -

ଏହାପରେ କୁଶ ଓ ତିଳୋଦକ ଗ୍ରହଣ କରି ନିମ୍ନମନ୍ତ୍ରରେ ପ୍ରପିତାମହରୂପକୁ ଧ୍ୟାନ କରିବ । ମନ୍ତ୍ର ଯଥା -

**ଓଁ ମଧୁବାତା ଋତାୟତେ, ମଧୁ କ୍ଷରନ୍ତି ସିନ୍ଧବଃ ।**
**ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ॥** (ଯଜୁ. ୧୩/୨୭)
**ଅମୁକସଗୋତ୍ରୋଽସ୍ମତ୍ ପ୍ରପିତାମହଃ ଅମୁକଦେବଶର୍ମା**
**ତୃପ୍ୟତାମ୍, ଇଦଂ ଜଳଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍ପ୍ରପିତାମହାୟ ଅମୁକଦେବଶର୍ମଣେ ।**
**ଓଁ ମଧୁନକ୍ତମୁତୋଷସୋ ମଧୁମତ୍ ପାର୍ଥିବଂ ରଜଃ ।**
**ମଧୁ ଦ୍ୟୌରସ୍ତୁ ନଃ ପିତା ।** (ଯଜୁ. ୧୩/୨୮)
**ଅମୁକସଗୋତ୍ରୋ ଅସ୍ମତ୍ପ୍ରପିତାମହୋଽମୁକଦେବଶର୍ମା**
**ତୃପ୍ୟତାମିଦଂ ଜଳଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍ ପ୍ରପିତାମହାୟ**
**ଅମୁକଦେବଶର୍ମଣେ ।**
**ଓଁ ମଧୁମାନ୍ନୋ ବନସ୍ପତିର୍ମଧୁମାଁ ଅସ୍ତୁ ସୂର୍ଯ୍ୟଃ ।**
**ମାଧ୍ୱୀର୍ଗାବୋ ଭବନ୍ତୁ ନଃ ॥** (ଯଜୁ. ୧୩/୨୯)
**ଅମୁକସଗୋତ୍ରୋଽସ୍ମତ୍ପ୍ରପିତାମହ ଅମୁକଦେବଶର୍ମା**
**ତୃପ୍ୟତାମିଦଂ ଜଳଂ ତସ୍ମୈ ସ୍ୱଧା ନମଃ ।**
**ଅମୁକସଗୋତ୍ରାୟ ଇଦମସ୍ମତ୍ପ୍ରପିତାମହାୟ ଅମୁକଦେବଶର୍ମଣେ ।**

ଏହାପରେ ପିତୃ-ପିତାମହ-ପ୍ରପିତାମହଙ୍କୁ ସମୂହରେ ତିନିଗୋଟି ଅଞ୍ଜଳି ଦେବ ।

ଅମୁକସଗୋତ୍ରାଃ ଅସ୍ମତ୍‌ପିତୃପିତାମହପ୍ରପିତାମହାଃ
ଅମୁକଦେବ-ଅମୁକଦେବ-ଅମୁକଦେବଶର୍ମାଣସ୍ତୃପ୍ୟଧ୍ୱମ୍,
ଇଦଂ ଜଳଂ ଯୁଷ୍ମଭ୍ୟଂ ସ୍ୱଧା ନମଃ ।
ଅମୁକସଗୋତ୍ରାୟ ଇଦମସ୍ମତ୍‌ପିତ୍ରେ ଅମୁକଦେବଶର୍ମଣେ ।
ଅମୁକସଗୋତ୍ରାୟ ଇଦମସ୍ମତ୍ ପିତାମହାୟ ଅମୁକଦେବଶର୍ମଣେ ।
ଅମୁକସଗୋତ୍ରାୟ ଇଦମସ୍ମତ୍ ପ୍ରପିତାମହାୟ ଅମୁକଦେବଶର୍ମଣେ ।

## ପିତୃନମସ୍କାରଃ -

ଓଁ ନମୋ ବଃ ପିତରଃ ଶୁଷ୍ମାୟ ନମୋ ବଃ ପିତରସ୍ତପସେ ।
ନମୋ ବଃ ପିତରୋ ଯଜ୍ଜୀବଂ ତସ୍ମୈ ନମୋ ବଃ ପିତରୋ ରସାୟ ।
ନମୋ ବଃ ପିତରୋ ଘୋରାୟ ମନ୍ୟବେ ସ୍ୱଧାୟୈ ବଃ ପିତରୋ ନମଃ ।
(ଯଜୁ. ୨/୩୨)

ଏହି ମନ୍ତ୍ର ପାଠ କରି ପିତୃପୁରୁଷମାନଙ୍କୁ ନମସ୍କାର କରିବ ।

## ମାତୃତର୍ପଣମ୍ -

ପ୍ରତି ଅଞ୍ଜଳିରେ ନିମ୍ନ ମନ୍ତ୍ର ପାଠ କରି ପ୍ରତ୍ୟେକଙ୍କୁ ତିନିଗୋଟି ଅଞ୍ଜଳି ପ୍ରଦାନ କରିବ ।

ଅମୁକସଗୋତ୍ରା ଅସ୍ମନ୍ମାତା ଅମୁକାଦେବୀ ତୃପ୍ୟତାମିଦଂ
ସତିଳଂ ଜଳଂ ତସ୍ୟୈ ସ୍ୱଧା ନମଃ ।
ଅମୁକସଗୋତ୍ରାୟୈ ଇଦମସ୍ମତ୍‌ମାତ୍ରେ ଅମୁକାଦେବ୍ୟୈ ।
ଅମୁକସଗୋତ୍ରା ଅସ୍ମତ୍‌ପିତାମହୀ ଅମୁକାଦେବୀ
ତୃପ୍ୟତାମିଦଂ ସତିଳଂ ଜଳଂ ତସ୍ୟୈ ସ୍ୱଧା ନମଃ ।
ଅମୁକସଗୋତ୍ରାୟୈ ଇଦମସ୍ମତ୍ ପିତାମହ୍ୟୈ ଅମୁକାଦେବ୍ୟୈ ।

ଅମୁକସଗୋତ୍ରା ଅସ୍ମତ୍ ପ୍ରପିତାମହୀ ଅମୁକାଦେବୀ

ତୃପ୍ୟତାମିଦଂ ଜଳଂ ତସ୍ୟୈ ସ୍ୱଧା ନମଃ ।

ଅମୁକସଗୋତ୍ରାୟୈ ଇଦମସ୍ମତ୍ ପ୍ରପିତାମହ୍ୟୈ ଅମୁକାଦେବ୍ୟୈ ।

ଏହାପରେ ସମୂହଭାବରେ ମାତୃ-ପିତାମହୀ-ପ୍ରପିତାମହୀଙ୍କୁ ତିନିଗୋଟି ଅଞ୍ଜଳି ଦେବ ।

ଅମୁକସଗୋତ୍ରା ଅସ୍ମନ୍ମାତୃ-ପିତାମହୀ - ପ୍ରପିତାମହ୍ୟଃ

ଅମୁକାଦେବୀ-ଅମୁକାଦେବୀ-ଅମୁକାଦେବ୍ୟସ୍ତୃପ୍ୟନ୍ତ୍ୱିମିଦଂ

ସତିଲଂ ଜଳଂ ତାଭ୍ୟଃ ସ୍ୱଧା ନମଃ ।

ଅମୁକସଗୋତ୍ରା ଇଦମସ୍ମତ୍‌ମାତ୍ରେ ଅମୁକାଦେବ୍ୟୈ ।

ଅମୁକସଗୋତ୍ରା ଇଦମସ୍ମତ୍ ପିତାମହ୍ୟୈ ଅମୁକାଦେବ୍ୟୈ ।

ଅମୁକସଗୋତ୍ରା ଇଦମସ୍ମତ୍ ପ୍ରପିତାମହ୍ୟୈ ଅମୁକାଦେବ୍ୟୈ ।

## ମାତାମହାଦିତର୍ପଣମ୍ -

ପ୍ରତି ଅଞ୍ଜଳିରେ ନିମ୍ନ ମନ୍ତ୍ର ପାଠ କରି ମାତାମହ-ପ୍ରମାତାମହ-ବୃଦ୍ଧପ୍ରମାତାମହଙ୍କୁ ପ୍ରତ୍ୟେକଙ୍କୁ ତିନିଗୋଟି ଅଞ୍ଜଳି ପ୍ରଦାନ କରିବ । ଯଥା -

ଅମୁକସଗୋତ୍ରୋଽସ୍ମନ୍ମାତାମହଃ ଅମୁକଦେବଶର୍ମା।

ତୃପ୍ୟତାମିଦଂ ଜଳଂ ତସ୍ମୈ ସ୍ୱଧା ନମଃ ।

ଅମୁକସଗୋତ୍ରାୟ ଅସ୍ମନ୍ମାତାମହାୟ ଅମୁକଦେବଶର୍ମଣେ ।

ଅମୁକସଗୋତ୍ରୋଽସ୍ମତ୍‌ପ୍ରମାତାମହଃ ଅମୁକଦେବଶର୍ମା।

ତୃପ୍ୟତାମିଦଂ ସତିଲଂ ଜଳଂ ତସ୍ମୈ ସ୍ୱଧା ନମଃ ।

ଅମୁକସଗୋତ୍ରାୟ ଅସ୍ମତ୍‌ପ୍ରମାତାମହାୟ ଅମୁକଦେବଶର୍ମଣେ ।

ଅମୁକସଗୋତ୍ରୋଽସ୍ମଦ୍‌ବୃଦ୍ଧପ୍ରମାତାମହଃ ଅମୁକଦେବଶର୍ମା।

**ତୃପ୍ୟତାମିଦଂ ସତିଳଂ ଜଳଂ ତସ୍ମୈ ସ୍ୱଧା ନମଃ ।**

**ଅମୁକସଗୋତ୍ରାୟ ଅସ୍ମଦ୍‌ବୃଦ୍ଧପ୍ରମାତାମହାୟ ଅମୁକଦେବଶର୍ମଣେ ।**

ଏହାପରେ ସମୂହଭାବରେ ମାତାମହ-ପ୍ରମାତାମହ-ବୃଦ୍ଧପ୍ରମାତାମହଙ୍କୁ ତିନୋଟି ଅଞ୍ଜଳି ଦେଇ ତିନିଥର ନିମ୍ନ ମନ୍ତ୍ର ପାଠ କରିବ । ମନ୍ତ୍ର ଯଥା -

**ଅସ୍ମନ୍ମାତାମହ-ପ୍ରମାତାମହ-ବୃଦ୍ଧପ୍ରମାତାମହାଃ**
**ଅମୁକଦେବ-ଅମୁକଦେବ-ଅମୁକଦେବଶର୍ମାଣସ୍ତୃପ୍ୟଧ୍ୱମ୍,**
**ଇଦଂ ସତିଳଂ ଜଳଂ ତେଭ୍ୟ ସ୍ୱଧା ନମଃ ।**

ଏହାପରେ ପିତୃବ୍ୟ-ପିତୃବ୍ୟପତ୍ନୀ (ବାପାଙ୍କ ବଡ଼ଭାଇ, ସାନଭାଇ, ଉଭୟଙ୍କ ପତ୍ନୀ) ଜ୍ୟେଷ୍ଠଭ୍ରାତା, ମାତୁଳ, ମାତୁଳାନୀ, ଗୁରୁ, ଗୁରୁପତ୍ନୀ, ଶ୍ୱଶୁର, ଶାଶୁ, ବନ୍ଧୁ, ବାନ୍ଧବଙ୍କ ଉଦ୍ଦେଶ୍ୟରେ ପ୍ରତ୍ୟେକଙ୍କୁ ଏକ ଏକ ଅଞ୍ଜଳି ତର୍ପଣ କରିବ । ଏହାପରେ ସବ୍ୟ ହୋଇ ପୂର୍ବାଭିମୁଖରେ ସିଧା ବସି କୁଶମାନଙ୍କ ଅଗ୍ରଭାଗ ପୂର୍ବଦିଗକୁ କରି ନିମ୍ନ ମନ୍ତ୍ରମାନଙ୍କୁ ପାଠ କରି ଦେବତୀର୍ଥରେ ଜଳତର୍ପଣ କରିବ । ମନ୍ତ୍ର ଯଥା -

**ଦେବାସୁରାସ୍ତଥା ନାଗା ଗନ୍ଧର୍ବା ଯକ୍ଷରାକ୍ଷସାଃ ।**
**ପିଶାଚା ଗୁହ୍ୟକାଃ ସିଦ୍ଧାଃ କୁଷ୍ମାଣ୍ଡାସ୍ତରବଃ ଖଗାଃ ।।**
**ଜଳେଚରା ଭୂନିଳୟା ବାୟ୍ୱାଧାରାଶ୍ଚ ଜନ୍ତବଃ ।**
**ତୃପ୍ତିମେତେ ପ୍ରୟାନ୍ତ୍ୟାଶୁ ମଦ୍ଦତ୍ତେନାମ୍ବୁନାଖିଳାଃ ।।**

ଏହାପରେ ଅପସବ୍ୟ ହୋଇ ତିଳସହିତ ନିମ୍ନ ମନ୍ତ୍ରରେ ପିତୃତୀର୍ଥରେ ଏକାଞ୍ଜଳି ପ୍ରଦାନ କରିବ । ମନ୍ତ୍ର ଯଥା -

**ନରକେଷୁ ସମସ୍ତେଷୁ ଯାତନାସୁ ଚ ଯେ ସ୍ଥିତାଃ ।**
**ତେଷାମାପ୍ୟାୟନାୟୈତଦ୍ଦୀୟତେ ସଲିଳଂ ମୟା ।।**

ପୁନର୍ବାର ନିମ୍ନ ମନ୍ତ୍ର ପଢି ପିତୃତୀର୍ଥରେ ଏକାଞ୍ଜଳି ପ୍ରଦାନ କରିବ । ମନ୍ତ୍ର ଯଥା -

ଓଁ ଯେଽବାନ୍ଧବା ବାନ୍ଧବାଶ୍ଚ ଯେଽନ୍ୟଜନ୍ମନି ବାନ୍ଧବାଃ ।
ତେ ତୃପ୍ତିମଖିଳାଂ ଯାନ୍ତୁ ଯେ ଚାସ୍ମତ୍ତୋୟକାଙ୍କ୍ଷିଣଃ ॥
(ପଦ୍ମ, ପୃ, ୧-୨୦-୧୬୯, ୧୭୦)

ଯେ ମେ କୁଳେ ଲୁପ୍ତପିଣ୍ଡାଃ ପୁତ୍ରଦାରବିବର୍ଜିତାଃ ।
ତେଷାଂ ହି ଦତ୍ତମକ୍ଷୟ୍ୟମିଦମସ୍ତୁ ତିଳୋଦକମ୍ ॥
ଅତୀତକୁଳକୋଟୀନାଂ ସପ୍ତଦ୍ୱୀପନିବାସିନାଂ ।
ଆବ୍ରହ୍ମଭୁବନାଲ୍ଲୋକାଦିଦମସ୍ତୁ ତିଳୋଦକମ୍ ॥
ଆବ୍ରହ୍ମସ୍ତମ୍ବପର୍ଯ୍ୟନ୍ତଂ ଦେବର୍ଷିପିତୃମାନବାଃ ।
ମୟା ଦତ୍ତେନ ତୋୟେନ ତୃପ୍ୟତାଂ ଭୁବନତ୍ରୟମ୍ ॥

ସବ୍ୟ ହୋଇ ଅକ୍ଷତ ଜଳମିଶ୍ରିତ ତର୍ପଣ କରି ଉପର୍ଯ୍ୟୁକ୍ତ ମନ୍ତ୍ର ପାଠ କରିବ ।

## ବସ୍ତ୍ରନିଷ୍ପୀଡନମ୍ -

ଏହାପରେ ତର୍ପଣପାତ୍ରସ୍ଥ କୁଶ ଓ ଆବାହନ କୁଶମାନଙ୍କୁ ମିଶାଇ ତା ଉପରେ ସ୍ଥଳଭାଗରେ ବସ୍ତ୍ରନିଷ୍ପୀଡନୋଦକ ଦେଇ ନିମ୍ନ ମନ୍ତ୍ର ପାଠ କରିବ ।

ଯେ ଚ ଚାସ୍ମତ୍କୁଳେ ଜାତା ଅପୁତ୍ରାଃ ଗୋତ୍ରିଣୋ ମୃତାଃ ।
ତେ ଗୃହ୍ଣନ୍ତୁ ମୟା ଦତ୍ତଂ ବସ୍ତ୍ରନିଷ୍ପୀଡିତୋଦକମ୍ ॥ ଇତି ॥

## ଭୀଷ୍ମତର୍ପଣମ୍ -

ଏହାପରେ ଅପସବ୍ୟରେ ପିତୃତୀର୍ଥରେ ଭୀଷ୍ମପିତାମହଙ୍କୁ କୁଶଦ୍ୱାରା ନିମ୍ନ ମନ୍ତ୍ର ପାଠ କରି ତିନି ଅଞ୍ଜଳି ଜଳ ତର୍ପଣ କରିବ । ମନ୍ତ୍ର ଯଥା -

**ବୈୟାଘ୍ରପଦ୍ୟଗୋତ୍ରାୟ ସାଂକୃତିପ୍ରବରାୟ ଚ ।**
**ଅପୁତ୍ରାୟ ଦଦାମ୍ୟେତଦ୍ ସଲିଳଂ ଭୀଷ୍ମବର୍ମଣେ ॥**

**ନମସ୍କାରମନ୍ତ୍ର -**

**ଭୀଷ୍ମ ଶାନ୍ତନବୋ ବୀରଃ ସତ୍ୟବାଦୀ ଜିତେନ୍ଦ୍ରିୟଃ ।**
**ଆଭିରଦ୍‌ଭିରବାପ୍ନୋତୁ ପୁତ୍ରପୌତ୍ରୋଚିତାଂ କ୍ରିୟାମ୍ ॥ ଇତି ॥**

ସ୍ନାନଭେଦ ମଧ୍ୟରୁ ବାରୁଣ ସ୍ନାନ ପ୍ରଶସ୍ତ ଅଟେ । ବାରୁଣସ୍ନାନ କରିବାକୁ ଅସମର୍ଥ ହେଲେ କପିଳସ୍ନାନ ପ୍ରଭୃତି କରି ମଧ୍ୟ ଏହି ତର୍ପଣ ବିଧି ଅନୁଷ୍ଠାନ କରିବ । ତାପରେ ସବ୍ୟ ଓ ସୂର୍ଯ୍ୟାଭିମୁଖ ହୋଇ ଦ୍ୱିରାଚମନ କରି ଋଷ୍ୟାଦି ଓ ଅଙ୍ଗନ୍ୟାସ-କରନ୍ୟାସ ସହିତ ଯଥାଶକ୍ତି ଗାୟତ୍ରୀମନ୍ତ୍ର ଜପ କରିବ । ତା ପରେ ଜଳରେ ବା ସ୍ଥଳରେ ଅଷ୍ଟଦଳପଦ୍ମ ନିର୍ମାଣ କରି 'ଓଁ ହଂସଃ ଶୁଚିଷଦ୍ ବସୁରନ୍ତରିକ୍ଷ ସଦ୍ଧୋତା ବେଦିଷଦତିଥିର୍ଦୁରୋଣସତ୍ । ନୃଷଦ୍ ବରସଦୃତସଦ୍ ବ୍ୟୋମସଦବ୍‌ଜା ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍' । ଏହି ମନ୍ତ୍ର ପାଠ କରି 'ଓଁ ହଂସଃ ସୂର୍ଯ୍ୟାୟ ସ୍ୱାହା' ଏହି ମନ୍ତ୍ରରେ ସୂର୍ଯ୍ୟାର୍ଘ୍ୟ ଦେବ । ଏହାପରେ ନିମ୍ନ ମନ୍ତ୍ରରେ ସୂର୍ଯ୍ୟ ନମସ୍କାର କରିବ ।

**ସୂର୍ଯ୍ୟନମସ୍କାରମନ୍ତ୍ରଃ -**

**ଓଁ ନମସ୍ତେ ବିଷ୍ଣୁରୂପାୟ ନମସ୍ତେ ବ୍ରହ୍ମରୂପିଣେ ।**
**ସହସ୍ରରଶ୍ମୟେ ନିତ୍ୟଂ ନମସ୍ତେ ସର୍ବତେଜସେ ॥**
**ନମସ୍ତେ ରୁଦ୍ରବପୁଷେ ନମସ୍ତେ ଭକ୍ତବତ୍ସଳ ।**
**ଜଗତ୍‌ସ୍ୱାମିନ୍ନମସ୍ତେଽସ୍ତୁ ଦିବ୍ୟଚନ୍ଦନରୂପଧୃକ୍ ॥**
**ପଦ୍ମନାଭ ନମସ୍ତେଽସ୍ତୁ କୁଣ୍ଡଳାଙ୍ଗଦଭୂଷିତ ।**
**ନମସ୍ତେ ସର୍ବଲୋକେଶ ସୁପ୍ତାନାଂ ସମ୍ପ୍ରବୋଧକ ॥**

ସୁକୃତଂ ଦୁଷ୍କୃତଂ ଚୈବ ସର୍ବଂ ପଶ୍ୟସି ସର୍ବଦା ।
ସତ୍ୟଦେବ ନମସ୍ତେଽସ୍ତୁ ପ୍ରସୀଦ ମମ ଭାସ୍କର ।
ଦିବାକର ନମସ୍ତେଽସ୍ତୁ ପ୍ରଭାକର ନମୋଽସ୍ତୁ ତେ ॥

ସୂର୍ଯ୍ୟପ୍ରଦକ୍ଷିଣବିଧିଃ -

ଯାନି କାନି ଚ ପାପାନି ଜନ୍ମାନ୍ତରକୃତାନି ଚ ।
ତାନି ନିତ୍ୟଂ ପ୍ରଣଶ୍ୟନ୍ତି ପ୍ରଦକ୍ଷିଣଂ ପଦେ ପଦେ ॥

ସୂର୍ଯ୍ୟପ୍ରଦକ୍ଷିଣମନ୍ତ୍ରଃ -

ଓଁ ନମଃ ସବିତ୍ରେ ଜଗଦେକଚକ୍ଷୁଷେ
ଜଗତ୍ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ
ବିରଞ୍ଚିନାରାୟଣଶଙ୍କରାତ୍ମନେ ॥

ସୂର୍ଯ୍ୟନମସ୍କାରଫଳମ୍ -

ଆଦିତ୍ୟସ୍ୟ ନମସ୍କାରଂ ଯେ କୁର୍ବନ୍ତି ଦିନେ ଦିନେ ।
ଜନ୍ମାନ୍ତରସହସ୍ରେଷୁ ଦାରିଦ୍ର୍ୟଂ ନୋପଜାୟତେ ॥ ଇତି ॥

ତର୍ପଣବିଧିଃ ସମାପ୍ତଃ ॥

## ବୈଶ୍ୱଦେବବିଧିଃ

ଭୂମିରେ ଚତୁଷ୍କୋଣ ମଣ୍ଡଳ କରି ତାର ମଧ୍ୟଭାଗରେ ଗୋଟିଏ ରେଖା ପକାଇ ପଶ୍ଚିମଦିଗର ରେଖାମୂଳରେ ଗୋଟିଏ ପାତ୍ର, ଉତ୍ତରଦିଗରେ ତିନୋଟି ପାତ୍ର, ଦକ୍ଷିଣଦିଗରେ ତିନୋଟି ପାତ୍ର ସ୍ଥାପନ କରି ସେହି ପାତ୍ରମାନଙ୍କରେ ଅନ୍ନବ୍ୟଞ୍ଜନପ୍ରଭୃତି ପରିବେଷଣ କରିବ । ମଣ୍ଡଳର ସମ୍ମୁଖଭାଗରେ ପୂର୍ବାଭିମୁଖ ହୋଇ ନିଜେ ବସିବ ।

କର୍ତ୍ତା ହସ୍ତପାଦ ପ୍ରକ୍ଷାଳନ କରି ବଟୁ ଧାରଣ କରି ବୈଶ୍ୱଦେବ କରାଯିବା ସ୍ଥାନରେ ଦ୍ୱିରାଚମନପୂର୍ବକ ଉପବେଶନ କରିବେ । ମଣ୍ଡଳର ଉର୍ଦ୍ଧ୍ୱଭାଗରେ ପଞ୍ଚ ଭୂସଂସ୍କାରପୂର୍ବକ ଅଗ୍ନି ସ୍ଥାପନ କରିବେ । ପଞ୍ଚ ଭୂସଂସ୍କାର ଯଥା -

କୁଶତ୍ରୟଂ, ଗୋମୟଂ, ବଜ୍ରାଭାବେ ପୁନଃ କୁଶତ୍ରୟଂ, ଉଦକପାତ୍ରଂ ଏହା କହି ତିନିଗୋଟି କୁଶ, ଗୋବର, ପୁଣି ତିନିଗୋଟି କୁଶ ଓ ଜଳପାତ୍ର ସ୍ଥାପନ କରିବେ । ବୈଶ୍ୱଦେବମଣ୍ଡଳର ପୂର୍ବକୁ ଅଗ୍ନିସ୍ଥାନରେ (ପ୍ରଥମ କୁଶତ୍ରୟେଣ ଅଙ୍ଗୁଷ୍ଠତର୍ଜନୀଭ୍ୟାଂ ପରିସମୂହ୍ୟ, ପରିସମୂହ୍ୟ, ପରିସମୂହ୍ୟ) ପ୍ରଥମ ୩ଟି କୁଶରେ ଅଙ୍ଗୁଷ୍ଠ ଓ ତର୍ଜନୀ ଅଙ୍ଗୁଳିରେ ସେହି ସ୍ଥାନଟିକୁ ତିନିଥର ଓଳାଇ ଦେବ । ତାପରେ ଗୋବରରେ ଅଙ୍ଗୁଷ୍ଠ ଓ ମଧ୍ୟମାଙ୍ଗୁଳିରେ (ଗୋମୟେନ ଅଙ୍ଗୁଷ୍ଠମଧ୍ୟମାଭ୍ୟାମୁପଲିପ୍ୟ, ଉପଲିପ୍ୟ, ଉପଲିପ୍ୟ) ଜଳ ମିଶାଇ ଲିପିଦେବ । ତା ପରେ ଆଉ ୩ଟି କୁଶରେ (ଅପର କୁଶତ୍ରୟେଣ ଅଙ୍ଗୁଷ୍ଠାନାମିକାଭ୍ୟାମ୍ ଉଲ୍ଲିଖ୍ୟ) ବୃଦ୍ଧାଙ୍ଗୁଳି ଓ ଅନାମିକାଙ୍ଗୁଳି ଦ୍ୱାରା ତିନିଥର ସେହି ସ୍ଥାନ ଖୋଳିବା ଭଳି କରିବେ । ତା ପରେ ସେହି ଖୋଳାଯାଇଥିବା ସ୍ଥାନରୁ ବୃଦ୍ଧାଙ୍ଗୁଳି ଓ କନିଷ୍ଠାଙ୍ଗୁଳି ସାହାଯ୍ୟରେ (ଅଙ୍ଗୁଷ୍ଠକନିଷ୍ଠାଭ୍ୟାମୁଦ୍ଧୃତ୍ୟ ଉଦ୍ଧୃତ୍ୟ, ଉଦ୍ଧୃତ୍ୟ) ମାଟି ଉଠାଇ ଦେବେ । ତା ପରେ ଜଳ ସାହାଯ୍ୟରେ ସବୁ ଅଙ୍ଗୁଳି ଦ୍ୱାରା ଅଭ୍ୟୁକ୍ଷଣ ବା ଜଳସେଚନ (ଜଳେନ ସର୍ବାଙ୍ଗୁଳିଭିଃ ଅଭ୍ୟୁକ୍ଷ୍ୟ, ଅଭ୍ୟୁକ୍ଷ୍ୟ, ଅଭ୍ୟୁକ୍ଷ୍ୟ) କରିବେ । ଏହିପରି ସେ ସ୍ଥାନ ନିର୍ମଳ କରି ଜଳ ସିଞ୍ଚିବା ପର୍ଯ୍ୟନ୍ତ କର୍ମକୁ ପଞ୍ଚଭୂସଂସ୍କାର କୁହାଯାଏ ।

ଏହାପରେ ନିମ୍ନ ମନ୍ତ୍ର ପଢି ସେଠାରେ ଅଗ୍ନିଙ୍କୁ ରଖି ପର୍ଯ୍ୟୁକ୍ଷଣ କରିବ । ହାତରେ ପାଣି ରଖି ଅଗ୍ନିଙ୍କ ଚାରିପାଖେ ବୁଲାଇ ପକାଇବ ।

**ପର୍ଯ୍ୟୁକ୍ଷଣମନ୍ତ୍ରଃ -**

**ଓଁ ଏଷୋ ହ ଦେବଃ ପ୍ରଦିଶୋଽନୁ ସର୍ବାଃ**
**ପୂର୍ବୋ ହ ଜାତଃ ସ ଉ ଗର୍ଭେ ଅନ୍ତଃ ।**
**ସ ଏବ ଜାତଃ ସ ଜନିଷ୍ୟମାଣଃ**
**ପ୍ରତ୍ୟଙ୍ଜନାସ୍ତିଷ୍ଠତି ସର୍ବତୋମୁଖଃ ।।** (ଯଜୁ.୩୨/୪)

ତାପରେ ନିମ୍ନମନ୍ତ୍ରରେ ଅଗ୍ନିଙ୍କୁ ଆବାହନ କରିବ । ମନ୍ତ୍ର ଯଥା -

**ଦଧୀଚିଗୋତ୍ରଂ, ଘୃତକଲ୍ଲୋଳପ୍ରବରଃ, ପାବକନାମାଗ୍ନୟେ ନମଃ ।**
**ପାବକନାମାଗ୍ନିମାବାହୟାମି । ପାବକନାମାଗ୍ନେ ଅତ୍ରାଗଚ୍ଛ ।**

ଏହାପରେ ବୈଶ୍ୱଦେବମଣ୍ଡଳର ପଶ୍ଚିମଦିଗରେ ରଖାଯାଇଥିବା ବଳିପତ୍ରରୁ ଅନ୍ନ ପ୍ରଭୃତି ଆଣି ଦେବତୀର୍ଥରେ ଅଗ୍ନିରେ ପଞ୍ଚାହୁତି ହୋମ କରିବ । ଯଥା -

୧) **ଓଁ ବ୍ରହ୍ମଣେ ସ୍ୱାହା, ଏହା କହି ଅନ୍ନ ଆହୁତି ଦେଇ, ଇଦଂ ବ୍ରହ୍ମଣେ ଏହା କହିବ ।**
୨) **ଓଁ ପ୍ରଜାପତୟେ ସ୍ୱାହା, ଇଦଂ ପ୍ରଜାପତୟେ ।** (ପୂର୍ବପରି)
୩) **ଓଁ ଗୃହ୍ୟେଭ୍ୟଃ ସ୍ୱାହା, ଇଦଂ ଗୃହ୍ୟେଭ୍ୟଃ ।** (ପୂର୍ବପରି)
୪) **ଓଁ କଶ୍ୟପାୟ ସ୍ୱାହା, ଇଦଂ କଶ୍ୟପାୟ ।** (ପୂର୍ବପରି)
୫) **ଓଁ ଅନୁମତୟେ ସ୍ୱାହା, ଇଦମନୁମତୟେ ।** (ପୂର୍ବପରି)

।। ଇତି ଦେବଯଜ୍ଞଃ ।।

ଏହାପରେ ବଳିପତ୍ରରେ ଥିବା ଅବଶିଷ୍ଟ ଅନ୍ନରୁ ବୈଶ୍ୱଦେବମଣ୍ଡଳରେ ଚିତ୍ର ଅନୁସାରେ ସଂଙ୍ଖ୍ୟାକ୍ରମରେ ଜଳଧାରପୂର୍ବକ ଭୂତବଳିଦାନ କରିବ ।

## ଭୂତଯଜ୍ଞଃ

ମଣ୍ଡଳମଧ୍ୟରେ -

୧) ଓଁ ପର୍ଜ୍ଜନ୍ୟାୟ ନମଃ ଇଦଂ ପର୍ଜ୍ଜନ୍ୟାୟ ।

୨) ଓଁ ଅଦ୍‌ଭ୍ୟୋ ନମଃ ଇଦମଦ୍‌ଭ୍ୟଃ ।

୩) ଓଁ ପୃଥିବ୍ୟୈ ନମଃ ଇଦଂ ପୃଥିବ୍ୟୈ ।

ମଣ୍ଡଳର ଦକ୍ଷିଣଭାଗରେ -

୪) ଓଁ ଧାତ୍ରେ ନମଃ ଇଦଂ ଧାତ୍ରେ ।

୫) ଓଁ ବିଧାତ୍ରେ ନମଃ ଇଦଂ ବିଧାତ୍ରେ ।

ବାୟବ୍ୟାଦି ଚତୁଷ୍କୋଣରେ -

୬) ଓଁ ବାୟବେ ନମଃ ଇଦଂ ବାୟବେ ।

୭) ଓଁ ଈଶାନାୟ ନମଃ ଇଦମୀଶାନାୟ ।

୮) ଓଁ ଅଗ୍ନୟେ ନମଃ ଇଦମଗ୍ନୟେ ।

୯) ଓଁ ନୈରତାୟ ନମଃ ଇଦଂ ନୈରତାୟ ।

ପୂର୍ବାଦିକ୍ରମରେ ଚାରିଦିଗରେ -

୧୦) ଓଁ ପ୍ରାଚ୍ୟୈ ଦିଶେ ନମଃ ଇଦଂ ପ୍ରାଚ୍ୟୈ ଦିଶେ ।

୧୧) ଓଁ ଦକ୍ଷିଣାୟୈ ଦିଶେ ନମଃ, ଇଦଂ ଦକ୍ଷିଣାୟୈ ଦିଶେ ।

୧୨) ଓଁ ପ୍ରତୀଚ୍ୟୈ ଦିଶେ ନମଃ, ଇଦଂ ପ୍ରତୀଚ୍ୟୈ ଦିଶେ ।

୧୩) ଓଁ ଉଦୀଚ୍ୟୈ ଦିଶେ ନମଃ, ଇଦମ୍ ଉଦୀଚ୍ୟୈ ଦିଶେ ।।

ମଧ୍ୟଭାଗରେ -

୧୪) ଓଁ ବ୍ରହ୍ମଣେ ନମଃ, ଇଦଂ ବ୍ରହ୍ମଣେ ।

୧୫) ଓଁ ଅନ୍ତରିକ୍ଷାୟ ନମଃ, ଇଦମନ୍ତରିକ୍ଷାୟ ।

୧୬) ଓଁ ସୂର୍ଯ୍ୟାୟ ନମଃ, ଇଦଂ ସୂର୍ଯ୍ୟାୟ ।

ମଣ୍ଡଳର ଉତ୍ତରଭାଗରେ -

୧୭) ଓଁ ବିଶ୍ୱେଭ୍ୟୋ ନମଃ, ଇଦଂ ବିଶ୍ୱେଭ୍ୟଃ ।

୧୮) ଓଁ ବିଶ୍ୱେଭ୍ୟୋ ଦେବେଭ୍ୟୋ ନମଃ,
ଇଦଂ ବିଶ୍ୱେଭ୍ୟୋ ଦେବେଭ୍ୟଃ ।

୧୯) ଓଁ ବିଶ୍ୱେଭ୍ୟୋ ଭୂତେଭ୍ୟୋ ନମଃ,
ଇଦଂ ବିଶ୍ୱେଭ୍ୟୋ ଭୂତେଭ୍ୟଃ ।

୨୦) ଓଁ ଉଷସେ ନମଃ ଇଦମୁଷସେ ।

୨୧) ଓଁ ଭୂତାନାଞ୍ଚ ପତୟେ ନମଃ ଇଦଂ ଭୂତାନାଞ୍ଚ
ପତୟେ ।

୨୨) ଓଁ ସନକାଦି ସପ୍ତମନୁଷ୍ୟେଭ୍ୟୋ ନମଃ ।
ଇଦଂ ସନକାଦି ସପ୍ତମନୁଷ୍ୟେଭ୍ୟଃ ।

୨୩) ଓଁ ପିତୃଭ୍ୟୋ ସ୍ୱଧା ନମଃ । ଇଦଂ ପିତୃଭ୍ୟଃ ।

ଏହାପରେ ଅପସବ୍ୟ ଓ ଦକ୍ଷିଣାଭିମୁଖ ହୋଇ ଜଳତିଳମୋଟକଗନ୍ଧପୁଷ୍ପ ଧାରଣ କରି ପିତୃତୀର୍ଥରେ 'ଓଁ ପିତୃଭ୍ୟଃ ସ୍ୱଧା ନମଃ, ଇଦଂ ପିତୃଭ୍ୟଃ' ପିତୃପତ୍ର ସମୀପ ଭୂମିରେ ବଳି ଦେବ । ଏହାପରେ ମୂଳବଳିପତ୍ରର ଅବଶିଷ୍ଟ ଅନ୍ନକୁ ହସ୍ତରେ ଗ୍ରହଣ କରି ସେହି ବଳିପତ୍ରକୁ ପାଣି ଛଡାଇ ଅଧୋମୁଖ କରିବେ । ବାକ୍ୟ ଯଥା -

'ଯକ୍ଷ୍ମୈତତ୍ତେ ନିର୍ଣ୍ଣେଜନଂ ନମଃ, ଇଦଂ ଯକ୍ଷ୍ମଣେ'

॥ ଇତି ଭୂତଯଜ୍ଞଃ ॥

## ଋଷିଯଜ୍ଞଃ

'ଏହାପରେ ଯଜ୍ଞୋପବୀତକୁ କଣ୍ଠାବଲମ୍ବିତ କରି ଓ ଉତ୍ତରାଭିମୁଖ ହୋଇ କୁଶ-ଅକ୍ଷତ-ଗନ୍ଧ-ପୁଷ୍ପ-ଜଳ ଗ୍ରହଣ କରି ନିମ୍ନ ବାକ୍ୟ ପାଠ କରି ପ୍ରଜାପତି ତୀର୍ଥରେ ଉତ୍ସର୍ଗ କରିବ । ବାକ୍ୟ ଯଥା -

**ଓଁ ସନକାଦ୍ୟାଃ ସପ୍ତଋଷୟଃ ଇଦମନ୍ନାଦିକଂ ଯଥାବିଭାଗଂ ଯୁଷ୍ମଭ୍ୟଂ ହନ୍ତ । ଇଦଂ ସନକାଦି ସପ୍ତ ମନୁଷ୍ୟେଭ୍ୟଃ ।।**

।। ଇତି ଋଷିଯଜ୍ଞଃ ।।

## ପିତୃଯଜ୍ଞଃ

ଏହାପରେ ଅପସବ୍ୟ ଓ ଦକ୍ଷିଣାଭିମୁଖ ହୋଇ ଜଳତିଳମୋଟକଗନ୍ଧପୁଷ୍ପ ଗ୍ରହଣ କରି ପିତୃତୀର୍ଥରେ ପିତୃପତ୍ରରେ ନିମ୍ନ ବାକ୍ୟ ପାଠ କରି ପାଣି ଛଡାଇବ । ବାକ୍ୟ ଯଥା -

**ଓଁ ଅମୁକସଗୋତ୍ର ଅସ୍ମତ୍‌ପିତଃ ଅମୁକଦେବଶର୍ମନ୍ ଇଦମନ୍ନାଦିକଂ, ଓଁ ଅମୁକସଗୋତ୍ର ଅସ୍ମତ୍‌ପିତାମହଃ ଅମୁକଦେବଶର୍ମନ୍ ଇଦମନ୍ନାଦିକଂ, ଓଁ ଅମୁକସଗୋତ୍ର ଅସ୍ମତ୍ ପ୍ରପିତାମହଃ ଅମୁକଦେବଶର୍ମନ୍ ଇଦମନ୍ନାଦିକଂ, ଯଥାବିଭାଗଂ ଯୁଷ୍ମଭ୍ୟଂ ସ୍ୱଧା ନମଃ ।**

**ଇଦମସ୍ମତ୍‌ପିତ୍ରେ ଅମୁକଦେବଶର୍ମଣେ,**
**ଇଦମସ୍ମତ୍‌ପିତାମହାୟ ଅମୁକଦେବଶର୍ମଣେ,**
**ଇଦମସ୍ମତ୍ ପ୍ରପିତାମହାୟ ଅମୁକଦେବଶର୍ମଣେ ।**

ଓଁ ଅମୁକସଗୋତ୍ର ଅସ୍ମନ୍ମାତାମହ ଅମୁକଦେବଶର୍ମନ୍ ଇଦମନ୍ନାଦିକଂ,
ଅମୁକସଗୋତ୍ର ଅସ୍ମତ୍ପ୍ରମାତାମହ ଅମୁକଦେବଶର୍ମନ୍ ଇଦମନ୍ନାଦିକଂ,
ଅମୁକସଗୋତ୍ର ଅସ୍ମଦ୍‌ବୃଦ୍ଧପ୍ରମାତାମହ ଅମୁକଦେବଶର୍ମନ୍ ଇଦମନ୍ନାଦିକଂ,
ଯଥାବିଭାଗଂ ଯୁଷ୍ମଭ୍ୟଂ ସ୍ୱଧା ନମଃ ।
ଇଦମସ୍ମନ୍ ମାତାମହାୟ ଅମୁକଦେବଶର୍ମଣେ,
ଇଦମସ୍ମତ୍ପ୍ରମାତାମହାୟ ଅମୁକଦେବଶର୍ମଣେ,
ଇଦମସ୍ମଦ୍‌ବୃଦ୍ଧପ୍ରମାତାମହାୟ ଅମୁକଦେବଶର୍ମଣେ ।

ଏହିପରି ପୁନର୍ବାର ଜଳତିଳମୋଟକଗନ୍ଧପୁଷ୍ପ ଗ୍ରହଣ କରି ଷାଟ୍‌ପୁରୁଷିକ ପତ୍ରକୁ ନିମ୍ନ ବାକ୍ୟ ପାଠ କରି ପାଣି ଛଡାଇବ । ବାକ୍ୟ ଯଥା -

ଅମୁକସଗୋତ୍ରାଃ ଅସ୍ମତ୍‌ପିତୃ-ପିତାମହ-ପ୍ରପିତାମହାଃ ଅମୁକଦେବ-ଅମୁକଦେବ-ଅମୁକଦେବଶର୍ମାଣଃ ଅମୁକସଗୋତ୍ରାଃ ଅସ୍ମନ୍ମାତାମହ-ପ୍ରମାତାମହ-ବୃଦ୍ଧପ୍ରମାତାମହାଃ ଅମୁକଦେବ-ଅମୁକଦେବ - ଅମୁକଦେବଶର୍ମାଣଃ ଇଦଂ ଷଟ୍‌ପୁରୁଷାତ୍ମକଂ ଘୃତାଦ୍ୟୁପକରଣସହିତଂ ମାତାମହ-ପ୍ରମାତାମହ-ବୃଦ୍ଧପ୍ରମାତାମହେଭ୍ୟଃ ।

॥ ଇତି ପିତୃଯଜ୍ଞଃ ॥

## ନୃଯଜ୍ଞଃ

ଏହାପରେ ଯଜ୍ଞୋପବୀତକୁ ସବ୍ୟ କରି ପୂର୍ବାଭିମୁଖ ହୋଇ କୁଶ ଓ ଜଳ ଧରି ନିମ୍ନ ବାକ୍ୟରେ ଅତିଥିପତ୍ରକୁ ଦେବତୀର୍ଥରେ ପାଣି ଛଡାଇବ । ବାକ୍ୟ ଯଥା-

**ଓଁ ଅତିଥି ବ୍ରାହ୍ମଣେଭ୍ୟୋ ନମଃ । ଓଁ ଭଗବତଃ ଶ୍ରୀବାସୁଦେବସ୍ୟ ପ୍ରୀତୟେ ଅତିଥି ବ୍ରାହ୍ମଣେଭ୍ୟଃ ସ୍ୱ ଇଦମାନ୍ନାଦିକଂ ଯଥାବିଭାଗଂ ଯୁଷ୍ମଭ୍ୟଂ ସ୍ୱାହା । ଇଦମତିଥି ବ୍ରାହ୍ମଣେଭ୍ୟଃ ।**

**।। ଇତି ନୃଯଜ୍ଞଃ ।।**

## ଶ୍ୱକାକବାୟସବଳି

ଏହାପରେ ବାହ୍ୟବଳିପାତ୍ରରୁ ଅନ୍ନ ଗ୍ରହଣ କରି ଗୃହର ବାହାରକୁ ଆସି ପୂର୍ବଦିଗରେ ପଶ୍ଚିମକୁ ସବ୍ୟ ହୋଇ 'ଓଁ ବ୍ରହ୍ମଣେ ନମଃ' କହି ଭୂମିରେ ଜଳଧାରା ଦେବ । ଓ ତାପରେ

**ଓଁ ଯେ ଭୂତା ଅତିଥିରୂପା ପିଶାଚା ରାକ୍ଷସା ଗ୍ରହାଃ ।**
**ତେ ଗୃହ୍ଣନ୍ତୁ ମୟା ଦତ୍ତଂ ଶ୍ୱାନଚାଣ୍ଡାଳବାୟସାଃ ।।**
**ଓଁ ଶ୍ୱଭ୍ୟୋ ନମଃ, ଶ୍ୱପଚେଭ୍ୟୋ ନମଃ, ବାୟସେଭ୍ୟୋ ନମଃ ।**
**ଇଦଂ ଶ୍ୱଭ୍ୟଃ ଶ୍ୱପଚେଭ୍ୟୋ ବାୟସେଭ୍ୟଃ ।।**

ଏହା କହି ସେହି ଅନ୍ନକୁ ତିନି ଭାଗରେ ପୂର୍ବରୁ ପଶ୍ଚିମକୁ ଦେବ । ଓ ତା ଉପରେ ଜଳ ଦେବ । ଏହି କାକବାୟସବଳି ଦାନ କରି ମୁହଁ, ଗୋଡ ଓ ହାତ ଧୋଇ ଦ୍ୱିରାଚମନ କରିବ ।। ଇତି ।।

# ବୈଶ୍ୱଦେବମଣ୍ଡଳ




୦ ବଳି ଓ ଯକ୍ଷ ପତ୍ର

# ବୈଶ୍ୱଦେବକାରିକା

ରେଖାସ୍ତିସ୍ରୋ ଭୁବି ଚୋର୍ଦ୍ଧ୍ୱଗାସ୍ତ
ତିର୍ଯ୍ୟକ୍ ତଥା ସୂ୍ୟର୍ବସୁକୋଣକଞ୍ଚ ।
କୋଣାର୍ଦ୍ଧଭାଗୋର୍ଦ୍ଧ୍ୱଗତେ ଦ୍ୱିରେଖେ
ଲିଖେଦିଦଂ ଭୂତବଳେସ୍ତୁ ବିଘ୍ନମ୍ ।। ୧ ।।
ଗୃହାଭ୍ୟନ୍ତରେ ପାକଶାଳାଗ୍ନିକୋଣେ
ଲିଖେନ୍ମଣ୍ଡଳଂ ତଣ୍ଡୁଳାନାଂ ରଜୋଭିଃ ।
ନିଧାୟ ଜ୍ୱଳତ୍ପାବକାଖ୍ୟଂ ଚ ବହ୍ନିଂ
ତତଃ ସମ୍ମୁଖୀକୃତ୍ୟ ମନ୍ତ୍ରୋଦକୈସ୍ତୁ ।। ୨ ।।
ବ୍ରହ୍ମା ପ୍ରଜାପତିଶ୍ଚୈବ କଶ୍ୟପୋ ଗୁହ୍ୟକସ୍ତଥା ।
ହୋତବ୍ୟୋଽନୁମତିସ୍ତତ୍ର ଦେବଯଜ୍ଞେ ବିଦୁର୍ବୁଧାଃ ।। ୩ ।।
ପର୍ଜନ୍ୟାଦିତ୍ରୟଂ ମଧ୍ୟେ ଧାତ୍ରାଦୀ ଦ୍ୱୌ ଚ ଦକ୍ଷିଣେ ।
ବାୟୁଂ ଚୈବ ଚତୁଷ୍କୋଣେ ଦିକ୍ଷୁ ପ୍ରାଚ୍ୟାଦିକାଂସ୍ତଥା ।। ୪ ।।
ବ୍ରହ୍ମାଦିତ୍ରିତୟଂ ମଧ୍ୟେ ବିଶ୍ୱାଦୀଂସ୍ତ୍ରୀଂସ୍ତଦୁତ୍ତରେ ।
ତଦୁତ୍ତରେ ଚୋକ୍ଷସାଦୀନ୍ ପିତୃଭ୍ୟୋ ନୈର୍ଋତେ ବଳିମ୍ ।। ୫ ।।
ଅନ୍ନାବଶିଷ୍ଟଂ ତୋୟଂ ଚ ଦଦ୍ୟାତ୍ତୁ ପାତ୍ରପୃଷ୍ଠକେ ।
ମନୁଷ୍ୟାଦୀଂସ୍ତୁ ପିତ୍ରାଦୀନ୍ ମାତୃମାତାମହାଦିକଂ ।
ଅତିଥି ବ୍ରାହ୍ମଣାଦୀଂସ୍ତୁ ଦଦ୍ୟାଦ୍ ବାହ୍ୟବଳିଂ ତତଃ ।। ୬ ।।

# ଆଶୀର୍ବାଦମନ୍ତ୍ରାଃ

## (ଋଗ୍‌ବେଦୀୟ)

ବର ଆଶୀର୍ବାଦମନ୍ତ୍ର -

ଓଁ ବୃହସ୍ପତେ ସବିତର୍ବୋଧୟୈନଂ
ସଂଶିତଂ ଚିତ୍‌ସନ୍ତରାଂ ସଂଶିଶାଧି ।
ବର୍ଦ୍ଧୟୈନଂ ମହତେ ସୌଭଗାୟ
ବିଶ୍ୱ ଏନମନୁମଦନ୍ତୁ ଦେବାଃ ॥

କନ୍ୟା ଆଶୀର୍ବାଦମନ୍ତ୍ର -

ଶ୍ରିୟେ ଜାତଃ ଶ୍ରିୟ ଆନିରିୟାୟ ଶ୍ରିୟଂ
ବୟୋଜରିତୃଭ୍ୟୋ ଦଧାତି ।
ଶ୍ରିୟଂ ବସାନା ଅମୃତତ୍ୱମାୟନ୍
ଭବନ୍ତି ସତ୍ୟା ସମି ଆମିତଦ୍ରୌ ॥ (୭-୪-୪)

## ଯଜୁର୍ବେଦୀୟ

ବ୍ରହ୍ମଚାରୀ ଆଶୀର୍ବାଦମନ୍ତ୍ର (ଉପନୟନରେ)

ଓଁ ବ୍ରତେନ ଦୀକ୍ଷାମାପ୍ନୋତି ଦୀକ୍ଷୟାଽଽପ୍ନୋତି ଦକ୍ଷିଣାମ୍ ।
ଦକ୍ଷିଣା ଶ୍ରଦ୍ଧାମାପ୍ନୋତି ଶ୍ରଦ୍ଧୟା ସତ୍ୟମାପ୍ୟତେ ॥

ବର ଆଶୀର୍ବାଦମନ୍ତ୍ର -

ଓଁ ବୃହସ୍ପତେ ସବିତର୍ବୋଧୟୈନଂ
ସଂଶିତଂ ଚିତ୍‌ସନ୍ତରାଂ ସଂଶିଶାଧି ।
ବର୍ଦ୍ଧୟୈନଂ ମହତେ ସୌଭଗାୟ
ବିଶ୍ୱ ଏନମନୁମଦନ୍ତୁ ଦେବାଃ ॥

କନ୍ୟା ଆଶୀର୍ବାଦମନ୍ତ୍ର -

ଓଁ ଶ୍ରୀଶ୍ଚ ତେ ଲକ୍ଷ୍ମୀଶ୍ଚ ପତ୍ନ୍ୟାବହୋରାତ୍ରେ
ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତମ୍ ।
ଇଷ୍ଣନ୍ନିଷାଣ ମୁମ୍ମଇଷାଣ ସର୍ବଲୋକ ମ୍ମଇଷାଣ ।।

ସାଧାରଣ ଆଶୀର୍ବାଦମନ୍ତ୍ର -

ଓଁ ଆୟୁଷ୍ୟଂ ବର୍ଚ୍ଚସ୍ୟଂ ଚ ରାୟସ୍ପୋଷମୌଦ୍ଭିଦମ୍ ।
ଇଦଂ ହିରଣ୍ୟଂ ବର୍ଚ୍ଚସ୍ୟଂ ଜୈତ୍ରାୟା ବିଶତାଦୁମାମ୍ ।।
ନ ତଦ୍ରକ୍ଷାଂସି ନ ପିଶାଚାସ୍ତରନ୍ତି ।
ଦେବାନାମୋଜଃ ପ୍ରଥମଜ ଇହ୍ୟେତତ୍ ।
ଯୋ ବିଭର୍ତ୍ତି ଦାକ୍ଷାୟଣଂ ହିରଣ୍ୟଂ,
ସ ଦେବେଷୁ କୃଣୁତେ ଦୀର୍ଘମାୟୁଃ ।
ସ ମନୁଷ୍ୟେଷୁ କୃଣୁତେ ଦୀର୍ଘମାୟୁଃ ।।
ଦୀର୍ଘାୟୁତ୍ୱାୟ ବଳାୟ ବର୍ଚ୍ଚସେ ।
ସୁପ୍ରଜାସ୍ତ୍ୱଥ ତ୍ୱଂ ଜୀବ ଶରଦଃ ଶତଂ ଦୀର୍ଘାୟୁତ୍ୱମ୍ ।।

ରାଜା ଆଶୀର୍ବାଦ ମନ୍ତ୍ର -

ଓଁ ଉପଶ୍ୱାସୟ ପୃଥିବୀମୁତଦ୍ୟାଂ
ପୁରୁତ୍ରାତେ ମନୁତାଂ ବିଷ୍ଠିତଂ ଜଗତ୍ ।
ସଦ୍ଦୁନ୍ଦୁଭେ ସଜୁରିନ୍ଦ୍ରେଣ ଦେବୈ-
ର୍ଦୂରାଦ୍ୟବୀୟୋ ଅପସେଧ ଶତ୍ରୂନ୍ ।।

ଅକ୍ଷତଦାନମନ୍ତ୍ର - (ପୁରୁଷମାନଙ୍କ ପାଇଁ)

ବେଦୋକ୍ତମନ୍ତ୍ରାର୍ଥାଃ (ବେଦାର୍ଥାଃ, ମନ୍ତ୍ରାର୍ଥାଃ ବା ଇତି ପାଠାନ୍ତରଂ)
ସିଦ୍ଧୟଃ ସନ୍ତୁ । ପୂର୍ଣ୍ଣା ସନ୍ତୁ ମନୋରଥାଃ ।

ଶତ୍ରୂଣାଂ ବୃଦ୍ଧିନାଶୋଽସ୍ତୁ ମିତ୍ରାଣାମୁଦୟସ୍ତବ ॥
ଅବ୍ୟାଧିନା ଶରୀରେଣ ମନସା ଚ ନିରାଧିନା ।
ପୂରୟନ୍ନର୍ଥିନାମାଶାସ୍ତ୍ୱଂ ଜୀବ ଶରଦାଂ ଶତମ୍ ॥
ଦୀର୍ଘାୟୁରପ୍ରତିହତବଳବୀର୍ଯ୍ୟସମନ୍ୱିତଃ ।
ପୁତ୍ରପୌତ୍ରଧନୈଶ୍ୱର୍ଯ୍ୟଯୁକ୍ତୋ ଭବ ନରୋତ୍ତମ ॥
ଧନଂ ଧାନ୍ୟଂ ଧରାଂ ଧର୍ମଂ କୀର୍ତ୍ତିମାୟୁର୍ଯଶଃ ଶ୍ରିୟମ୍ ।
ତୁରଗାନ୍ ଦନ୍ତିନଃ ପୁତ୍ରାନ୍ ମହାଲକ୍ଷ୍ମୀଃ ପ୍ରଯଚ୍ଛତୁ ॥
ସ୍ୱସ୍ତ୍ୟସ୍ତୁ ତେ, କୁଶଳମସ୍ତୁ, ଚିରାୟୁରସ୍ତୁ, ଗୋହସ୍ତିବାଜି-
ଧନଧାନ୍ୟସମୃଦ୍ଧିରସ୍ତୁ, ଐଶ୍ୱର୍ଯ୍ୟମସ୍ତୁ, ବିଜୟୋଽସ୍ତୁ ,
ରିପୁକ୍ଷୟୋଽସ୍ତୁ, ସୌଭାଗ୍ୟମସ୍ତୁ, ସତତଂ ହରିଭକ୍ତିରସ୍ତୁ,
ଶ୍ରୀମନ୍ନୀଳାଚଳସ୍ଥୋ ଭଗବାନ୍ ନାରାୟଣଃ ସୁପ୍ରସନ୍ନୋ
ବରଦୋଽସ୍ତୁ., ଶ୍ରୀସଦାଶିବଃ ସଦା ଶିବଂ ବିତନୋତୁ ।
ଇଷ୍ଟାଦେବୀ ସୁପ୍ରସନ୍ନା ବରଦାଽସ୍ତୁ । ସ୍କନ୍ଧୟୋର୍ଲକ୍ଷ୍ମୀରନପାୟିନୀ
ଭବତ୍ତୁ, ବଜ୍ରଶରୀରମସ୍ତୁ । ସର୍ବେ ମନୋରଥାଃ ପୂର୍ଣ୍ଣାଃ ଭବନ୍ତୁ,
ସର୍ବେ ଗ୍ରହାଃ ଏକାଦଶସ୍ଥାଃ ଫଳଦାଃ ଭବନ୍ତୁ, ସର୍ବେ ଶତ୍ରବଃ
ପାଦାଶ୍ରିତାଃ ଭବନ୍ତୁ । ସର୍ବତ୍ର ଜୟୋଽସ୍ତୁ ।
ଅଷ୍ଟୋତ୍ତରଶତସମ୍ବତ୍ସରଜୀବିତୋଽସ୍ତୁ ।
ମାର୍କଣ୍ଡେୟପ୍ରସାଦାଚ୍ଚିରାୟୁରସ୍ତୁ ॥

ସ୍ତ୍ରୀମାନଙ୍କ ପାଇଁ -

ସୁଲକ୍ଷଣା ସୌଭାଗ୍ୟବତୀ ଭବ ।
ଜୀବଦ୍‌ଭର୍ତ୍ତୃକା ପୁତ୍ରବତୀ ଭବ ।

## ସାମବେଦୀୟ

### ବ୍ରହ୍ମଚାରୀ ଆଶୀର୍ବାଦମନ୍ତ୍ର -

ଜରା ବୋଧୀୟଂ ଭବତ୍ୟନ୍ନାଦ୍ୟସ୍ୟାବରୁଦ୍ଧ୍ୟୈ
ଅନ୍ନଂ ବୈ ଜରାବୋଧୀୟଂ ମୁଖଂ ଗାୟତ୍ରୀ ।
ମୁଖଂ ଏବ ତଦନ୍ନଂ ଧତ୍ତେଽନ୍ନମତ୍ତି
ଅନ୍ନାଦୋ ଭବତି ଯ ଏବଂ ବେଦ ।। (ତାଣ୍ଡ୍ୟ ୧୪/୫/୨୬)

### ବର ଆଶୀର୍ବାଦମନ୍ତ୍ର -

ମାନୋ ଅଗ୍ନେ ମହାଧନେ ପରାବର୍ଗ
ଭାରଭୃଦ୍ୟଥା ସଂବର୍ଗଂ ସଂରୟିଂ ଜୟ ।। (ଉତ୍ତରା. ୮/୧)

### କନ୍ୟା ଆଶୀର୍ବାଦମନ୍ତ୍ର -

ପବସ୍ୱ ବାଜସାତୟେ ପବିତ୍ରେ ଧାରୟାସୁତଃ ।
ଇନ୍ଦ୍ରାୟ ସୋମବିଷ୍ଣବେ ଦେବେଭ୍ୟୋ ମଧୁମତ୍ତରଃ ।
(ପୂର୍ବା. ୬/୧୩)

ବସନ୍ତ ଇନ୍ନୁରନ୍ତ୍ୟୋ ଗ୍ରୀଷ୍ମ ଇନ୍ନୁରନ୍ତ୍ୟଃ ।
ବର୍ଷାଣ୍ୟନୁଶରଦୋ ହେମନ୍ତଃ ଶିଶିରନ୍ନୁରନ୍ତ୍ୟଃ ।।
(ତାଣ୍ଡ୍ୟ ୬/୧୫/୬)

ସମ୍ବତ୍ସରୋ ବୈ ବ୍ରତଂ ତସ୍ୟ ବସନ୍ତ ଋତୁର୍ମୁଖଂ ଗ୍ରୀଷ୍ମଶ୍ଚ ବର୍ଷାଶ୍ଚ ପକ୍ଷୌ ଶରନ୍ମଧ୍ୟଂ ହେମନ୍ତଃ ପୁଚ୍ଛଂ ତସ୍ମାଦ୍ ଶରଦମୋଷଧୟୋଽଭିସଂପଚ୍ୟନ୍ତେ ଶରଦ୍‌ବିମଧ୍ୟଂ ସମ୍ବତ୍ସରସ୍ୟ ଅକୃତଂ ବା ଏତେ କୁର୍ବନ୍ତି ଯେ ପୁରା ସଂବତ୍ସରାତ୍ ବ୍ରତମୁପୟନ୍ତି ଏତଦ୍ ବୈ ବ୍ରତମାପ୍ତଂ ତଦ୍ ପଞ୍ଚରାତ୍ରେ ପଞ୍ଚ ହ୍ୟେତବଃ । ଆପ୍ତେନ ବ୍ରତେନ ସ୍ତୁତେ ସର୍ବମାୟୁରେତି ଯ ଏବଂ ବେଦ ।

## ଅଥର୍ବବେଦୀୟ

**ବାଳକ ଆଶୀର୍ବାଦମନ୍ତ୍ର -**

ଓଁ ଶତଂ ଜୀବ ଶରଦୋ ବର୍ଦ୍ଧମାନଃ
ଶତଂ ହେମନ୍ତାନ୍ ଶତମୁ ବସନ୍ତାନ୍ ।
ଶତମିନ୍ଦ୍ରାଗ୍ନୀ ସବିତା ବୃହସ୍ପତିଃ
ଶତାୟୁଷା ହବିଷା ହାର୍ଷମେନମ୍ ॥

**କନ୍ୟା ଆଶୀର୍ବାଦମନ୍ତ୍ର -**

ଓଁ ଅର୍ଯମଣଂ ଯଜାମହେ । ସୁବନ୍ଧୁଂ ପତିବେଦନମ୍ ।
ଉର୍ବାରୁକମିବ ବନ୍ଧନାତ୍ ପ୍ରେତୋ ମୁଞ୍ଚାମି ନାମୁତଃ ॥
ପ୍ରେତୋ ମୁଞ୍ଚାମି ନାମୃତଃ ସୁବଦ୍ଧା ନମୁତସ୍କରାମ୍ ।
ଯଥେୟମିନ୍ଦ୍ରମୀଢ୍ୱାଃ ସୁପୁତ୍ରା ସୁଭଗା ସତି ॥

**ବ୍ରହ୍ମଚାରୀ ଆଶୀର୍ବାଦମନ୍ତ୍ର -**

ଓଁ ବ୍ରତାନୁବ୍ରତପତୟେ ଉପାକରୋମ୍ୟଗ୍ନୟେ ।
ସମେଦ୍ଧ୍ୟମ୍ନଂ ବୃହଦ୍ୟଶୋ ଦୀର୍ଘମାୟୁଷ୍କୃଣୋତୁ ମେ ॥

**ବର ଆଶୀର୍ବାଦମନ୍ତ୍ର -**

ଓଁ ଇହୈବ ସ୍ତଂ ମା ବିଯୌଷ୍ଟ ବିଶ୍ୱମାୟୁର୍ବ୍ୟଶ୍ନୁତଂ ।
କ୍ରୀଡନ୍ତୌ ପୁତ୍ରୈର୍ନପ୍ତୃଭିର୍ମୋଦମାନୈଃ ସ୍ୱସ୍ତକୌ ॥

**ନବବଧୂ-ଆଶୀର୍ବାଦମନ୍ତ୍ର -**

ଓଁ ଅଭିକାଣ୍ଡା ବୃଦ୍ଧଗର୍ଭାରିଷ୍ଟା ବୀରସୂରିୟମ୍ ।
ବିଜାୟତାଂ ପ୍ରଜାୟତାଂ ବହ୍ୱୀଂ ଭବତୁ ପୁତ୍ରିଣୀ ॥

ବରକନ୍ୟା ଆଶୀର୍ବାଦମନ୍ତ୍ର -

ଓଁ ଇହେ ମାବିନ୍ଦ୍ର ସଂନୁଦ ଚକ୍ରବାକେବ ଦମ୍ପତୀ ।
ପ୍ରଜୟୈନୌ ସ୍ୱସ୍ତକୌ ବିଶ୍ୱମାୟୁର୍ବ୍ୟଶ୍ନୁତାମ୍ ।।

ବ୍ରାହ୍ମଣ ଆଶୀର୍ବାଦମନ୍ତ୍ର -

ଓଁ ସହସ୍ରାକ୍ଷେଣ ଶତବୀର୍ୟେଣ ଶତାୟୁଷା ହବିଷା ହାର୍ଷମେନମ୍ ।
ଇନ୍ଦ୍ରୋ ଯଥୈନଂ ଜରସେ ନୟାତ୍ୟତି ବିଶ୍ୱସ୍ୟ ଦୁରିତସ୍ୟ ପାରମ୍ ।।
ଶତଂ ଜୀବ ଶରଦୋ ବର୍ଦ୍ଧମାନଃ ଶତଂ ହେମନ୍ତାଂଚ୍ଛତମୁ ବସନ୍ତାନ୍ ।
ଶତମିନ୍ଦ୍ରାଗ୍ନୀ ସବିତା ବୃହସ୍ପତିଃ ଶତାୟୁଷା ହବିଷା ହାର୍ଷମେନମ୍ ।।

ରାଜା ଆଶୀର୍ବାଦମନ୍ତ୍ର -

ଓଁ ଇମମିନ୍ଦ୍ରଂ ବର୍ଦ୍ଧୟ କ୍ଷତ୍ରିୟଂ ମ ଇମଂ
ବିଶାମେକ ବୃଷଂ କୃଣୁତ୍ୱମ୍ ।
ନିରମିତ୍ରା ନକ୍ଷ୍ଣ ହ୍ୟସ୍ୟ ସର୍ବାଂସ୍ତାନ୍
ରନ୍ଧୟାସ୍ମା ଅହମୁତ୍ତରେଷୁ ।।
ଅୟମସ୍ତୁ ଧନପତିର୍ଧନାନାମୟଂ ବିଶାଂ ବିଶ୍‌ପତିରସ୍ତୁ ।
ରାଜା ଅସ୍ମିନ୍ନିନ୍ଦ୍ରମହିବର୍ଚ୍ଚାଂସି ଧେହ୍ୟବର୍ଚ୍ଚସଂ କୃଣୁହି ।।
ଶତ୍ରୁମସ୍ୟ ଏମଂ ଭଜଗ୍ରାମେ ଅଶ୍ୱେଷୁ ଗୋଷୁ ନିଂଷ୍ଟାଂ ।
ଭଜଯୋ ଅମିତ୍ରୋ ଅସ୍ୟ ବର୍ଷ୍ମନ୍ କ୍ଷତ୍ରାଣାମୟମସ୍ତୁ ।।
ରାଜେନ୍ଦ୍ର ଶତ୍ରୁ ରୁନ୍ଧୟ ସର୍ବମସ୍ମୈ ଦ୍ୟାବାପୃଥିବୀ ।
ଭୁରିବାମଂ ଦୁହାଥାଂ ଘର୍ମଦୁଘେ ଇବ ଧେନୁ ଅୟଂ ରାଜା ।।
ପ୍ରିୟମିନ୍ଦ୍ରସ୍ୟ ଭୂଯାତି ପ୍ରିୟୋ ଗବାମୋଷଧୀନାଂ ପଶୂନାମ୍ ।
ଯୁଞ୍ଜମିତ ଉତ୍ତରାବନ୍ତମିନ୍ଦ୍ରଂ ଯେନ ଜୟନ୍ତି ନ ପରାଜୟନ୍ତେ ।।

ଯସ୍ତ୍ୱାକରଦେକବୃଷଂ ଜନାନାମୁତ ରାଜ୍ଞାମୁତ୍ତମଂ ମାନବାନାମ୍ ।
ଉତ୍ତରସ୍ତ୍ୱମଧରେତେ ସପତ୍ନା ଯେ କେ ଚ ରାଜନ୍ ପ୍ରତିଶତ୍ରବସ୍ତେ ।।
(କା ୪/୫/୨୧)

ଶତାୟୁଷଃ ପୁତ୍ରପୌତ୍ରାନ୍ ବୃଣୀଷ୍ୱ ବହୂନ୍ ପଶୂନ୍ ହସ୍ତିହିରଣ୍ୟମଶ୍ୱାନ୍ ।
ଭୂମେର୍ମହଦାୟତନଂ ବୃଣୀଷ୍ୱ ସ୍ୱୟଂ ଚ ଜୀବ ଶରଦୋ ଯାବଦିଚ୍ଛସି ।।

## ଶୂଦ୍ରଙ୍କର ଆଶୀର୍ବାଦମନ୍ତ୍ର -

ଓଁ ଦୀର୍ଘାୟୁତ୍ୱାୟ ବୃହତେ ରଣାୟାରିଷ୍ୟନ୍ତୋ ବକ୍ଷ୍ୟମାଣଂ ସଦୈବ ।
ମଣିଂ ବିଷ୍କନ୍ଦଦୂଷଣଂ ଜଙ୍ଗିଡଂ ବିଭୃମୋ ବୟମ୍ ।
ଜଙ୍ଗିଡୋ ଜମ୍ଭାଦ୍ ବିଶରାଦ୍ ବିଷ୍କନ୍ଧାଦ୍ ଅଭିଶୋଚନାତ୍
ମଣିଃ ସହସ୍ରବୀର୍ଯ୍ୟଃ ପରିଣଃ ପାତୁ ବିଶ୍ୱତଃ ।

## ପ୍ରଥମାଷ୍ଟମ୍ୟାଶୀର୍ବାଦମନ୍ତ୍ରଃ

ଓଁ ପ୍ରଥମା ଦ୍ୱିତୀୟାୟୈ ଦ୍ୱିତୀୟା ତୃତୀୟାୟୈ ତୃତୀୟାଃ ।
ସତ୍ୟେନ ସତ୍ୟଂ, ଯଜ୍ଞେନ ଯଜ୍ଞୋ, ଯଜୁର୍ଭିର୍ଯଜୂଂଷି,
ସାମଭିଃ ସାମାନ୍ୟଗ୍‌ଭି ରୁଚଃ, ପୁରୋନୁବାକ୍ୟାଭିଃ
ପୁରୋଽନୁବାକ୍ୟା, ଯାଜ୍ୟାଭିର୍ଯାଜ୍ୟାଃ, ବଷଟ୍‌କାରୈର୍ବଷଟ୍‌କାରା
ଆହୁତିଭିରାହୁତୟୋ ମେ କାମାନ୍ ସମର୍ଧୟନ୍ତୁ ଭୂଃ ସ୍ୱାହା ।।

## ଆଚମନବିଧି

୧) ପ୍ରତ୍ୟେକ କର୍ମରେ ଆଚମନ କରାଯିବା ଉଚିତ ।

ଏବଂ ସ ବ୍ରାହ୍ମଣୋ ନିତ୍ୟମୁପସ୍ପର୍ଶନମାଚରେତ୍ ।
ବ୍ରହ୍ମାଦିସ୍ତମ୍ବପର୍ଯ୍ୟନ୍ତଂ ଜଗତ୍ ସ ପରିତର୍ପୟେତ୍ ।। (ବ୍ୟାଘ୍ରପାଦଃ)

୨) ଆଚମନବିହୀନ କର୍ମ ନିରର୍ଥକ ହୋଇଥାଏ ।

**ସଃ କ୍ରିୟାଂ କୁରୁତେ ମୋହାଦନାଚମ୍ୟୈବ ନାସ୍ତିକଃ ।**

**ଭବନ୍ତି ହି ବୃଥା ତସ୍ୟ କ୍ରିୟାଃ ସର୍ବା ନ ସଂଶୟଃ ॥** (ପୁରାଣସାରେ)

୩) ପୂର୍ବ ବା ଉତ୍ତରମୁଖ ହୋଇ ବସି କରି ଆଚମନ କରିବା ଉଚିତ । ଦକ୍ଷିଣ ଓ ପଶ୍ଚିମକୁ ମୁହଁ କରି ଆଚମନ ନିଷିଦ୍ଧ । ଦୁଇ ଆଣ୍ଠୁ ମଧ୍ୟରେ ହାତ ରଖି ଆଚମନ କରିବା ଉଚିତ ।

**ଅନ୍ତର୍ଜାନୁଃ ଶୁଚୌ ଦେଶେ ଉପବିଷ୍ଟ ଉଦଙ୍‌ମୁଖଃ ।**

**ପ୍ରାଙ୍ ବା ବ୍ରାହ୍ମେନ ତୀର୍ଥେନ ଦ୍ୱିଜୋ ନିତ୍ୟମୁପସ୍ପୃଶେତ୍ ॥**

(ଯାଜ୍ଞବଲ୍‌କ୍ୟସ୍ମୃତୌ ୧-୧୮)

୪) ବଦ୍ଧକଛ ହେବା ପରେ, ଶିଖାବନ୍ଧନ ପରେ ଓ ଯଜ୍ଞୋପବୀତଗ୍ରହଣ ପରେ ତିନି ବାର ଆଚମନ କରିବା ଉଚିତ ।

**ନିବଦ୍ଧଶିଖକଚ୍ଛସ୍ତୁ ଦ୍ୱିଜ ଆଚମନଂ ଚରେତ୍ ।**

**କୃତ୍ୟୋପବୀତଂ ସବ୍ୟେଂଽସେ ବାଙ୍‌ମନଃକାୟସଂଯତଃ ॥**

(ବୃହତ୍‌ପରାଶରଃ)

୫) ଆଣ୍ଠୁଏ ପାଣିରୁ ଅଧିକ ଥିଲେ ଜଳ ମଧ୍ୟରେ ଠିଆ ହୋଇ ଆଚମନ କରିବ । ଅନ୍ୟତ୍ର ବସି କରି ଆଚମନ କରିବ ।

**ଜାନ୍ୱୋରୂର୍ଦ୍ଧ୍ୱଂ ଜଳେ ତିଷ୍ଠନ୍ନାଚାନ୍ତଃ ଶୁଚିତାମିୟାତ୍ ।**

**ଅଧୋସ୍ତାଚ୍ଛତକୃତ୍ୱୋଽପି ସମାଚାନ୍ତୋ ନ ଶୁଦ୍ଧ୍ୟତି ।** (ବିଷ୍ଣୁସ୍ମୃତୌ)

୬) ଛିଙ୍କିବା ପରେ, ଖଙ୍କାର ପକାଇବା ପରେ, ଶୋଇ କରି ଉଠିବା ପରେ, ବସ୍ତ୍ର ପରିଧାନ କରିବା ପରେ ଓ ଅଶ୍ରୁପାତ ପରେ ଆଚମନ କରିବା ଉଚିତ, ବା ଜଳାଭାବରେ ଦକ୍ଷିଣକର୍ଣ୍ଣକୁ ସ୍ପର୍ଶ କରିବ ।

ପ୍ରମାଣ -**କ୍ଷୁତେ ନିଷ୍ଠୀବନେ ସୁପ୍ତେ ପରିଧାନେଽଶ୍ରୁପାତନେ ।**
**ପଞ୍ଚସ୍ୱେତେଷ୍ଣୁ ଚାଚାମେଚ୍ଛ୍ରୋତ୍ରଂ ବା ଦକ୍ଷିଣଂ ସ୍ପୃଶେତ୍ ॥**
(ଦେବୀଭାଗବତେ, ୧୧-୩-୨)

୭) ଆଚମନ ପାଇଁ ଜଳର ମାତ୍ରା ବ୍ରାହ୍ମଣ ପାଇଁ ହୃଦୟସ୍ପର୍ଶ ପରିମିତ, କ୍ଷତ୍ରିୟ ପାଇଁ କଣ୍ଠସ୍ପର୍ଶ ପରିମିତ, ବୈଶ୍ୟ ପାଇଁ ତାଳୁସ୍ପର୍ଶ ପରିମିତ, ଶୂଦ୍ରପାଇଁ ତଥା ସ୍ତ୍ରୀମାନଙ୍କ ପାଇଁ ଜିହ୍ୱାସ୍ପର୍ଶ ପରିମିତ ହେବା ଉଚିତ ।

ପ୍ରମାଣ -**ହୃତ୍‌କଣ୍ଠତାଳୁଗାଭିସ୍ତୁ ଯଥାସଂଖ୍ୟଂ ଦ୍ୱିଜାତୟଃ ।**
**ଶୁଦ୍ଧ୍ୟେରନ୍ ସ୍ତ୍ରୀ ଚ ଶୂଦ୍ରଶ୍ଚ ସକୃତ୍‌ସ୍ପୃଷ୍ଟାଭିରନ୍ତତଃ ॥**
(ଯାଜ୍ଞବଲ୍‌କ୍ୟସ୍ମୃତୌ ୧-୨୧)

୮) ହାତଗୋଡ ଧୋଇ, ଶିଖାବନ୍ଧନ କରି ଆସନରେ ବସିବ । ବିଷ୍ଣୁସ୍ମରଣପୂର୍ବକ ହାତରେ କୁଶଦ୍ୱୟ ଧାରଣ କରି ବ୍ରାହ୍ମତୀର୍ଥରେ (ବୁଢାଅଙ୍ଗୁଳି ତଳଭାଗରେ) ଆଚମନ କରିବ । ଦକ୍ଷିଣହସ୍ତକୁ ଗୋକର୍ଣ୍ଣ ପରି କରି ଗୋଟିଏ ବିରି ବୁଡିବା ଭଳି ଜଳ ଆଚମନ କରିବ । ସେଥିରୁ କମ୍ ଜଳ ବା ଅଧିକ ଜଳ ହେଲେ ତାହା ରୁଧିର ପାନ ସମାନ ବୋଲି ଜାଣିବ ।

**ପ୍ରକ୍ଷାଲ୍ୟ ପାଣୀ ପାଦୌ ଚ ଶିଖାଂ ବଦ୍ଧ୍ୱା ସୁଖାସନେ ।**
**ହୃଦୟେ ସଂସ୍ମରେଦ୍ ବିଷ୍ଣୁଂ ତତ ଆଚମନଂ ଚରେତ୍ ॥**
**ସପବିତ୍ରେଣ ହସ୍ତେନ କୁର୍ଯ୍ୟାଦାଚମନକ୍ରିୟାମ୍ ।**
**ଗୋକର୍ଣ୍ଣାକୃତିହସ୍ତେନ ମାଷମଗ୍ନଜଳଂ ପିବେତ୍ ॥**
**ତନ୍ନ୍ୟୂନମଧିକଂ ବାପି ପୀତଂ ତଦ୍ରୁଧିରଂ ଭବେତ୍ ॥**

୯) ଦ୍ୱିରାଚମନଂ - 'ଓଁ ବିଷ୍ଣୁଃ' ବୋଲି ୬ଥର କହି ଛଅ ଥର ଆଚମନ କରିବାକୁ ଦ୍ୱିରାଚମନ କୁହାଯାଏ । ଥରେ ଆଚମନ କହିଲେ ତିନିଥର ବୋଲି ବୁଝିବାକୁ ହେବ ।

## ସନ୍ଧ୍ୟାର ସାଧାରଣନିୟମ

୧) ଅହୋରାତ୍ରର ସନ୍ଧିକାଳରେ (ପ୍ରାତଃ, ମଧ୍ୟାହ୍ନ ଓ ସାୟାହ୍ନରେ) ଉପାସନା ବିଶେଷକୁ ସନ୍ଧ୍ୟା କୁହାଯାଏ ।

୨) ସନ୍ଧ୍ୟାନୁଷ୍ଠାନ ସ୍ଥାନବିଶେଷରେ ଫଳ -

**ଗୃହେଷୁ ପ୍ରାକୃତୀ ସନ୍ଧ୍ୟା ଗୋଷ୍ଠେ ଶତଗୁଣା ସ୍ମୃତା ।**
**ନଦୀଷୁ ଶତସାହସ୍ରା ହ୍ୟନନ୍ତା ଶିବସନ୍ନିଧୌ ॥**

(ଗଦାଧରକୃତ - ଆଚାରସାରେ ଯାଜ୍ଞବଲ୍‌କ୍ୟଶାତାତପୌ)

ଘରେ ସନ୍ଧ୍ୟା କଲେ ସାଧାରଣ ଫଳ, ଗୋଗୋଷ୍ଠରେ ସନ୍ଧ୍ୟା କଲେ ଶତଗୁଣ ଫଳ । ନଦୀରେ ସନ୍ଧ୍ୟା କଲେ ଲକ୍ଷଗୁଣ ଫଳ । ଶିବଙ୍କ ନିକଟରେ ଅନନ୍ତଗୁଣ ଫଳପ୍ରାପ୍ତି ହୁଏ ।

୩) ସନ୍ଧ୍ୟାନୁଷ୍ଠାନକାଳନିରୂପଣ -

**ପ୍ରାତଃସନ୍ଧ୍ୟା ସନକ୍ଷତ୍ରା ମଧ୍ୟାହ୍ନେ ମସ୍ତକେ ରବୌ ।**
**ସାୟଂସନ୍ଧ୍ୟା ସମାଖ୍ୟାତା ଅର୍ଦ୍ଧାସ୍ତମିତଭାସ୍କରା ॥**
**ସତାରକୋତ୍ତମା ସନ୍ଧ୍ୟା ମଧ୍ୟମା ଲୁପ୍ତତାରକା ।**
**ସୋଦୟା ହ୍ୟଧମା ସନ୍ଧ୍ୟା ତଦୂର୍ଦ୍ଧ୍ୱମଧମାଧମା ॥**

ପ୍ରାତଃସନ୍ଧ୍ୟା ନକ୍ଷତ୍ର ଥାଉ ଥାଉ କରିବ । ସୂର୍ଯ୍ୟ ମୁଣ୍ଡ ଉପରେ ଥିବା ବେଳେ ମଧ୍ୟାହ୍ନ ସନ୍ଧ୍ୟା କରିବ । ସୂର୍ଯ୍ୟଙ୍କର ଅସ୍ତ ସମୟରେ ସାୟଂସନ୍ଧ୍ୟା

କରିବ । ପ୍ରାତଃସନ୍ଧ୍ୟା ତାରକା ଥାଉ ଥାଉ କରିବା ଉତ୍ତମ । ତାରା ଲୁପ୍ତ ହେବା ପରେ କରିବା ମଧ୍ୟମ । ସୂର୍ଯ୍ୟୋଦୟକାଳିକା ସନ୍ଧ୍ୟା ଅଧମ ଅଟେ । ସୂର୍ଯ୍ୟୋଦୟ ପରେ ସନ୍ଧ୍ୟା ଅତି ଅଧମ ଅଟେ । ଏଥିରେ ପ୍ରାୟଶ୍ଚିତ୍ତାନୁଷ୍ଠାନ ପୂର୍ବକ ସନ୍ଧ୍ୟା କରିବ ।

୪) ସନ୍ଧ୍ୟାକାଳାତିକ୍ରମରେ ପ୍ରାୟଶ୍ଚିତ୍ତ-

**ସନ୍ଧ୍ୟାକାଳେ ବ୍ୟତୀତେ ତୁ ନୈବ ସନ୍ଧ୍ୟାଂ ସମାଚରେତ୍ ।**
**ଗାୟତ୍ରୀଂ ଦଶଧା ଜପ୍ତ୍ୱା ପୁନଃ ସନ୍ଧ୍ୟାଂ ସମାଚରେତ୍ ॥**

ସନ୍ଧ୍ୟାର ପ୍ରକୃତ କାଳ ଅତିକ୍ରାନ୍ତ ହେଲେ ପ୍ରାୟଶ୍ଚିତ୍ତ ରୂପରେ ଦଶବାର ଗାୟତ୍ରୀ ମନ୍ତ୍ର ଜପ କରି ସନ୍ଧ୍ୟା କରିବାକୁ ହୁଏ ।

୫) ସନ୍ଧ୍ୟା ଅକରଣେ ଦୋଷ -

**ସନ୍ଧ୍ୟାହୀନୋଽଶୁଚିର୍ନିତ୍ୟମନର୍ହଃ ସର୍ବକର୍ମସୁ ।**
**ଯଦନ୍ୟତ୍ କୁରୁତେ ନିତ୍ୟଂ ନ ତସ୍ୟ ଫଳଭାଗ୍ ଭବେତ୍ ॥**

ସନ୍ଧ୍ୟା ନ କରିବା ଲୋକ ନିତ୍ୟ ଅଶୁଚି ଓ ସମସ୍ତ କର୍ମ କରିବା ପାଇଁ ଅଯୋଗ୍ୟ ଅଟେ । ସେ ପ୍ରତିଦିନ ଅନ୍ୟ ଯେଉଁ ସବୁ କର୍ମ କରିଥାଏ ତାହା ନିଷ୍ଫଳ ହୋଇଥାଏ ।

**ନିତ୍ୟାନାଂ କର୍ମଣାଂ ନାଶେ ପ୍ରାୟଶ୍ଚିତ୍ତମଭୋଜନମ୍ ।**
(ଆଚାରସାରେ)

ସାମର୍ଥ୍ୟ ଥାଇ କୌଣସି କାରଣବଶତଃ ସନ୍ଧ୍ୟାପ୍ରଭୃତି ନିତ୍ୟକର୍ମ ଅନୁଷ୍ଠାନ ନ କଲେ ପ୍ରାୟଶ୍ଚିତ୍ତଭାବରେ ଉପବାସ କରିବେ ।

୬) ଅଶୌଚସମୟରେ ସନ୍ଧ୍ୟାବିଧାନ -

କ) ବିଦ୍ୟାକର ବାଜପେୟିଙ୍କ ମତରେ ଅଶୌଚ ସମୟରେ ସନ୍ଧ୍ୟା ଅନୁଷ୍ଠାନ ନିଷେଧ ।

ଖ) ଗଦାଧରପଦ୍ଧତି, ଶ୍ରାଦ୍ଧଦୀପ ଓ ନିତ୍ୟାଚାରପ୍ରଦୀପ ମତରେ ଅଶୌଚରେ କେବଳ ଗାୟତ୍ରୀମନ୍ତ୍ର ପାଠ କରି ତିନିଥର ଜଳାଞ୍ଜଳି ଦେବ ଓ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରି ନମସ୍କାର କରିବ ।

ଗ) ପଣ୍ଡିତସର୍ବସ୍ୱମତରେ ଗାୟତ୍ରୀମନ୍ତ୍ର ପାଠ କରି ଜଳାଞ୍ଜଳି ଦେବ ଓ ସୂର୍ଯ୍ୟୋପସ୍ଥାନାଦି କରି ଦଶଥର ଗାୟତ୍ରୀ ମନ୍ତ୍ର ଜପ କରିବ ଏବଂ ସୂର୍ଯ୍ୟଙ୍କୁ ନମସ୍କାର କରିବ ।

ଘ) ନିର୍ଣ୍ଣୟସିନ୍ଧୁମତରେ ସନ୍ଧ୍ୟାମନ୍ତ୍ରଗୁଡ଼ିକୁ କେବଳ ସ୍ମରଣ କରିବ । ଏଠାରେ ପ୍ରତିପାଦିତ ବିଭିନ୍ନ ମତ ମଧ୍ୟରୁ ଦେଶାଚାର ମୁତାବକ ଆଚାର ପାଳନ କରିବା ଆବଶ୍ୟକ ।

## ଋଷ୍ୟାଦିନ୍ୟାସବିଧିଃ

କୌଣସି ମନ୍ତ୍ରର ଋଷ୍ୟାଦିନ୍ୟାସ କରିବାକୁ ହେଲେ ନିମ୍ନବିଧିକୁ ଅନୁସରଣ କରିବା ଉଚିତ ।

'ଅମୁକମନ୍ତ୍ରସ୍ୟ' କହି ଦୁଇହାତ ଯୋଡ଼ିବ ।
'ଅମୁକ ଋଷିଃ' କହି ଶିରରେ ଦକ୍ଷିଣହସ୍ତ ସ୍ପର୍ଶ କରିବ ।
'ଅମୁକଛନ୍ଦଃ' କହି ମୁଖକୁ ଦକ୍ଷିଣହସ୍ତରେ ସ୍ପର୍ଶ କରିବ ।
'ଅମୁକଦେବତା' କହି ହୃଦୟକୁ ଦକ୍ଷିଣହସ୍ତରେ ସ୍ପର୍ଶ କରିବ ।
'ଅମୁକବୀଜମ୍' କହି ନାଭିକୁ ଦକ୍ଷିଣହସ୍ତରେ ସ୍ପର୍ଶ କରିବ ।
'ଅମୁକ ଶକ୍ତିଃ' କହି ମୂଳାଧାରକୁ ଦକ୍ଷିଣହସ୍ତରେ ଦେଖାଇବ ।
'ଅମୁକ କୀଳକମ୍' କହି ସର୍ବାଙ୍ଗକୁ ସ୍ପର୍ଶ କରିବ ।
'ଅମୁକକର୍ମଣି ବିନିଯୋଗଃ' କହି ଦୁଇହାତ ଯୋଡ଼ିବ ।

ସବୁ ମନ୍ତ୍ରର ଋଷ୍ୟାଦିରେ ବୀଜ, ଶକ୍ତି ଓ କୀଳକ ନ ଥାଏ । ତେଣୁ ପ୍ରଯୁଜ୍ୟ ସ୍ଥାନରେ ହିଁ ଏହାର ଉପଯୋଗ କରାଯିବା ଆବଶ୍ୟକ ।

## କରନ୍ୟାସବିଧି -

'ଅଙ୍ଗୁଷ୍ଠାଭ୍ୟାଂ ନମଃ' କହି ଦୁଇହସ୍ତ ବୃଦ୍ଧାଙ୍ଗୁଳିର ମୂଳକୁ (ପ୍ରଥମେ) ଓ ଅଗ୍ରଭାଗକୁ (ତାପରେ) ତର୍ଜନୀଦ୍ୱୟର ଅଗ୍ରଭାଗଦ୍ୱାରା ସ୍ପର୍ଶ କରିବ ।

'ତର୍ଜନୀଭ୍ୟାଂ ସ୍ୱାହା' କହି ବୃଦ୍ଧାଙ୍ଗୁଳି ଦ୍ୱୟର ଅଗ୍ରଭାଗଦ୍ୱାରା ତର୍ଜନୀଦ୍ୱୟର ମୂଳକୁ (ପ୍ରଥମେ) ଓ ଅଗ୍ରଭାଗକୁ (ତାପରେ) ସ୍ପର୍ଶ କରିବ ।

'ମଧ୍ୟମାଭ୍ୟାଂ ବଷଟ୍' କହି ବୃଦ୍ଧାଙ୍ଗୁଳି ଦ୍ୱୟ ଦ୍ୱାରା ମଧ୍ୟମାଙ୍ଗୁଳିଦ୍ୱୟର ମୂଳ ଓ ଅଗ୍ରଭାଗ ସ୍ପର୍ଶ କରିବ ।

'ଅନାମିକାଭ୍ୟାଂ ହୁମ୍' କହି ବୃଦ୍ଧାଙ୍ଗୁଳି ଦ୍ୱୟ ଦ୍ୱାରା ଅନାମିକାଙ୍ଗୁଳିଦ୍ୱୟର ମୂଳ ଓ ଅଗ୍ରଭାଗ ସ୍ପର୍ଶ କରିବ ।

'କନିଷ୍ଠାଭ୍ୟାଂ ବୌଷଟ୍' କହି ବୃଦ୍ଧାଙ୍ଗୁଳି ଦ୍ୱୟ ଦ୍ୱାରା କନିଷ୍ଠାଙ୍ଗୁଳି ଦ୍ୱୟର ମୂଳ ଓ ଅଗ୍ରଭାଗ ସ୍ପର୍ଶ କରିବ ।

'କରତଳକରପୃଷ୍ଠାଭ୍ୟାଂ ଫଟ୍' କହି ବାମକରତଳସହିତ ଦକ୍ଷିଣ କରପୃଷ୍ଠର ସଶବ୍ଦସଂଯୋଗ କରିବ ।

ଏହି ପର୍ଯ୍ୟନ୍ତ କର୍ମକୁ କରନ୍ୟାସ ବୋଲି ଜାଣିବ ।

## ଅଙ୍ଗନ୍ୟାସବିଧି -

'ହୃଦୟାୟ ନମଃ' କହି ହୃଦୟପ୍ରଦେଶକୁ ଦକ୍ଷିଣହାତର ବୃଦ୍ଧାଙ୍ଗୁଳି ସହିତ ତର୍ଜନୀ, ମଧ୍ୟମା ଓ ଅନାମିକା ଅଙ୍ଗୁଳି ଦ୍ୱାରା ସ୍ପର୍ଶ କରିବ ।

'ଶିରସେ ସ୍ୱାହା' କହି ପୂର୍ବୋକ୍ତ ଅଙ୍ଗୁଳି ଚତୁଷ୍ଟୟ ଦ୍ୱାରା ଶିରକୁ ସ୍ପର୍ଶ କରିବ ।

'ଶିଖାୟୈ ବଷଟ୍' କହି ଦକ୍ଷିଣକରବୃଦ୍ଧାଙ୍ଗୁଳି ଦ୍ୱାରା ଶିଖାକୁ ସ୍ପର୍ଶ କରିବ ।

'କବଚାଭ୍ୟାଂ ହୁମ୍' କହି ଦକ୍ଷିଣକରବୃଦ୍ଧାଙ୍ଗୁଳି ଦ୍ୱାରା ମଧ୍ୟମା ଓ ଅନାମିକା ଅଙ୍ଗୁଳିଦ୍ୱୟକୁ ବନ୍ଦ କରି ଅବଶିଷ୍ଟ ତର୍ଜନୀ ଓ କନିଷ୍ଠାଙ୍ଗୁଳିଦ୍ୱୟ ଦ୍ୱାରା ବାମବାହୁମୂଳ ସ୍ପର୍ଶ ଓ ସେହିପରି ବାମହସ୍ତର ତର୍ଜନୀ ଓ କନିଷ୍ଠାଙ୍ଗୁଳିଦ୍ୱୟ ଦ୍ୱାରା ଦକ୍ଷିଣ ବାହୁମୂଳ ସ୍ପର୍ଶ କରିବ ।

'ନେତ୍ରାଭ୍ୟାଂ ବୌଷଟ୍' କହି ଦକ୍ଷିଣ କରର ବୃଦ୍ଧ ଓ ଅନାମିକା ଅଙ୍ଗୁଳି ଦ୍ୱାରା ନେତ୍ରଦ୍ୱୟ ସ୍ପର୍ଶ କରିବ ।

'କରତଳକରପୃଷ୍ଠାଭ୍ୟାମ୍ ଅସ୍ତ୍ରାୟ ଫଟ୍' କହି ପୂର୍ବପରି ବାମହସ୍ତର ତର୍ଜନୀ ଓ ମଧ୍ୟମାଙ୍ଗୁଳି ତଳ ସହିତ ଦକ୍ଷିଣହସ୍ତର ତର୍ଜନୀ ଓ ମଧ୍ୟମାଙ୍ଗୁଳୀ ପୃଷ୍ଠକୁ ସଶବ୍ଦସଂଯୋଗ କରିବ ।

ଏହି ପର୍ଯ୍ୟନ୍ତ କର୍ମକୁ ଅଙ୍ଗନ୍ୟାସ କୁହାଯାଏ ।

## ଜପବିଧି

ଜପ କରିବା ସମୟରେ ମନ୍ତ୍ରକୁ ମନ ମଧ୍ୟରେ ଓ ମନକୁ ମନ୍ତ୍ର ମଧ୍ୟରେ ସ୍ଥାପନ କରିବ । ଜପ ଦୁଇପ୍ରକାର - ୧ ମାନସିକ, ୨ ବାଚନିକ । ମାନସିକ ଜପ ମୋକ୍ଷ ପ୍ରଦାନ କରେ । ବାଚନିକ ଜପ ମାରଣ କର୍ମରେ ପ୍ରସିଦ୍ଧ ଅଟେ । ଅଙ୍ଗୁଳିର ଅଗ୍ରଭାଗରେ ଜପ ନିଷ୍ଫଳ ଅଟେ । ମଧ୍ୟମାଙ୍ଗୁଳିର ମୂଳପର୍ବ ଓ ମଧ୍ୟମପର୍ବରେ ମଧ୍ୟ ଜପ ନିଷ୍ଫଳ ଅଟେ । ଚଞ୍ଚଳ ମନରେ ଜପ କରାଯିବା ମଧ୍ୟ ଅନୁଚିତ ଅଟେ । ଅଙ୍ଗୁଷ୍ଠ ପର୍ବରେ ଜପ କରିବ, ମାତ୍ର ଅଙ୍ଗୁଷ୍ଠ ରେଖାରେ ଜପ କରିବ ନାହିଁ ।

ଜପ ସମୟରେ ଜିହ୍ୱା ଏବଂ ଓଷ୍ଠକୁ ଚାଳନ କରିବ ନାହିଁ । ସିଧା ହୋଇ ବସିବ । ପାର୍ଶ୍ୱକୁ ଚାହିଁବ ନାହିଁ । ପ୍ରାତଃସନ୍ଧ୍ୟାରେ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ରୁଦ୍ରାକ୍ଷ ପ୍ରଭୃତି ମାଳାରେ ଜପ କରିବ । ଯଦି ହାତରେ ସଂଖ୍ୟା ଗଣନା କରି ଜପ କରିବ ତେବେ ଦକ୍ଷିଣ ହସ୍ତର ବୃଦ୍ଧାଙ୍ଗୁଳି ଦ୍ୱାରା ଅନାମିକାର ମଧ୍ୟମପର୍ବଠାରୁ ତଳକୁ, ତାପରେ କନିଷ୍ଠାଙ୍ଗୁଳିର ତଳପର୍ବଠାରୁ ଉପରପର୍ବ ପର୍ଯ୍ୟନ୍ତ, ତାପରେ ଅନାମିକାର ଉପର ପର୍ବ, ମଧ୍ୟମାଙ୍ଗୁଳିର ଉପରପର୍ବ ଓ ତର୍ଜନୀର ଉପରପର୍ବ ଦେଇ ତଳ ପର୍ବ ପର୍ଯ୍ୟନ୍ତ ଜପ କରିବ । ଏପରି ଭାବରେ ଥରେ ଜପ ପୂରଣ କଲେ ଦଶ ସଂଖ୍ୟା ନିଷ୍ପନ୍ନ ହୁଏ ।

ଜପ ତିନି ପ୍ରକାରରେ ବିଭକ୍ତ ହୋଇଥାଏ । ଯଥା - ବାଚିକ, ଉପାଂଶୁ ଓ ମାନସ । ଏଥିରେ ଉତ୍ତରୋତ୍ତର ଶ୍ରେଷ୍ଠ ବୋଲି ମନେ କରାଯାଏ । ଉଦାତ୍ତ, ଅନୁଦାତ୍ତ, ସ୍ୱରିତ, ପଦ, ଅକ୍ଷର ଓ ଶବ୍ଦର ସ୍ପଷ୍ଟ ଉଚ୍ଚାରଣକୁ ବାଚିକ ଜପ କୁହାଯାଏ । ଯେପରି ଜପ କଲେ, ଅନ୍ୟକୁ ଜପ ମନ୍ତ୍ର ବା ଶବ୍ଦ ଶୁଣାଯାଏ ନାହିଁ । ସାମାନ୍ୟତଃ ଓଷ୍ଠର ଚାଳନ କରି ସୂକ୍ଷ୍ମ ଉଚ୍ଚାରଣ ପୂର୍ବକ ମନ୍ତ୍ରଜପକୁ ଉପାଂଶୁଜପ କୁହାଯାଏ ।

ମନ ଓ ବୁଦ୍ଧି ଦ୍ୱାରା ମନ୍ତ୍ରର ବର୍ଣ୍ଣ, ଶବ୍ଦ ଓ ଅର୍ଥକୁ ଚିନ୍ତା କରିବା ହିଁ ମାନସ ଜପ ଅଟେ । ଜପ ସାଧାରଣତଃ ପ୍ରତ୍ୟେକ ସନ୍ଧ୍ୟା ସମୟରେ ୧୦୮ ଥର (ଏକମାଳା) କରିବା ଆବଶ୍ୟକ । ଜପ ସଂଖ୍ୟା ଯେତେ ଅଧିକ ହେବ, ତାର ଅଧିକ ସୁଫଳ ସେତିକି ଜପକର୍ତ୍ତା ପାଇପାରିବେ । ବ୍ରହ୍ମଚାରୀ ଓ ଗୃହସ୍ଥ ନ୍ୟୂନାତିନ୍ୟୂନ ୧୦୮ ବାର ଜପ କରିବା ଉଚିତ । ବାନପ୍ରସ୍ଥ ଓ ସଂନ୍ୟାସୀ ପ୍ରତ୍ୟହ ନ୍ୟୂନାତିନ୍ୟୂନ ୨୦୦୦ରୁ ମଧ୍ୟ ଅଧିକ ଆବଶ୍ୟକ ମନ୍ତ୍ର (ଗାୟତ୍ରୀମନ୍ତ୍ର) ପ୍ରଭୃତି ଜପ କରିବା ଉଚିତ ।

ଜପସିଦ୍ଧିର କେତେକ ଆବଶ୍ୟକୀୟ ଉପାଦାନ ମଧ ରହିଅଛି । ତାହା ହେଲା - ମନର ସନ୍ତୋଷଭାବ, ପବିତ୍ରତା, ମୌନଭାବ, ମନ୍ତ୍ରର ଅର୍ଥ ଚିନ୍ତା କରିବା, ଉଦ୍‌ବେଗ ତଥା ଖେଦ ଜାତ ନ ହେବା । ମନ୍ତ୍ରଜପର ସଂଖ୍ୟା ଗଣନା ଅବଶ୍ୟ କରାଯିବା ଉଚିତ, ଅନ୍ୟଥା ତାହା ଆସୁର ଜପ ବୋଲି କୁହାଯିବ । ଜପନିମିତ୍ତ ରୁଦ୍ରାକ୍ଷ, ତୁଳସୀ ଓ ଚନ୍ଦନର ମାଳା ଗ୍ରହଣ କରାଯାଇଥାଏ ଅଥବା କରମାଳାର ମଧ ଉପଯୋଗ କରାଯାଇଥାଏ । ପ୍ରମାଣ ଯଥା -

ତ୍ରିବିଧୋ ଜପଯଜ୍ଞଃ ସ୍ୟାତ୍ ତସ୍ୟ ଭେଦଂ ନିବୋଧତ ।
ବାଚିକଶ୍ଚ ଉପାଂଶୁଶ୍ଚ ମାନସସ୍ତ୍ରିବିଧଃ ସ୍ମୃତଃ ॥
ତ୍ରୟାଣାଂ ଜପଯଜ୍ଞାନାଂ ଶ୍ରେୟାନ୍ ସ୍ୟାଦୁତ୍ତରୋତ୍ତରଃ ।
(ନରସିଂହପୁରାଣେ)

ଯଦୁଚ୍ଚନୀଚସ୍ୱରିତୈଃ ଶବ୍ଦୈଃ ସ୍ପଷ୍ଟପଦାକ୍ଷରୈଃ ।
ମନ୍ତ୍ରମୁଚ୍ଚାରୟେଦ୍ ବାଚୋ ବାଚିକୋଽୟଂ ଜପଃ ସ୍ମୃତଃ ॥
ଶନୈରୁଚ୍ଚାରୟେନ୍ମନ୍ତ୍ରମୀଷଦୋଷ୍ଠୌ ଚ ଚାଳୟେତ୍ ।
ଅପରୈର୍ନ ଶ୍ରୁତଃ କିଞ୍ଚିତ୍ ସ ଉପାଂଶୁର୍ଜପଃ ସ୍ମୃତଃ ॥
ଧିୟା ଯଦକ୍ଷରଶ୍ରେଣ୍ୟା ବର୍ଣ୍ଣାଦ୍ ବର୍ଣ୍ଣଂ ପଦାଦ୍ ପଦଂ ।
ଶବ୍ଦାର୍ଥଚିନ୍ତନଂ ଭୂପ କଥ୍ୟତେ ମାନସୋ ଜପଃ ॥
(ବିଶ୍ୱାମିତ୍ରକଳ୍ପେ)

ବ୍ରହ୍ମଚାରୀ ଗୃହସ୍ଥଶ୍ଚ ଶତମଷ୍ଟୋତ୍ତରଂ ଜପେତ୍ ।
ବାନପ୍ରସ୍ଥଶ୍ଚ ସଂନ୍ୟସ୍ତୋ ଦ୍ୱିସହସ୍ରାଧିକଂ ଜପେତ୍ ॥
ମନଃସନ୍ତୋଷଣଂ ଶୌଚଂ ମୌନଂ ମନ୍ତ୍ରାର୍ଥଚିନ୍ତନମ୍ ।
ଅବ୍ୟଗ୍ରତ୍ୱମନିର୍ବେଦୋ ଜପସମ୍ପତ୍ତିହେତବଃ ॥ (ବ୍ୟାସସ୍ମୃତୌ)

# ପ୍ରାଣାୟାମବିଧି

ପ୍ରାଣାୟାମଦ୍ୱାରା ପ୍ରାଣଶକ୍ତିର ବିକାଶ ସଂଘଟିତ ହୋଇଥାଏ । ପ୍ରାଣଶକ୍ତିର ଅପଚୟ ଦ୍ୱାରା ପ୍ରାଣୀ ରୋଗ ଓ ଅକାଳମୃତ୍ୟୁମୁଖରେ ପଡିଥାଏ । ପ୍ରାଣାୟାମ ଦ୍ୱାରା ପ୍ରାଣବାୟୁର ନିରୋଧ ହୋଇଥାଏ । ପ୍ରାଣବାୟୁର ନିରୋଧ ଦ୍ୱାରା ପ୍ରାଣଶକ୍ତିର ବିସ୍ତାର (ଆୟାମ) ସମ୍ଭବ ହୁଏ । ଏହି ପ୍ରାଣାୟାମ ଦ୍ୱାରା କ୍ରିୟାଶକ୍ତିର ନିୟନ୍ତ୍ରଣ କରାଯାଇପାରେ । ଏହା ଶିର ଓ ସ୍ନାୟୁମାନଙ୍କରେ ବାୟୁସଞ୍ଚାରରେ ସହାୟକ ହୋଇଥାଏ । ତେଣୁ ଅକାମି ହୋଇପଡିଥିବା ସ୍ନାୟୁମାନଙ୍କୁ ପୁନଃ ସଞ୍ଚାଳନକ୍ଷମ କରାଇବାରେ ପ୍ରାଣାୟାମ ମହୌଷଧି ପରି କାମ କରିଥାଏ ।

ଶାସ୍ତ୍ରାନୁସାରେ ଶରୀରରେ ମନ, ପ୍ରାଣ, ବୀର୍ଯ୍ୟ, ଏହି ତିନୋଟି ପଦାର୍ଥ ପରସ୍ପର ସହିତ ଓତଃପ୍ରୋତ ଭାବରେ ଜଡିତ । ଏଥିରୁ ଯଦି ଗୋଟିଏ ଆୟତ୍ତରେ ରହିପାରି ଥାଏ, ତେବେ ଅନ୍ୟ ଦୁଇଟି ପ୍ରାୟ ଆୟତ୍ତରେ ହୋଇଯାଇଥାନ୍ତି । ତେଣୁ ପ୍ରାଣର ନିୟନ୍ତ୍ରଣରେ ହିଁ ମନ ଓ ବୀର୍ଯ୍ୟର ନିୟନ୍ତ୍ରଣମାର୍ଗ ସୁଗମ ହୋଇଥାଏ । ମନ ନିୟନ୍ତ୍ରଣ ହୋଇ ସ୍ଥିର ହେଲେ ଆଧ୍ୟାତ୍ମିକ ଲାଭ ଓ ବୀର୍ଯ୍ୟର ସ୍ଥିରତାରେ ଲୌକିକ ଓ ପାରଲୌକିକ ଲାଭ ଅବଶ୍ୟ ହୋଇପାରିଥାଏ ।

ଏହି ବିଜ୍ଞାନଯୁଗରେ ମଧ୍ୟ ପ୍ରାଣାୟାମର ମହତ୍ତ୍ୱ ପୂର୍ବପରି ଅକ୍ଷୁର୍ଣ୍ଣ ରହିଅଛି । ଆମ ଶରୀରରେ ଥିବା ୭କୋଟି ରୁ ଅଧିକ ଛିଦ୍ର ବା ରନ୍ଧ୍ରଦ୍ୱାରା ଶରୀରରେ ରକ୍ତ ସଞ୍ଚାଳନ କାମ ନିଷ୍ପନ୍ନ ହୋଇଥାଏ । ପ୍ରାଣାୟାମ କରିବା ଦ୍ୱାରା ଯେଉଁ ବାୟୁ ଶରୀର ମଧ୍ୟକୁ ନିଆଯାଇଥାଏ ତାହା ଅତି କ୍ଷିପ୍ରବେଗରେ ସମସ୍ତ ରନ୍ଧ୍ରରେ ପ୍ରବେଶ କରିଥାଏ ଏବଂ ସେହି ରନ୍ଧ୍ରମାନଙ୍କରେ ଅଟକି

ରହିଥିବା ମଳକୁ ବାହାରକୁ ନେଇ ଆସିଥାଏ ଏବଂ ରକ୍ତସଞ୍ଚାଳନ ମଧ୍ୟ ସ୍ୱାଭାବିକ ହୋଇଥାଏ । ତେଣୁ ନିଜ ଶରୀରର ସର୍ବବିଧ ଉନ୍ନତି ନିମିତ୍ତ ପ୍ରାଣାୟାମ ହିଁ ପ୍ରକୃଷ୍ଟ ପନ୍ଥା ବୋଲି ଗ୍ରହଣ କରିନିଆଯାଇପାରେ ।

ପ୍ରାଣାୟାମ ତିନୋଟି ପର୍ଯ୍ୟାୟରେ ବିଭକ୍ତ । ଯଥା - ପୂରକ, କୁମ୍ଭକ ଓ ରେଚକ । ଏହି ତିନୋଟି ପର୍ଯ୍ୟାୟ ଥରେ ପୂର୍ଣ୍ଣ ହେଲେ ଗୋଟିଏ ଥର ପ୍ରାଣାୟାମ ସିଦ୍ଧ ହେଲା ବୋଲି କୁହାଯାଏ । ଏହି ତିନୋଟି ପର୍ଯ୍ୟାୟର ବିଧାନ ଯଥା -

ପୂରକ - ଦକ୍ଷିଣହସ୍ତର ବୃଦ୍ଧାଙ୍ଗୁଳି ଦ୍ୱାରା ଦକ୍ଷିଣନାକପୁଡ଼ାକୁ ବନ୍ଦ କରି ନାକର ବାମ ପୁଡ଼ାରେ 'ଓଁ ଭୂଃ ଓଁ ଭୁବଃ ଓଁ ସ୍ୱଃ ଓଁ ମହଃ ଓଁ ଜନଃ ଓଁ ତପଃ ଓଁ ସତ୍ୟମ୍ ଓଁ ତତ୍ ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ । ଓଁ ଆପୋଜ୍ୟୋତୀ ରସୋଽମୃତଂ ବ୍ରହ୍ମ ଭୂର୍ଭୁବଃ ସ୍ୱରୋମ୍' ଏହି ମନ୍ତ୍ର ପଢ଼ି ବାୟୁ ଗ୍ରହଣ (ପୂରଣ) କରିବାକୁ ପୂରକ କୁହାଯାଏ । ଏହାର ଅବଧି-୩୨ଥର ପ୍ରଣବ (ଓଁକାର) ଜପ କରିବା ପର୍ଯ୍ୟନ୍ତ । ପୂରକ ସମୟରେ ବିଷ୍ଣୁ ନୀଳୋତ୍ପଳତୁଲ୍ୟ ଶ୍ୟାମବର୍ଣ୍ଣ, ଚତୁର୍ଭୁଜ, ମହାତ୍ମା କେଶବ ମୋର ନାଭିଦେଶରେ ଅଛନ୍ତି ବୋଲି ଚିନ୍ତା କରିବ ।

କୁମ୍ଭକ - ଏହାପରେ ଅଙ୍ଗୁଷ୍ଠଦ୍ୱାରା ଦକ୍ଷିଣନାକପୁଡ଼ାକୁ, ଅନାମିକା ଓ କନିଷ୍ଠାଙ୍ଗୁଳି ଦ୍ୱାରା ବାମନାକପୁଡ଼ାକୁ ବନ୍ଦ କରି ପୂର୍ବୋକ୍ତ ମନ୍ତ୍ର ସ୍ମରଣ କରି ବାୟୁ ରୋଧ କରିବ । ଏହି ବାୟୁର ରୋଧପ୍ରକ୍ରିୟାକୁ କୁମ୍ଭକ କୁହାଯାଏ । ଏହାର ଅବଧି ୬୪ ଥର ପ୍ରଣବ (ଓଁ କାର) ଜପ କରିବା ପର୍ଯ୍ୟନ୍ତ । କୁମ୍ଭକ ସମୟରେ ରକ୍ତଗୌର, ଚତୁର୍ମୁଖ ପଦ୍ମାସନ ବ୍ରହ୍ମା ମୋର ହୃଦୟରେ ବିଦ୍ୟମାନ ବୋଲି ଚିନ୍ତା କରିବ ।

ରେଚକ - ଏହାପରେ ପୂର୍ବୋକ୍ତ ମନ୍ତ୍ର ସ୍ମରଣ କରି ନାକର ଡାହାଣପୁଡ଼ାରୁ ବୃଦ୍ଧାଙ୍ଗୁଳିକୁ ହଟାଇ ଦେଇ ସେହି ନାକପୁଡ଼ାରେ ରୋଧ

କରାଯାଇଥିବା ବାୟୁକୁ ପୂର୍ବୋକ୍ତ ମନ୍ତ୍ର ସ୍ମରଣ ପୂର୍ବକ ଧୀରେ ଧୀରେ ଛାଡିବ । ଏହାକୁ ରେଚକ କୁହାଯାଏ । ଏହାର ଅବଧି- ୧୬ ଥର ପ୍ରଣବ ଜପ କରିବା ପର୍ଯ୍ୟନ୍ତ । ରେଚକରେ ଶୁଦ୍ଧସ୍ଫଟିକତୁଲ୍ୟ କାନ୍ତିଶାଳୀ, ପାପହାରୀ, ତ୍ରିଲୋଚନ ମହାଦେବ ଲଲାଟ ଦେଶରେ ବିଦ୍ୟମାନ ବୋଲି ଭାବନା କରିବ ।

ପୂରକ, କୁମ୍ଭକ ଓ ରେଚକ କ୍ରମରେ ବିଷ୍ଣୁ-ବ୍ରହ୍ମା-ମହେଶ୍ୱରଙ୍କ ଧ୍ୟାନ ଯଥା- **ନୀଲୋତ୍ପଲଦଳଶ୍ୟାମଂ ନାଭିମଧ୍ୟେ ପ୍ରତିଷ୍ଠିତମ୍ ।**

**ଚତୁର୍ଭୂଜଂ ମହାତ୍ମାନଂ ପୂରକେ ତୁ ବିଚିନ୍ତୟେତ୍ ।।**

**କୁମ୍ଭକେ ଚ ହୃଦିସ୍ଥାନେ ଧ୍ୟାୟେଚ୍ଚ କମଳାସନମ୍ ।**

**ବ୍ରହ୍ମାଣଂ ରକ୍ତଗୌରାଙ୍ଗଂ ଚତୁର୍ବକ୍ତ୍ରଂ ପିତାମହମ୍ ।।**

**ରେଚକେ ଚେଶ୍ୱରଂବିଦ୍ୟାତ୍ ଲଲାଟସ୍ଥଂ ତ୍ରିଲୋଚନମ୍ ।**

**ଶୁଦ୍ଧସ୍ଫଟିକସଙ୍କାଶଂ ନିର୍ମ୍ମଳଂ ପାପନାଶନମ୍ ।। ଇତି ।।**

## ଗାୟତ୍ରୀଶାପୋଦ୍ଧାରଃ

ଗାୟତ୍ରୀମନ୍ତ୍ର ବ୍ରହ୍ମା, ବସିଷ୍ଠ, ବିଶ୍ୱାମିତ୍ର ଓ ଶୁକ୍ରଙ୍କ ଦ୍ୱାରା ଶାପଗ୍ରସ୍ତ ଅଟନ୍ତି । ତେଣୁ ସେହି ମନ୍ତ୍ରକୁ ଶାପରୁ ମୁକ୍ତ କରି ପାଠ କରିବା ଉଚିତ । ଅନ୍ୟଥା ଗାୟତ୍ରୀମନ୍ତ୍ରପାଠ ନିଷ୍ଫଳ ହୋଇଥାଏ । ଶାପବିମୋଚନ ପ୍ରକାର ଯଥା -

### ୧) ବ୍ରହ୍ମଶାପବିମୋଚନ

**ବିନିଯୋଗ -**

**ଓଁ ଅସ୍ୟ ଶ୍ରୀବ୍ରହ୍ମଶାପବିମୋଚନମନ୍ତ୍ରସ୍ୟ, ନିଗ୍ରହାନୁଗ୍ରହକର୍ତ୍ତା ବ୍ରହ୍ମା ଋଷିଃ, କାମଦୁଘା ଗାୟତ୍ରୀଛନ୍ଦଃ, ଭୁକ୍ତିମୁକ୍ତିପ୍ରଦା**

ବ୍ରହ୍ମଶାପବିମୋଚନୀ ଗାୟତ୍ରୀଶକ୍ତିର୍ଦ୍ଦେବତା, ବ୍ରହ୍ମଶାପବିମୋଚ-ନାର୍ଥେ ଜପେ ବିନିଯୋଗଃ ।

ମନ୍ତ୍ର -

ଓଁ ଗାୟତ୍ରୀଂ ବ୍ରହ୍ମେତ୍ୟୁପାସୀତ ଯଦ୍ରୂପଂ ବ୍ରହ୍ମବିଦୋ ବିଦୁଃ ।
ତାଂ ପଶ୍ୟନ୍ତି ଧୀରାଃ ସୁମନସୋ ବାଚମଗ୍ରତଃ ।।
ଓଁ ଦେବି ! ଗାୟତ୍ରି ! ତ୍ୱଂ ବ୍ରହ୍ମଶାପାଦ୍ ବିମୁକ୍ତା ଭବ ।।

୨) ବିଶ୍ୱାମିତ୍ରଶାପବିମୋଚନ

ବିନିଯୋଗ -

ଓଁ ଅସ୍ୟ ଶ୍ରୀବିଶ୍ୱାମିତ୍ରଶାପବିମୋଚନମନ୍ତ୍ରସ୍ୟ, ନୂତନସୃଷ୍ଟିକର୍ତ୍ତା ବିଶ୍ୱାମିତ୍ରଋଷିଃ, ବାଗ୍‌ଦେହା ଗାୟତ୍ରୀଛନ୍ଦଃ, ବିଶ୍ୱାମିତ୍ରାନୁଗୃହୀତା ସାବିତ୍ରୀ ଶକ୍ତିର୍ଦ୍ଦେବତା, ବିଶ୍ୱାମିତ୍ରଶାପ-ବିମୋଚନାର୍ଥେ ଜପେ ବିନିଯୋଗଃ ।

ମନ୍ତ୍ର -

ଓଁ ଗାୟତ୍ରୀଂ ଭଜାମ୍ୟଗ୍ନିମୁଖୀଂ ବିଶ୍ୱଗର୍ଭାଂ ଯଦୁଦ୍‌ଭବାମ୍ ।
ଦେବାଶ୍ଚକ୍ରିରେ ବିଶ୍ୱସୃଷ୍ଟିଂ ତାଂ କଲ୍ୟାଣୀମିଷ୍ଟକରୀଂ ପ୍ରପଦ୍ୟେ ।।
ଓଁ ଦେବି ! ଗାୟତ୍ରି ! ତ୍ୱଂ ବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ ।

୩) ବସିଷ୍ଠଶାପବିମୋଚନ

ବିନିଯୋଗ -

ଓଁ ଅସ୍ୟ ଶ୍ରୀବସିଷ୍ଠଶାପବିମୋଚନମନ୍ତ୍ରସ୍ୟ, ଶାପାନୁଗ୍ରହ-କର୍ତ୍ତା ବସିଷ୍ଠ ଋଷିଃ, ବିଶ୍ୱୋଦ୍‌ଭବା ଗାୟତ୍ରୀଛନ୍ଦଃ, ବସିଷ୍ଠାନୁ-

ଗୃହୀତା ସରସ୍ୱତୀଦେବତା, ବସିଷ୍ଠଶାପବିମୋଚନାର୍ଥେ ଜପେ ବିନିଯୋଗଃ ।

ମନ୍ତ୍ର -

ଓଁ ସୋଽହମର୍କମୟଂ ଜ୍ୟୋତିରାତ୍ମଜ୍ୟୋତିରହଂ ଶିବଃ ।
ଆତ୍ମଜ୍ୟୋତିରହଂ ଶୁକ୍ରଃ ସର୍ବଜ୍ୟୋତିରସୋଽସ୍ମ୍ୟହମ୍ ।।
ଓଁ ଦେବି ! ଗାୟତ୍ରି ! ତ୍ୱଂ ବସିଷ୍ଠଶାପାଦ୍ ବିମୁକ୍ତା ଭବ ।

ଏହି ମନ୍ତ୍ରମାନ ପଢି ଯୋନିମୁଦ୍ରା ପ୍ରଦର୍ଶନ କରିବ ।

## ୪) ଶୁକ୍ରଶାପବିମୋଚନ

ବିନିଯୋଗ -

ଓଁ ଅସ୍ୟ ଶ୍ରୀଶୁକ୍ରଶାପବିମୋଚନମନ୍ତ୍ରସ୍ୟ, ଶ୍ରୀଶୁକ୍ରଋଷିଃ, ଅନୁଷ୍ଟୁପ୍ଛନ୍ଦଃ, ଦେବୀ ଗାୟତ୍ରୀ ଦେବତା, ଶୁକ୍ରଶାପବିମୋଚନାର୍ଥେ ଜପେ ବିନିଯୋଗଃ ।

ମନ୍ତ୍ର -

ଓଁ ସୋଽହମର୍କମୟଂ ଜ୍ୟୋତିରର୍କଜ୍ୟୋତିରହଂ ଶିବଃ ।
ଆତ୍ମଜ୍ୟୋତିରହଂ ଶୁକ୍ରଃ ସର୍ବଜ୍ୟୋତୀରସୋଽସ୍ମ୍ୟହମ୍ ।।
ଓଁ ଦେବି ! ଗାୟତ୍ରି ! ତ୍ୱଂ ଶୁକ୍ରଶାପାଦ୍ ବିମୁକ୍ତା ଭବ ।

ପ୍ରାର୍ଥନା -

ଓଁ ଅହୋ ଦେବି ମହାଦେବି ସନ୍ଧ୍ୟେ ବିଦ୍ୟେ ସରସ୍ୱତି ।
ଅଜରେ ଅମରେ ଚୈବ ବ୍ରହ୍ମଯୋନିର୍ନମୋଽସ୍ତୁ ତେ ।।

ଏହା ପାଠ କରି ପୁନର୍ବାର ଯୋନିମୁଦ୍ରା ପ୍ରଦର୍ଶନ କରିବ । ଏହାପରେ ନିମ୍ନ ବାକ୍ୟ ପାଠ କରିବ । ଓଁ ଦେବି ଗାୟତ୍ରି ! ତ୍ୱଂ ବ୍ରହ୍ମଶାପାଦ୍

ବିମୁକ୍ତା ଭବ, ବିଶ୍ୱାମିତ୍ରଶାପାଦ୍ ବିମୁକ୍ତା ଭବ, ବସିଷ୍ଠଶାପାଦ୍ ବିମୁକ୍ତା ଭବ, ଶୁକ୍ରଶାପାଦ୍ ବିମୁକ୍ତା ଭବ ।

## ମତାନ୍ତରେ

## ଗାୟତ୍ରୀଶାପବିମୋଚନ

### ୧) ବ୍ରହ୍ମଶାପବିମୋଚନ

ବିନିଯୋଗ -

ଓଁ ଅସ୍ୟ ଶ୍ରୀବ୍ରହ୍ମଶାପବିମୋଚନମନ୍ତ୍ରସ୍ୟ, ବ୍ରହ୍ମାଋଷିଃ, କାମଦୁଘା ଗାୟତ୍ରୀ ଛନ୍ଦଃ, ବ୍ରହ୍ମାନୁଗ୍ରହଶକ୍ତିର୍ଦ୍ଦେବତା, ଣୀଂ ବୀଜଂ, ୟଂ ଶକ୍ତିଃ, ବ୍ରହ୍ମଶାପବିମୋଚନେ ବିନିଯୋଗଃ ।

ଅଙ୍ଗନ୍ୟାସଃ -

ଓଁ କ୍ଷାଂ ହୃଦୟାୟ ନମଃ । ଓଁ କ୍ଷୀଂ ଶିରସେ ସ୍ୱାହା ।
ଓଁ କ୍ଷୂଂ ଶିଖାୟୈ ବଷଟ୍ । ଓଁ କ୍ଷୈଂ କବଚାଭ୍ୟାଂ ହୁମ୍ ।
ଓଁ କ୍ଷୌ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ କ୍ଷଃ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ମନ୍ତ୍ର -

ଓଁ ଗାୟତ୍ରୀଂ ବ୍ରହ୍ମେତ୍ୟୁପାସୀତ ଯଦ୍ରୂପଂ ବ୍ରହ୍ମବିଦୋ ବିଦୁଃ ।
ତାଂ ପଶ୍ୟନ୍ତି ଧୀରାଃ ସୁମନସୋ ବାଚମଗ୍ରତଃ ।।
ଓଁ ଦେବି ! ଗାୟତ୍ରି ! ତ୍ୱଂ ବ୍ରହ୍ମଶାପାଦ୍ ବିମୁକ୍ତା ଭବ ।।
ଓଁ ହ୍ରୈଂ କ୍ଲୂଂ ହଂସଃ ଓଁ । ଓଁ ଭୂସ୍ତତ୍ସବିତୁର୍ବରେଣ୍ୟଂ ସହଂ କ୍ଲୂଂ ହ୍ରୈ ଓଁ ।

ଓଁ ହ୍ରୌଂ କ୍ରୂଂ ହଂସଃ ଓଁ । ଓଁ ଭୁବଃ ଭର୍ଗୋ ଦେବସ୍ୟ ଧୀମହି ସହଂ କ୍ରୂଂ ହ୍ରୌଂ ଓଁ ।
ଓଁ ହ୍ରୌଂ କ୍ରୂଂ ହଂସଃ । ଓଁ ସ୍ୱଃ ଧିୟୋ ଯୋ ନଃ ପ୍ରଚୋଦୟାତ୍ ସହଂ କ୍ରୂଂ ହ୍ରୌଂ ଓଁ ।

୨ ) ବିଶ୍ୱାମିତ୍ରଶାପବିମୋଚନ

ବିନିୟୋଗ -

ଓଁ ଅସ୍ୟ ଶ୍ରୀ ବିଶ୍ୱାମିତ୍ରଶାପବିମୋଚନମନ୍ତ୍ରସ୍ୟ, ବିଶ୍ୱାମିତ୍ରଋଷିଃ, ବାଗ୍‌ଦେହା ଗାୟତ୍ରୀ ଛନ୍ଦଃ, ନୂତନସୃଷ୍ଟିକର୍ତ୍ତା ବିଶ୍ୱାମିତ୍ରଋଷିରନୁଗ୍ରହଶକ୍ତିର୍ଦ୍ଦେବତା, ଣୀଂ ବୀଜଂ, ୟଂ ଶକ୍ତିଃ, ବିଶ୍ୱାମିତ୍ରଶାପବିମୋଚନେ ବିନିୟୋଗଃ ।

ଅଙ୍ଗନ୍ୟାସଃ -

ଓଁ କ୍ଷାଂ ହୃଦୟାୟ ନମଃ । ଓଁ କ୍ଷୀଂ ଶିରସେ ସ୍ୱାହା ।
ଓଁ କ୍ଷୂଂ ଶିଖାୟୈ ବଷଟ୍ । ଓଁ କ୍ଷୈଂ କବଚାଭ୍ୟାଂ ହୁମ୍ ।
ଓଁ କ୍ଷୌଂ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ କ୍ଷଃ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ମନ୍ତ୍ର -

ଓଁ ଗାୟତ୍ରୀଂ ଭଜାମ୍ୟଗ୍ନିମୁଖୀଂ ବିଶ୍ୱରୂପାଂ ଯଦୁଦ୍‌ଭବାଂ ।
ଦେବାଶ୍ଚକ୍ରିରେ ବିଶ୍ୱସୃଷ୍ଟିଂ ତାଂ କଲ୍ୟାଣୀମିଷ୍ଟକରୀଂ ପ୍ରପଦ୍ୟେ ॥
ଯନ୍ମୁଖାନ୍ନିଃସୃତୋଽଖିଲବେଦଗର୍ଭା ! ଦେବି ! ଗାୟତ୍ରି ! ତ୍ୱଂ ବିଶ୍ୱାମିତ୍ରଶାପାଦ୍‌ବିମୁକ୍ତା ଭବ । ଓଁ ଗାୟତ୍ରୀଶାପମୁତ୍କୀଲୟ ହୂଂ ଫଟ୍‌ସ୍ୱାହା ।
ଓଁ ହ୍ରୌଂ କ୍ରୂଂ ହଂସଃ । ଓଁ ଭୂଃ ଓଁ ତତ୍‌ସବିତୁର୍ବରେଣ୍ୟଂ ସହଂ କ୍ରୂଂ ହ୍ରୌଂ ଓଁ ।
ଓଁ ହ୍ରୌଂ କ୍ରୂଂ ହଂସଃ । ଓଁ ଭୁବଃ ଓଁ ଭର୍ଗୋ ଦେବସ୍ୟ ଧୀମହି ସହଂ କ୍ରୂଂ ହ୍ରୌଂ ଓଁ ।
ଓଁ ହ୍ରୌଂ କ୍ରୂଂ ହଂସଃ । ଓଁ ସ୍ୱଃ ଧିୟୋ ଯୋ ନଃ ପ୍ରଚୋଦୟାତ୍ ସହଂ କ୍ରୂଂ ହ୍ରୌଂ ଓଁ ॥

### ୩) ବସିଷ୍ଠଶାପବିମୋଚନ

ବିନିଯୋଗ -

ଓଁ ଅସ୍ୟ ଶ୍ରୀବସିଷ୍ଠଶାପବିମୋଚନମନ୍ତ୍ରସ୍ୟ, ବସିଷ୍ଠଋଷିଃ, ଅବ୍ୟକ୍ତଗାୟତ୍ରୀଛନ୍ଦଃ । ବସିଷ୍ଠାନୁଗ୍ରହଶକ୍ତିର୍ଦେବତା, ଣୀଂ ବୀଜଂ, ୟଂ ଶକ୍ତିଃ, ବସିଷ୍ଠାଶାପବିମୋଚନେ ବିନିଯୋଗଃ ।

ଅଙ୍ଗନ୍ୟାସ -

ଓଁ କ୍ଷାଂ ହୃଦୟାୟ ନମଃ । ଓଁ କ୍ଷୀଂ ଶିରସେ ସ୍ୱାହା ।
ଓଁ କ୍ଷୂଂ ଶିଖାୟୈ ବଷଟ୍ । ଓଁ କ୍ଷୈଂ କବଚାଭ୍ୟାଂ ହୂମ୍ ।
ଓଁ କ୍ଷୌଂ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ କ୍ଷଃ କରତଳକରପୃଷ୍ଠାଭ୍ୟାଂମସ୍ତ୍ରାୟ ଫଟ୍ ।

ମନ୍ତ୍ର -

ଓଁ ଅଗ୍ନିର୍ଜ୍ୟୋତିରହଂ ଶୁକ୍ଳଂ ଶୁକ୍ଳଜ୍ୟୋତିରହଂ ଶିବଃ ।
ଆତ୍ମଜ୍ୟୋତିରହଂ ଶୁକ୍ଳଂ ଶୁକ୍ଳଜ୍ୟୋତିରସୋ ମହାନ୍ ।।
ଓଁ ଅମୃତେ ଅମୃତୋଦ୍‌ଭବେ ଅମୃତବର୍ଷିଣି ଅମୃତଂ ସ୍ରାବୟ ସ୍ୱାହା ।
ଓଁ ହ୍ରୌ କ୍ଳୂଂ ହଂସଃ । ଓଁ ଭୂଃ ଓଁ ତଦ୍ ସବିତୁର୍ବରେଣ୍ୟଂ ସହଂ କ୍ଳୂଂ ହ୍ରୌଂ ଓଁ ।
ଓଁ ହ୍ରୌଂ କ୍ଳୂଂ ହଂସଃ । ଓଁ ଭୁବଃ ଓଁ ଭର୍ଗୋ ଦେବସ୍ୟ ଧୀମହି ସହଂ କ୍ଳୂଂ ହ୍ରୌଂ ଓଁ ।
ଓଁ ହ୍ରୌଂ କ୍ଳୂଂ ହଂସଃ । ଓଁ ସ୍ୱଃ ଧିୟୋ ଯୋ ନଃ ପ୍ରଚୋଦୟାତ୍ ସହଂ କ୍ଳୂଂ ହ୍ରୌଂ ଓଁ ।
ଓଁ ଅହୋମହୋ ଦିବ୍ୟେ ସନ୍ଧଧାମି ସରସ୍ୱତି ।
ଅଜରେ ଅମରେ ବହୁରୂପେ ନମୋଽସ୍ତୁ ତେ ।।
ଓଁ ଦେବି ଗାୟତ୍ରି ! ବସିଷ୍ଠଶାପାଦ୍ ବିମୁକ୍ତା ଭବ ।

ଏହା କହି ଜଳରେ ଅର୍ଘ୍ୟ ନିକ୍ଷେପ କରି ଦଶଥର ପ୍ରଣବ ଜପ କରିବ ।

# ଗାୟତ୍ରୀଙ୍କ ମୁଦ୍ରା

ଗାୟତ୍ରୀ ଜପ କରିବା ପୂର୍ବରୁ ନିମ୍ନୋକ୍ତ ୨୪ଟି ମୁଦ୍ରା ଦେଖାଇବାକୁ ହୁଏ । ଏହି ମୁଦ୍ରାମାନଙ୍କର ସାଧାରଣ ଅର୍ଥ ଏଠାରେ ପ୍ରଦାନ କରାଗଲା ।

୧) **ସମ୍ମୁଖମୁଦ୍ରା** - ଅଙ୍ଗୁଳିମାନଙ୍କୁ ସିଧା ରଖି ଦୁଇ ହାତକୁ ଯୋଡିବ ।

୨) **ସମ୍ପୁଟ** - ଦୁଇହାତର ଅଙ୍ଗୁଳିମାନଙ୍କୁ ଏକାଠି ସିଧା କରି ହାତକୁ ଯୋଡି ଖୋଳପରି କରିବ ।

୩) **ବିତତ** - ଦୁଇହାତର ପାପୁଲି ମୂଳକୁ ଯୋଡି ଉଭୟ ହାତକୁ ଖୋଳ ଆକାର କରି ଅଙ୍ଗୁଳିମାନଙ୍କୁ ଓସାରି ରଖିବ ।

୪) **ବିସ୍ତୃତ** - ଡାହାଣ ହାତର ବୁଢା ଆଙ୍ଗୁଠି ଛଡା ସମସ୍ତ ଅଙ୍ଗୁଳିକୁ ସଳଖ ଓ ସଂଲଗ୍ନ କରିବ । ତାପରେ ବାମ ହାତର ବୁଢା ଆଙ୍ଗୁଠିଛଡା ଅନ୍ୟ ଆଙ୍ଗୁଠିମାନଙ୍କୁ ସେହିପରି ସଳଖ ଓ ସଂଲଗ୍ନ କରି ଉଭୟ ହାତକୁ ଅଲଗା ଅଲଗା ରଖିବ ।

୫) **ଦ୍ୱିମୁଖ** - ଉଭୟ ହାତର ଅନାମିକା ଓ କନିଷ୍ଠାକୁ ପରସ୍ପର ଯୋଗ କରି ଅନ୍ୟ ଅଙ୍ଗୁଳିମାନଙ୍କୁ ସରଳ ଓ ପୃଥକ୍ ରଖିବ ।

୬) **ତ୍ରିମୁଖ** - ଉଭୟ ହାତର କନିଷ୍ଠା, ଅନାମିକା ଓ ମଧ୍ୟମା ଏହି ତିନି ଅଙ୍ଗୁଳିକୁ ଯୋଗକରି ଅନ୍ୟ ଅଙ୍ଗୁଳି ଦୁହିଁଙ୍କୁ ସଳଖ ଓ ପୃଥକ୍ ରଖିବ ।

୭) **ଚତୁର୍ମୁଖ** - ଦୁଇହାତର କାଣି ଆଙ୍ଗୁଠିଠାରୁ ବିଶିଆଙ୍ଗୁଠି ପର୍ଯ୍ୟନ୍ତ ସମସ୍ତ ଆଙ୍ଗୁଠିକୁ ଯୋଗକରି କେବଳ ବୁଢାଆଙ୍ଗୁଠିକୁ ସରଳ ଓ ପୃଥକ୍ ରଖିବ ।

୮) **ପଞ୍ଚମୁଖୀ** - ଦୁଇହାତର କାଣି ଆଙ୍ଗୁଠି ଠାରୁ ବୁଢା ଆଙ୍ଗୁଠି ପର୍ଯ୍ୟନ୍ତ ସମସ୍ତ ଆଙ୍ଗୁଠିକୁ ଯୋଗକରି କେବଳ ଆଙ୍ଗୁଠି ସନ୍ଧିମାନଙ୍କୁ ଫାଙ୍କ ରଖିବ ।

୯) **ଷଣ୍ମୁଖ** - ପଞ୍ଚମୁଖ ମୁଦ୍ରାପରି ସବୁ ଆଙ୍ଗୁଠି ଯୋଗକରି କାଣି ଆଙ୍ଗୁଠି ଦୁଇଟିକୁ ସରଳ ଓ ପୃଥକ୍ ରଖିବ ।

୧୦) **ଅଧୋମୁଖ** - ଦୁଇ ହାତର ଆଙ୍ଗୁଠିମାନଙ୍କୁ ତଳମୁହଁ କରି ବୁଢାଆଙ୍ଗୁଠି ଦୁଇଟିକୁ ଯୋଗ କରିବ ।

୧୧) **ବ୍ୟାପକାଞ୍ଜଳି** - ପ୍ରଥମେ ଦୁଇ ହାତର ପିଠିପାଖ ଉପରକୁ ରଖି ଦୁଇ ବୁଢା ଆଙ୍ଗୁଠିକୁ ଯୋଗକରି ଭିତରଆଡୁ ଦୁଇହାତ ବୁଲାଇ ଆଣି ଅଞ୍ଜଳି କରିବ ।

୧୨) **ଶକଟ** - ଦୁଇହାତର ବୁଢା ଆଙ୍ଗୁଠିକୁ ସରଳ ଭାବରେ ଯୋଗକରି ଅନ୍ୟ ଆଙ୍ଗୁଠିମାନଙ୍କୁ ମୁଠା କରି ତଳକୁ ଘୁଞ୍ଚାଇ ରଖିବ ।

୧୩) **ଯମପାଶ** - ଉଭୟ ହାତର ଆଙ୍ଗୁଠିମାନଙ୍କୁ ମୁଠା କରି ବିଶି ଆଙ୍ଗୁଠି ଦୁଇଟିର ଅଗକୁ ଚକ୍ର କରି ଗଣ୍ଠିପରି କରି ଟାଣିବ ।

୧୪) **ଗ୍ରନ୍ଥିକ** - ଉଭୟ ହାତର ଆଙ୍ଗୁଠିମାନଙ୍କୁ ପିଠି ଭାଗରୁ ମିଳାଇ ଛନ୍ଦି ଗଣ୍ଠିପରି କରିବ । ତାପରେ ହାତକୁ ଓଲଟାଇ ଆଙ୍ଗୁଠିମାନଙ୍କୁ ପାପୁଲି ମଧ୍ୟରେ ଘୋଡାଇବ ।

୧୫) **ସମ୍ମୁଖୋନ୍ମୁଖ** - ପ୍ରଥମେ ଦକ୍ଷିଣ ହାତର ସବୁ ଆଙ୍ଗୁଠିର ଅଗକୁ ଏକାଠି କରି ଉପର ମୁଖ କରିବ, ତାପରେ ବାମ ହାତ ଆଙ୍ଗୁଠିମାନଙ୍କର ଅଗକୁ ଯୋଗକରି ଓ ତଳମୁଖ କରି ଦକ୍ଷିଣ ହାତ ଆଙ୍ଗୁଠି ଅଗର ଉପର ଭାଗରେ ସ୍ପର୍ଶ କରିବ ।

୧୬) **ବିଲମ୍ବ** - ଦୁଇ ହାତର ଆଙ୍ଗୁଠି ଗୁଡ଼ିକର ଅଗକୁ ଏକତ୍ର କରି ତଳ ମୁଖ କରିବ ଓ ଦୁଇ ହାତକୁ ଅଲଗା ରଖିବ ।

୧୭) **ମୁଷ୍ଟିକ** - ଉଭୟ ହାତର ଆଙ୍ଗୁଠିମାନଙ୍କୁ ମୁଠାକରି ବାମ ହାତର ମୁଠା ଉପରେ ଦକ୍ଷିଣ ହାତର ମୁଠା ରଖିବ ।

୧୮) **ମତ୍ସ୍ୟମୁଦ୍ରା** - ବାମ ହାତର ପିଠି ଉପରେ ଦକ୍ଷିଣ ହାତର ତଳଭାଗକୁ ରଖି ଉଭୟ ହସ୍ତର ବୁଢାଆଙ୍ଗୁଠିକୁ ହଲାଇବ ।

୧୯) **କୂର୍ମମୁଦ୍ରା** - ପ୍ରଥମେ ଦୁଇ ହାତକୁ ମତ୍ସ୍ୟ ମୁଦ୍ରା ସଦୃଶ କରି ଦୁଇ ହାତର ଅନାମିକା ଓ ମଧ୍ୟମାକୁ ନୁଆଇଁ ତଳକୁ କରିବ ଏବଂ ବାମ ହାତର କାଣି ଆଙ୍ଗୁଠି ଉପରେ ଦକ୍ଷିଣ ହାତର ତର୍ଜନୀ ଓ ବାମ ହାତର ତର୍ଜନୀ ଉପରେ ଦକ୍ଷିଣ ହାତର କାଣି ଆଙ୍ଗୁଠି ସଳଖ ଭାବରେ ରଖି ଦୁଇ ହାତର ବୁଢା ଆଙ୍ଗୁଠିକି ଦୁଇ ପାଖକୁ ବାହାର କରି ରଖିବ ।

୨୦) **ବରାହମୁଦ୍ରା** - ଦୁଇ ହାତର ଆଙ୍ଗୁଠିମାନଙ୍କୁ ପରସ୍ପର ଛନ୍ଦି ବାମ ହାତର ବୁଢାଆଙ୍ଗୁଠି ଉପରେ ଦକ୍ଷିଣ ହାତର ବିଶିଆଙ୍ଗୁଠିକୁ ସଳଖ ଭାବରେ ରଖିବ ।

୨୧) **ସିଂହାକ୍ରାନ୍ତ** - ଦୁଇ ହାତର ଆଙ୍ଗୁଠିମାନଙ୍କୁ ଓସାରି ରଖି ଆଙ୍ଗୁଠିକୁ ପାଖରେ ରଖିବ ।

୨୨) **ମହାକ୍ରାନ୍ତ** - ଦକ୍ଷିଣ ହାତର ଆଙ୍ଗୁଠି ମାନଙ୍କ ଅଗ ଭାଗକୁ ଏକାଠି କରି ଦକ୍ଷିଣ କାନର ବାଟକୁ ଦେଖାଇବ ଓ ବାମ ହାତର ଆଙ୍ଗୁଠିମାନଙ୍କ ଅଗ ଭାଗକୁ ଏକାଠି କରି ବାମ କାନର ବାଟକୁ ଦେଖାଇବ ।

୨୩) **ମୁଦ୍‌ଗର** - ଦକ୍ଷିଣ ହାତର କହୁଣୀକୁ ବାମ ହାତର ପାପୁଲିରେ ରଖିବ, ତପୂରେ ଦକ୍ଷିଣ ହାତର ସମସ୍ତ ଆଙ୍ଗୁଠିକୁ ମୁଠାକରି ତର୍ଜନୀକୁ ସଳଖ ରଖିବ ।

୨୪) **ପଲ୍ଲବମୁଦ୍ରା** - ଡାହାଣ ହାତରେ କହୁଣୀକୁ ବାମ ହାତର ପାପୁଲି ଉପରେ ରଖିବ । ତାପରେ ଡାହାଣ ହାତର ସବୁ ଆଙ୍ଗୁଠିକୁ ସରଳ କରି ମୁଣ୍ଡ ଓ ମୁହଁ ଆଗରେ ଧୀରେ ଧୀରେ ହଲାଇବ ।

• • • • •

(୧) ସମ୍ମୁଖମୁଦ୍ରା



(୨) ସମ୍ପୁଟ



(୩) ବିତତ



(୪) ବିସ୍ତୃତ



(୫) ଦ୍ୱିମୁଖ



(୬) ତ୍ରିମୁଖ



(୯) ଷଣ୍ମୁଖ



(୧୦) ଅଧୋମୁଖ



(୧୧) ବ୍ୟାପକାଞ୍ଜଳି



(୧୨) ଶକଟ



(୧୩) ଯମପାଶ



(୧୪) ଗ୍ରନ୍ଥିକ



(୧୫) ସମ୍ମୁଖୋନ୍ମୁଖ



(୧୬) ପ୍ରଲମ୍ବ



(୧୯) କୂର୍ମମୁଦ୍ରା



(୨୦) ବରାହମୁଦ୍ରା



(୧୭) ମୁଷ୍ଟିକ



(୧୮) ମତ୍ସ୍ୟମୁଦ୍ରା



(୨୧) ସିଂହାକ୍ରାନ୍ତ



(୨୨) ମହାକ୍ରାନ୍ତ



(୨୩) ମୁଦ୍‌ଗର



(୨୪) ପଲ୍ଲବମୁଦ୍ରା



# ନିତ୍ୟକର୍ମପ୍ରଦୀପ

## ଦ୍ୱିତୀୟ ଶିଖା

### ସର୍ବଦେବପୂଜା

ପଣ୍ଡିତ ଶ୍ରୀ ଜୟକୃଷ୍ଣ ମିଶ୍ର
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ

ସଦ୍‌ଗ୍ରନ୍ଥ ନିକେତନ
ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର, ପୁରୀ

# ନିତ୍ୟକର୍ମପ୍ରଦୀପ

## ଦ୍ୱିତୀୟଶିଖା


❑ ପ୍ରଣେତା :

**ପଣ୍ଡିତ ଶ୍ରୀ ଜୟକୃଷ୍ଣ ମିଶ୍ର**

ବରିଷ୍ଠ ଉପାଚାର୍ଯ୍ୟ, ସ୍ନାତକୋତ୍ତର ଧର୍ମଶାସ୍ତ୍ରବିଭାଗ

ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ, ପୁରୀ ।

ଫୋନ୍ ୨୨୪୩୪୬ (ଆବାସ)



❑ ପ୍ରକାଶକ :

**ଶ୍ରୀଯୁକ୍ତ ଦାମୋଦର ପୁଷ୍ଟାଳକ**

**ସଦ୍‌ଗ୍ରନ୍ଥ ନିକେତନ**, ଶ୍ରୀମନ୍ଦିର, ପୁରୀ ।





ମୁଦ୍ରଣ :

❑ **ଗ୍ରାଫିକ୍ ପଏଣ୍ଟ୍**

ମରିଚିକୋଟ ଲେନ୍, ପୁରୀ, ଫୋନ୍ - ୨୪୬୧୦

❑ ପ୍ରଥମ ସଂସ୍କରଣ : **ବିଜୟାଦଶମୀ, ୨୦୦୧**

ତୃତୀୟ ସଂସ୍କରଣ : **ଶ୍ରୀଗୁଣ୍ଡିଚା, ୨୦୧୫**

ମୂଲ୍ୟ : ଟ୪୦.୦୦ (ଚାଳିଶି ଟଙ୍କା ମାତ୍ର)

ଓଁ

# ପୁରୋବାଣୀ

ଦେବତାମାନେ ଅଲୌକିକଶକ୍ତିର ଅଧିକାରୀ ଅଟନ୍ତି । ମନୁଷ୍ୟ ଦେବତାମାନଙ୍କ ଠାରୁ ନ୍ୟୂନଗୁଣବିଶିଷ୍ଟ ହୋଇଥିବାରୁ ଅଲୌକିକ ଶକ୍ତିର ଅଧିକାରୀ ହେବାପାଇଁ ଦେବତାଙ୍କୁ ଭକ୍ତିନିବେଦନ କରିଥାଏ । ସେ ସବୁବେଳେ ସର୍ବବିଧ ସୁଖ ଅଭିଳାଷ କରିଥାଏ । ସେଥିମଧ୍ୟରୁ ସେ ପାରଲୌକିକସୁଖ (ସ୍ୱର୍ଗ, ମୋକ୍ଷ ପ୍ରଭୃତି) ଅପେକ୍ଷା ଇହଲୌକିକ ସୁଖପ୍ରାପ୍ତି ପାଇଁ ଅଧିକ ଯତ୍ନବାନ ହୋଇଥାଏ । ଇହଲୌକିକ ସୁଖ ମଧ୍ୟରେ ଧନ, ପୁତ୍ର, ଆୟୁଃ, ଯଶ, ଐଶ୍ୱର୍ଯ୍ୟ, ସ୍ତ୍ରୀ, ସୌଭାଗ୍ୟ ପ୍ରଭୃତି ଅନ୍ତର୍ଭୁକ୍ତ ।

ସମସ୍ତ ମନୁଷ୍ୟ ଦେବତାଙ୍କର ଅଧୀନ ଅଟନ୍ତି । ସାରା ଜଗତ୍ ମଧ୍ୟ ଦେବତାଙ୍କର ଅଧୀନ ଅଟେ । ମନୁଷ୍ୟ ଭୋଗ କରୁଥିବା ସୁଖ ଓ ଦୁଃଖ ଦେବତାଙ୍କର ଅଧୀନ ଅଟେ । ଦେବତାଙ୍କର ବିଧିବିହିତ ପୂଜାଦ୍ୱାରା ହିଁ ମନୁଷ୍ୟ ଶୁଭଫଳ ଓ ଅବଜ୍ଞାଦ୍ୱାରା ଅଶୁଭଫଳ ଭୋଗ କରିଥାଏ । ତେଣୁ ସମସ୍ତ ପ୍ରକାରରେ ଯତ୍ନର ସହିତ ମନୁଷ୍ୟ ଦେବତାଙ୍କର ଆରାଧନା କରିବା ଉଚିତ । ଦେବତା ସନ୍ତୁଷ୍ଟ ହେବାର ମୂଳ କାରଣ ହେଲା ପବିତ୍ର ମନୋଭାବର ସହିତ ଭକ୍ତି ଓ ଶ୍ରଦ୍ଧାର ସହିତ ପୂଜା । ଦେବତାଙ୍କର ଶୁଶ୍ରୂଷାଦ୍ୱାରା ହିଁ ମନୁଷ୍ୟ ଶାଶ୍ୱତସୁଖ, ରାଜ୍ୟ, ସ୍ୱର୍ଗ ତଥା ମୋକ୍ଷଫଳ ପାଇଥାଏ । ଦେବତାମାନେ ଭକ୍ତମାନଙ୍କ ଉପରେ ଅନୁକମ୍ପା ପ୍ରଦର୍ଶନ କରିଥାନ୍ତି । ତେଣୁ ଭକ୍ତ ନିଜର ଇହଲୌକିକ ଓ ପାରଲୌକିକ କଲ୍ୟାଣ ପାଇଁ ନିରନ୍ତର ଭଗବାନଙ୍କୁ ନିଜର କରିବାକୁ ପ୍ରଯତ୍ନଶୀଳ ହୋଇଥାଏ । ତେଣୁ ବିଷ୍ଣୁଧର୍ମୋତ୍ତରପୁରାଣରେ ଯଥାର୍ଥରେ କୁହାଯାଇଅଛି -

ଦେବାଧୀନାଃ ପ୍ରଜାଃ ସର୍ବାଃ ଦେବାୟତ୍ତମିଦଂ ଜଗତ୍ ।
ସୁଖଦୁଃଖେ ମାନୁଷାଣାଂ ଦେବାୟତ୍ତେ ତଥୈବ ଚ ।।
ଦେବୈର୍ବିହିତମଶ୍ନନ୍ତି ମନୁଷ୍ୟାସ୍ତୁ ଶୁଭାଶୁଭମ୍ ।
ତସ୍ମାତ୍ ସର୍ବପ୍ରଯତ୍ନେନ ଦେବପୂଜାପରୋ ଭବେତ୍ ।।

ଦେବାଶ୍ଚ ଭକ୍ତ୍ୟା ତୁଷ୍ୟନ୍ତି ଶ୍ରଦ୍ଧୟା ପରୟା ତଥା ।
ପୂଜିତା ଶୁଚିନା ଚୈବ ଦେବାସ୍ତୁଷ୍ୟନ୍ତି ନାନ୍ୟଥା ।।
ଦେବଶୁଶ୍ରୂଷୟା ସ୍ୱର୍ଗୋ ଦେବଶୁଶ୍ରୂଷୟା ସୁଖମ୍ ।
ଦେବଶୁଶ୍ରୂଷୟା ରାଜ୍ୟଂ ମୋକ୍ଷଂ ଚାପ୍ୟଥ ପ୍ରାପ୍ୟତେ ।।
ଦେବତାଃ କାମୟନ୍ତୀହ ତଥା ଭକ୍ତଂ ଜନଂ ସଦା ।
ଭକ୍ତାନୁକମ୍ପିନୋ ଦେବାଃ ପରତ୍ରେହ ତଥା ଧ୍ରୁବମ୍ ।।

(ବିଷ୍ଣୁଧର୍ମୋତ୍ତରପୁରାଣେ ୩/୨୮୮/୧-୫)

ଦେବତାଙ୍କ ଉପାସନାନିମିତ୍ତ ମନୁଷ୍ୟ ନିଜକୁ ପ୍ରଥମେ ପବିତ୍ର କରିବା ଦରକାର । ତାହାଦ୍ୱାରା ସେ ପୂଜା କରିବା ନିମିତ୍ତ ଯୋଗ୍ୟ ହୋଇଥାଏ । ଏହି ପବିତ୍ରତା ନିମିତ୍ତ ପୂଜା ପୂର୍ବରୁ ପୂଜକ ସନ୍ଧ୍ୟା, ଗାୟତ୍ରୀ, ଭୂତଶୁଦ୍ଧି, ପ୍ରାଣପ୍ରତିଷ୍ଠା, ଅଙ୍ଗନ୍ୟାସ, କରନ୍ୟାସ ପ୍ରଭୃତି କର୍ମମାନ ଅନୁଷ୍ଠାନ କରିବା ଉଚିତ । ଏହାପରେ ବିଧିପୂର୍ବକ ଦେବତାଙ୍କ ପୂଜା କରିଲେ ପୂଜାଫଳ ସୁଲଭ ହୋଇଥାଏ । ଦେବତୋପାସନାପାଇଁ କେତୋଟି ସହାୟକ ତତ୍ତ୍ୱଉପରେ ଧ୍ୟାନ ଦେବା ଅତ୍ୟନ୍ତ *ଆବଶ୍ୟକ* । ତାହା ହେଲା - ୧) ସାତ୍ତ୍ୱିକ ଆହାର, ୨) ସତ୍ୟଭାଷଣ, ୩) ସଂଯମତା (ଇନ୍ଦ୍ରିୟସଂଯମ) ଇତ୍ୟାଦି ।

ଦେବୋପାସନାଦ୍ୱାରା ମନୁଷ୍ୟର ମନମଧ୍ୟରୁ ରଜ ଓ ତମଃ ପ୍ରବୃତ୍ତିର ନିରାକରଣ ହେବା ସହିତ ସତ୍ତ୍ୱଗୁଣର ଉଦ୍ରେକ ହୁଏ । ପାଶବିକପ୍ରବୃତ୍ତି, ହିଂସାପ୍ରବୃତ୍ତି ଓ ଅନ୍ୟାୟାଚରଣରୁ ମନ ନିବୃତ୍ତ ରହେ । ସତ୍‌ଚିନ୍ତା, ସଦ୍‌ବୁଦ୍ଧି, ସତ୍‌ସଂକଳ୍ପ ଜାଗ୍ରତ ହୁଏ । ଏହାଫଳରେ ମନୁଷ୍ୟର ମନ ମଧ୍ୟରେ ଅମୃତଧାରାର ସଞ୍ଚାର ସମ୍ଭବ ହୋଇଥାଏ । ଯାହା କି ଚିରନ୍ତନ ସୁଖର ମାର୍ଗକୁ ଉନ୍ମୁକ୍ତ ରଖିଥାଏ ।

ପ୍ରାଣୀ ନିଜ ବର୍ଣ୍ଣାଶ୍ରମୋଚିତ କର୍ମ ଅନୁଷ୍ଠାନ କରି ତଦତିରିକ୍ତ ଭଗବାନଙ୍କୁ ଭକ୍ତିଭାବରେ ଆରାଧନା କରିବା ଉଚିତ । ଏହାଦ୍ୱାରା ଭଗବାନ ସନ୍ତୁଷ୍ଟ ହେବେ । ସେହି ସନ୍ତୋଷ ହିଁ ମନୁଷ୍ୟର ଶାନ୍ତିପ୍ରାପ୍ତିନିମିତ୍ତ ମୁଖ୍ୟୋପାଦାନ ହୋଇପାରିବ । ତେଣୁ ଯଥାର୍ଥରେ କୁହାଯାଇଅଛି -

ବର୍ଣ୍ଣାଶ୍ରମାଚାରବତା ପୁରୁଷେଣ ପରଃ ପୁମାନ୍ ।
ହରିରାରାଧ୍ୟତେ ଭକ୍ତ୍ୟା ନାନ୍ୟତ୍ତୋଷକାରଣମ୍ ॥

ତେଣୁ ମନୁଷ୍ୟର ଦୈନନ୍ଦିନକର୍ତ୍ତବ୍ୟରେ ଭଗବଦାରାଧନା-ଅନ୍ତର୍ଭୁକ୍ତ ହୋଇଅଛି । ବ୍ରହ୍ମା, ବିଷ୍ଣୁ, ରୁଦ୍ର-ପ୍ରଭୃତି ଦେବତାମାନେ ଭିନ୍ନ ନୁହଁନ୍ତି । ମନୁଷ୍ୟ ହୀନବୁଦ୍ଧିରେ ଏମାନଙ୍କ ମଧ୍ୟରେ ଭେଦଭାବ ଖୋଜି ବସିଥାଏ । କିନ୍ତୁ ଏମାନେ ସମସ୍ତେ ସଚ୍ଚିଦାନନ୍ଦ ମୂର୍ତ୍ତିସ୍ୱରୂପ ଓ ଅଦ୍ୱିତୀୟତତ୍ତ୍ୱ ଅଟନ୍ତି । ତେଣୁ କୁହାଯାଇଅଛି-

ବ୍ରହ୍ମାଣଂ କେଶବଂ ରୁଦ୍ରଂ ଭେଦଭାବେନ ମୋହିତାଃ ।
ପଶ୍ୟନ୍ତ୍ୟେକଂ ନ ଜାନନ୍ତି ପାଷାଣ୍ଡୋପହତାଃ ଜନାଃ ॥

ବେଦାନ୍ତବେଦ୍ୟ ପରମପୁରୁଷ ଭଗବାନ୍ ଅବିଦ୍ୟାଶକ୍ତି ପ୍ରଧାନ ହୋଇଥିବାରୁ ପ୍ରପଞ୍ଚ ନିର୍ମାଣ କରନ୍ତି । ବିଦ୍ୟାଶକ୍ତିପ୍ରଧାନ ହୋଇ ମୋକ୍ଷପ୍ରଦାନ କରନ୍ତି ଓ ଶୁଦ୍ଧଚିତ୍ ଶକ୍ତିରୂପରେ ସର୍ବଦୃଶ୍ୟର ଅଧିଷ୍ଠାନରୂପରେ ବିରାଜମାନ ହୋଇଥାନ୍ତି । ସେହି ଚିତ୍‌ଶକ୍ତି ହିଁ ମହାଲକ୍ଷ୍ମୀ, ମହାକାଳୀ ଓ ମହାସରସ୍ୱତୀ ରୂପରେ ଉପାସ୍ୟ ହୋଇ ସର୍ବଭୁକ୍ତି ଓ ମୁକ୍ତି ପ୍ରଦାୟକ ହୋଇଥାନ୍ତି । ସେହି ବିଶୁଦ୍ଧ ବ୍ରହ୍ମ ସଗୁଣରୂପରେ ନୃସିଂହ ରାମଚନ୍ଦ୍ର ଓ ଶ୍ରୀକୃଷ୍ଣ ପ୍ରଭୃତି ଅବତାର ଗ୍ରହଣ କରି ଆବିର୍ଭୂତ ହୁଅନ୍ତି ଓ ସମସ୍ତଙ୍କଦ୍ୱାରା ପୂଜିତ ହୋଇ ସର୍ବସିଦ୍ଧି ପ୍ରଦାନ କରିଥାଆନ୍ତି ।

ମାନବର ମନକୁ ଅହଙ୍କାର କଳୁଷିତ କରିଥାଏ । ଏହାର ପରିଣାମସ୍ୱରୂପ ମନୁଷ୍ୟ ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ଅଶାନ୍ତିର କବଳରେ କବଳିତ ହୋଇଥାଏ । ଏହାକୁ ଶାସ୍ତ୍ରରେ ଆସୁରୀସଂପଦ ବୋଲି କୁହାଯାଇଥାଏ । ଏହି ଆସୁରୀସଂପଦର ବିନାଶ ସହିତ ଦୈବୀ ସମ୍ପଦର ଅଧିକାରୀ ହେଲେ ମନୁଷ୍ୟ ସତ୍ୟ, ଶାନ୍ତି, ଦୟା, କ୍ଷମା ପ୍ରଭୃତି ସଦ୍‌ଗୁଣଦ୍ୱାରା ନିଜର ଜୀବନକୁ ବିକଶିତ କରିପାରିବ । ଏହାର ମୂଳମନ୍ତ୍ର ହେଉଛି ଦେବତାମାନଙ୍କ ପ୍ରତି ଭକ୍ତିପ୍ରଦର୍ଶନ ।

ମନୁଷ୍ୟ ସାଂସାରିକ ମାୟାମୋହରେ ପଡି ଭୋଗବାସନାର ବଶବର୍ତ୍ତୀ ହେବା ସଙ୍ଗେ ସଙ୍ଗେ ଭଗବାନଙ୍କଠାରୁ ଶାଶ୍ୱତସୁଖ ପାଇବା ପରିବର୍ତ୍ତେ କ୍ଷଣିକ ସୁଖଲାଳସାରେ ନିଜକୁ କୃତାର୍ଥ ମନେ କରିଥାଏ । ଶାସ୍ତ୍ରପ୍ରତିପାଦିତ ନବଧା ଭକ୍ତିମାନଙ୍କ ମଧ୍ୟରୁ ଭଗବଦ୍ ପୂଜନ (ଅର୍ଚ୍ଚନନାମରେ ଖ୍ୟାତ) ଅନ୍ୟତମ ଅଟେ ।

ଏହା କହିବା ବାହୁଲ୍ୟ ଯେ ମନୁଷ୍ୟ ଭଗବାନଙ୍କ ପ୍ରତି ଭକ୍ତିପ୍ରଦର୍ଶନ କରି ଅନାୟାସରେ ସୁଗତି ଲାଭ କରିଥାଏ । ଏବଂ ପରମପୁରୁଷାର୍ଥ ମୋକ୍ଷ ମଧ୍ୟ ପାଇପାରିଥାଏ ।

ଏ ସବୁ କହିବାର ତାତ୍ପର୍ଯ୍ୟ ହେଲା ମନୁଷ୍ୟ ନାସ୍ତିକ ଭାବକୁ ମନ ମଧ୍ୟରେ ସ୍ଥାନ ନ ଦେଇ ଆସ୍ତିକ୍ୟବୁଦ୍ଧିରେ ଭଗବଦାରାଧନା ଭକ୍ତି ଓ ଶ୍ରଦ୍ଧାର ସହିତ କରିବା ଦରକାର । ତାହାଦ୍ୱାରା ମନୁଷ୍ୟ ନିଜର ସର୍ବବିଧ କ୍ଳେଶକୁ ଦୂର କରିବାରେ ସମର୍ଥ ହେବ । ଦେବତାଙ୍କୁ ଆରାଧନା କଲେ ମନୁଷ୍ୟ ମାନସିକ ଶାନ୍ତି ପାଇବା ସଙ୍ଗେ ସଙ୍ଗେ ନିଜର ଅଭ୍ୟୁନ୍ନତି ପଥରେ ଅନାୟାସରେ ଆଗେଇ ଯାଇପାରିବ ।

ନିତ୍ୟକର୍ମପ୍ରଦୀପର ପ୍ରଥମଶିଖା ପ୍ରକାଶ ପାଇବା ସମୟରେ ଏହାର ଦ୍ୱିତୀୟଶିଖା ପ୍ରକାଶ କରିବା ପାଇଁ ଦେଇଥିବା ପ୍ରତିଶ୍ରୁତି ବର୍ତ୍ତମାନ ପୂରଣ ହୋଇଅଛି । ବର୍ତ୍ତମାନ ଏହି ଗ୍ରନ୍ଥ ବିଜ୍ଞଜନମାନଙ୍କ ନିକଟରେ ଉପସ୍ଥାପନ କରି ଏହାର ତ୍ରୁଟିବିଚ୍ୟୁତି ପାଇଁ ସଶ୍ରଦ୍ଧମତାମତ ଅପେକ୍ଷାରେ ରହୁଅଛି । ପୂଜାର ପ୍ରୟୋଗ ବିଧିକୁ ଯଥାସମ୍ଭବ ଏହି ଗ୍ରନ୍ଥରେ ସହଜ ଓ ସରଳରୂପରେ ଉପସ୍ଥାପନ କରାଯାଇଅଛି । ଏହାର ତାତ୍ପର୍ଯ୍ୟ ହେଲା ସମସ୍ତଙ୍କର ଏଥିରେ ଆଗ୍ରହ ସୃଷ୍ଟି କରିବା । ପୂଜା ପଦ୍ଧତି ଜଟିଳ ହେଲେ ପ୍ରୟୋଗ କରିବାରେ ସମସ୍ତଙ୍କର ରୁଚି ରହିବ ନାହିଁ । ଏଣୁ ଏହାକୁ ଦୃଷ୍ଟିରେ ରଖି ଯଥାସମ୍ଭବ ଅନାବଶ୍ୟକ ବିଧିକୁ ଅପସାରଣ କରାଯାଇଅଛି ।

ଏହି ଗ୍ରନ୍ଥର ପ୍ରଣୟନଦିଗରେ ପ୍ରେରଣା ଯୋଗାଇ ଦେଇ ସଦ୍‌ଗ୍ରନ୍ଥ ନିକେତନର ଅଧିକାରୀ ଶ୍ରୀଯୁକ୍ତ ଦାମୋଦର ପୁଷ୍ଟାଳକ ମୋର କୃତଜ୍ଞତା ପରିସରରେ ସ୍ଥାନ ପାଇପାରିଅଛନ୍ତି । ଗ୍ରନ୍ଥର ମୁଦ୍ରଣପରିପାଟୀରେ ସହାୟତା ପ୍ରଦାନ କରିଥିବାରୁ ଶ୍ରୀମାନ୍ ପ୍ରତାପ କୁମାର ମେକାପ ମଧ୍ୟ ଧନ୍ୟବାଦାର୍ହ ଅଟନ୍ତି । ଅନ୍ତିମରେ ଶଙ୍ଖକ୍ଷେତ୍ରର ଅଧୀଶ୍ୱର ଶ୍ରୀ ପୁରୁଷୋତ୍ତମଙ୍କ ନିକଟରେ ଜଗତର କଲ୍ୟାଣ କାମନା କରି ବିରତ ହେଉଅଛି । ଇତି ।

ବିଜୟାଦଶମୀ
ତା ୨୬.୧୦.୨୦୦୧

ଜୟକୃଷ୍ଣ ମିଶ୍ର

# ଦ୍ୱିତୀୟ ସଂସ୍କରଣ ପାଇଁ ପଦେ

ଜଗଦୀଶ୍ୱରଙ୍କ ଅପାର କରୁଣାରୁ ନିତ୍ୟକର୍ମପ୍ରଦୀପ (ଦ୍ୱିତୀୟଶିଖା)ର ଦ୍ୱିତୀୟ ସଂସ୍କରଣ ଏବେ ଆତ୍ମପ୍ରକାଶ କରିବାକୁ ଯାଉଅଛି । ଏହାର ପ୍ରଥମ ସଂସ୍କରଣ ବିଜୟାଦଶମୀ, ୨୦୦୧ରେ ପ୍ରକାଶ ପାଇଥିଲା । ଅତି ସ୍ୱଳ୍ପ ସମୟ ମଧ୍ୟରେ ପ୍ରଥମ ସଂସ୍କରଣର ପରିସମାପ୍ତି ହିଁ ସମାଜରେ ଏହାର ଆଦରକୁ ସୂଚାଇ ଦେଉଅଛି । ଏହା ପୂର୍ବରୁ ନିତ୍ୟକର୍ମ ପ୍ରଦୀପ-ପ୍ରଥମଶିଖାର ଦ୍ୱିତୀୟସଂସ୍କରଣ ମଧ୍ୟ ପ୍ରକାଶ ପାଇସାରିଅଛି । ସମାଜରେ ଗୋଟିଏ ଦିଗରେ ନାସ୍ତିକଭାବ ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଅନ୍ୟ ଦିଗରେ ଆସ୍ତିକଭାବର ମଧ୍ୟ ଅଭିବୃଦ୍ଧି ପରିଲକ୍ଷିତ ହେଉଅଛି । ଯଦ୍ଦ୍ୱାରା ସାଧାରଣ ଜନମାନସରେ କିଛିଟା ଭକ୍ତିଭାବର ପରିପ୍ରକାଶ ଘଟୁଅଛି । ଦେବତାଙ୍କଠାରେ ମନୋନିବେଶ କରିବା ବ୍ୟତୀତ ଅନ୍ୟ କୌଣସି ମହୌଷଧି ଏହି ସାଂସାରିକ ଜଞ୍ଜାଳରୂପି ବ୍ୟାଧିରୁ ନିଷ୍କୃତି ଦେଇପାରିବ ନାହିଁ । ମନୁଷ୍ୟର ମନ ବହୁଧା ଅଯଥା ଚିନ୍ତାରେ ଭାରାକ୍ରାନ୍ତ ହେବା ସମୟରେ ତାହାର ନିରାକରଣ ନିମିତ୍ତ ମନୁଷ୍ୟ ଭଗବାନଙ୍କର ଶରଣାପନ୍ନ ହୋଇଥାଏ । ତେଣୁ ମନୁଷ୍ୟର ପ୍ରତ୍ୟହ ସାଂସାରିକଗତି ମଧ୍ୟରେ ଭଗବଦାରାଧନା ଏକ ଅନିବାର୍ଯ୍ୟ ଅଙ୍ଗ ହୋଇଯାଇଅଛି ।

ଦେବପୂଜା ସଂବଳିତ ଅନେକ ଗ୍ରନ୍ଥ ବଜାରରେ ଉପଲବ୍ଧ ହେଉଥିବା ବେଳେ ଏହି ସଂସ୍କରଣର ଅଧିକ ଆଦରର କାରଣ ହେଲା ଏହାର ପରିସ୍ଫୁଟତା ଓ ଶୁଦ୍ଧତା । ଶୁଦ୍ଧତାର ଅଭାବ ଯୋଗୁଁ ବୀତସ୍ପୃହ ହୋଇପଡୁଥିବା ଭକ୍ତମାନେ ଏହାକୁ ଶ୍ରଦ୍ଧାର ସହିତ ଗ୍ରହଣ କରିନେଇଅଛନ୍ତି । ଏଥିରେ ପ୍ରତିପାଦିତ ବିଷୟମାନଙ୍କ ବ୍ୟତୀତ ଦେବପୂଜାରେ ବ୍ୟବହୃତ କେତେକ ସାଧାରଣ ମୁଦ୍ରାମାନଙ୍କର ସଚିତ୍ର ସନ୍ନିବେଶ କରାଯାଇଅଛି । ଶ୍ରୀ ନୀଳାଦ୍ରିବିହାରୀଙ୍କ ଅନୁଗ୍ରହରୁ ଏହି ଗ୍ରନ୍ଥର ଅଭାବ ବର୍ତ୍ତମାନ ପୂରଣ ହେବାକୁ ଯାଉଅଛି । ଆଶା କରୁଅଛି ଏହା ମଧ୍ୟ ପୂର୍ବପରି ଜନସମାଜରେ ଆଦର ଲାଭ କରିବ । ଇତି ।

ଜୟକୃଷ୍ଣ ମିଶ୍ର

ଶ୍ରୀପଞ୍ଚମୀ
୧୩.୨.୨୦୦୫

# ବିଷୟକ୍ରମ

# ସଂକ୍ଷେପଦେବପୂଜାବିଧି

ପ୍ରଥମେ ପୂଜକ ଦେବତାଙ୍କ ସମ୍ମୁଖଭାଗରେ କୁଶ ପ୍ରଭୃତି ଆସନରେ ପଦ୍ମାସନ ବା ସ୍ୱସ୍ତିକାସନ କରି ବସିବ । ହାତରେ ଅରୁଆଚାଉଳ ଓ ଫୁଲ ଧରି 'ଓଁ ହ୍ରଃ ଅସ୍ତ୍ରାୟ ଫଟ୍' କହି ନାରାଚମୁଦ୍ରାରେ ଆଗକୁ ଫିଙ୍ଗିବ । ତାପରେ ବାମ ଅଙ୍ଗକୁ ସଙ୍କୋଚନ କରି ବିଘ୍ନଗୁଡିକ ସେହି ବାଟେ ଚାଲିଗଲେ ବୋଲି ଭାବିବ । ତାପରେ ଅସ୍ତ୍ର ମନ୍ତ୍ର (ଯେଉଁ ଦେବତାଙ୍କର ପୂଜା କରିବ, ସେହି ଦେବତାଙ୍କ ମନ୍ତ୍ରର ଅଙ୍ଗନ୍ୟାସରେ ଅସ୍ତ୍ରାୟ ଫଟ୍ କଲାବେଳେ ମନ୍ତ୍ରର ଯେଉଁ ଅଂଶ ପଡେ ତାହା ହେଉଛି ଅସ୍ତ୍ରମନ୍ତ୍ର) ପଢ଼ି ବାମଗୋଇଠିରେ ଭୂମିକୁ ତିନିଥର ଆଘାତ କରି ଭୂମିସ୍ଥିତ ବିଘ୍ନଗୁଡିକୁ ଅପସାରଣ କରିଦେବ । ଅସ୍ତ୍ରମନ୍ତ୍ର ପଢି ତିନୋଟି ତାଳିଦ୍ୱାରା ଅନ୍ତରିକ୍ଷସ୍ଥିତ ବିଘ୍ନକୁ ଓ ମୂଳମନ୍ତ୍ର ପଢି ଅନାମିକା ଓ ବୃଦ୍ଧାଙ୍ଗୁଳିରେ ଆଖି ଦୁଇଟିକୁ ଛୁଇଁ ଊର୍ଦ୍ଧ୍ୱକୁ ଚାହିଁବ । ଏହାଦ୍ୱାରା ଦ୍ୟୁଲୋକସ୍ଥିତ ବିଘ୍ନ ନଷ୍ଟ ହୁଏ । ତାପରେ ଘଣ୍ଟି ବଜାଇବ ।

## ଆସନଶୁଦ୍ଧି

ଓଁ ଆସନମନ୍ତ୍ରସ୍ୟ, ମେରୁପୃଷ୍ଠ ଋଷିଃ, ସୁତଳଂ ଛନ୍ଦଃ,
ଶ୍ରୀକୂର୍ମୋ ଦେବତା, ଆସନଶୁଦ୍ଧୌ ବିନିଯୋଗଃ ।

ଏହିପରି ବିନିଯୋଗ କରି 'ଓଁ ଅନନ୍ତାୟ ନମଃ' କହି ଆସନରେ ଫୁଲଟିଏ ପକାଇବ । ଏହାପରେ ପୃଥିବୀକୁ ହାତଯୋଡି ନିମ୍ନମନ୍ତ୍ରରେ ପ୍ରାର୍ଥନା କରିବ ।

ମନ୍ତ୍ର ଯଥା- **ଓଁ ପୃଥ୍ୱି ତ୍ୱୟା ଧୃତା ଲୋକା ଦେବି ! ତ୍ୱଂ ବିଷ୍ଣୁନା ଧୃତା ।**
**ତ୍ୱଂ ଚ ଧାରୟ ମାଂ ଦେବି ! ପବିତ୍ରମାସନଂ କୁରୁ ॥**

ତାପରେ ନିଜର ବାମଭାଗରେ ''ଓଁ ଗୁରୁଭ୍ୟୋ ନମଃ । ପରମଗୁରୁଭ୍ୟୋ ନମଃ । ପରାତ୍ପରଗୁରୁଭ୍ୟୋ ନମଃ'' ଏହା କହି ଗୁରୁଙ୍କୁ ନମସ୍କାର କରିବ ।

ଦକ୍ଷିଣଭାଗରେ "ଓଁ ଗଣେଶାୟ ନମଃ" କହି ନମସ୍କାର କରିବ । ସମ୍ମୁଖଭାଗରେ "ଓଁ ଇଷ୍ଟଦେବତାୟୈ ନମଃ" ଓ ପୃଷ୍ଠଭାଗରେ "ଓଁ କ୍ଷେତ୍ରପାଳାୟ ନମଃ" କହି ନମସ୍କାର କରିବ । ତାହାପରେ ଅସ୍ତ୍ରମନ୍ତ୍ରରେ ଅଧ-ମଧ-ଉର୍ଦ୍ଧ୍ୱକ୍ରମରେ ତିନିଥର ତାଳି ମାରି ନାରାଚମୁଦ୍ରାରେ ଦିଗ୍‌ବନ୍ଧନ କରିବ । ହୃଦୟରେ କରକଚ୍ଛପିକା ମୁଦ୍ରା ପ୍ରଦର୍ଶନ କରିବ । ଦିଗ୍‌ବନ୍ଧନଂ ଯଥା - ପୂର୍ବାଦିକ୍ରମରେ - ପ୍ରତ୍ୟେକ ଦିଗରୁ ମନ୍ତ୍ର ପଢ଼ି ପୁଷ୍ପ ନିକ୍ଷେପ କରିବ ।

| | | |
|---|---|---|
| ପୂର୍ବେ | - | ଓଁ ଲଂ ଇନ୍ଦ୍ରାୟ ନମଃ । |
| ଅଗ୍ନିକୋଣରେ | - | ଓଁ ରଂ ଅଗ୍ନୟେ ନମଃ । |
| ଦକ୍ଷିଣଦିଗରେ | - | ଓଁ ଯଂ ଯମାୟ ନମଃ । |
| ନୈରତକୋଣରେ | - | ଓଁ ନଂ ନୈରତାୟ ନମଃ । |
| ପଶ୍ଚିମଦିଗରେ | - | ଓଁ ବଂ ବରୁଣାୟ ନମଃ । |
| ବାୟବ୍ୟକୋଣରେ | - | ଓଁ ଯଂ ବାୟବେ ନମଃ । |
| ଉତ୍ତରଦିଗରେ | - | ଓଁ କୁଂ କୁବେରାୟ ନମଃ । |
| ଈଶାନକୋଣରେ | - | ଓଁ ହଂ ଈଶାନାୟ ନମଃ । |
| ଊର୍ଦ୍ଧ୍ୱରେ | - | ଓଁ ଖଂ ବ୍ରହ୍ମଣେ ନମଃ । |
| ଅଧଃରେ | - | ଓଁ ଅଂ ଅନନ୍ତାୟ ନମଃ । |

**ଭୂତଶୁଦ୍ଧି -**

ପୂଜକ ନିଜଶରୀରର ପାଦଠାରୁ ଆଣ୍ଠୁ ପର୍ଯ୍ୟନ୍ତ ଭାଗକୁ ଚାରିକୋଣିଆ ବର୍ଗକ୍ଷେତ୍ର □, ବଜ୍ରଚିହ୍ନ ହଳଦିଆ ବର୍ଣ୍ଣ ଲଂ ବୀଜଯୁକ୍ତ ପୃଥିବୀ ସ୍ଥାନ ବୋଲି ଚିନ୍ତା କରିବ । ଆଣ୍ଠୁଠାରୁ ନାଭିପର୍ଯ୍ୟନ୍ତ ସ୍ଥାନକୁ ଅର୍ଦ୍ଧଚନ୍ଦ୍ରାକାର ପଦ୍ମଚିହ୍ନିତ ଶୁକ୍ଳବର୍ଣ୍ଣ ବଂ ବୀଜଯୁକ୍ତ ଜଳର ସ୍ଥାନ ବୋଲି ଭାବିବ । ନାଭିଠାରୁ କର୍ଣ୍ଣ ପର୍ଯ୍ୟନ୍ତ ଭାଗକୁ ତ୍ରିକୋଣ ସ୍ୱସ୍ତିକ △ ଚିହ୍ନଯୁକ୍ତ ରକ୍ତବର୍ଣ୍ଣ ରଂ ବୀଜଯୁକ୍ତ ବହ୍ନିର ସ୍ଥାନ ବୋଲି ଭାବିବ । କଣ୍ଠଠାରୁ ଭ୍ରୂଲତା ମଧ ପର୍ଯ୍ୟନ୍ତ ଭାଗକୁ ବିନ୍ଦୁ ଚିହ୍ନିତ ଷଟ୍‌କୋଣ

✡ ଧୂସର ବର୍ଣ୍ଣ 'ଯଂ' ବୀଜଯୁକ୍ତ ବାୟୁର ସ୍ଥାନ ବୋଲି ଭାବିବ । ଭ୍ରୂଲତାଠାରୁ ବ୍ରହ୍ମରନ୍ଧ୍ରପର୍ଯ୍ୟନ୍ତ ଭାଗକୁ ଗୋଲାକାର ◯ ପତାକା ଚିହ୍ନିତ ଧୂମବର୍ଣ୍ଣ 'ହଂ' ବୀଜଯୁକ୍ତ ଆକାଶର ସ୍ଥାନ ବୋଲି ଭାବିବ । ଏହିପରି ଧ୍ୟାନ କରି କ୍ରମରେ ପୃଥିବୀ ଜଳରେ, ଜଳ ବହ୍ନିରେ, ବହ୍ନି ବାୟୁରେ, ବାୟୁ ଆକାଶରେ, ଆକାଶ ପ୍ରକୃତିରେ, ପ୍ରକୃତି ପରଂବ୍ରହ୍ମରେ ଲୀନ ହେଲା ବୋଲି ଭାବି ନିଜକୁ ପରଂବ୍ରହ୍ମ ବୋଲି କିଛିକ୍ଷଣ ଚିନ୍ତା କରିବ ।

ତାପରେ ପରମାତ୍ମାଙ୍କଠାରୁ ପ୍ରକୃତି, ପ୍ରକୃତିରୁ ଆକାଶ, ଆକାଶରୁ ବାୟୁ, ବାୟୁରୁ ବହ୍ନି, ବହ୍ନିରୁ ଜଳ, ଜଳରୁ ପୃଥିବୀ ଏହି କ୍ରମରେ ପରିଶୁଦ୍ଧ ଦେହର ଉତ୍ପତ୍ତି ଚିନ୍ତା କରିବ । ନିଜର ଆତ୍ମାକୁ ସମସ୍ତ ମନ୍ତ୍ରମୟ ଦେବତାସ୍ୱରୂପ ବୋଲି ଚିନ୍ତା କରିବ । ଇତି ।

**କରଶୁଦ୍ଧି -**

ଦୁଇହାତରେ ଚନ୍ଦନ ଲଗାଇ, ଦୁଇ ହାତ ମଧ୍ୟରେ ପୁଷ୍ପ ରଖି ଉଭୟ ହାତକୁ ଅସ୍ତ୍ରମନ୍ତ୍ରରେ ପରସ୍ପର ଘଷିବ । ଏହାକୁ କରଶୁଦ୍ଧି କୁହାଯାଏ ।

## ପ୍ରାଣପ୍ରତିଷ୍ଠା

ଓଁ ପ୍ରାଣପ୍ରତିଷ୍ଠାମନ୍ତ୍ରସ୍ୟ, ବ୍ରହ୍ମାବିଷ୍ଣୁମହେଶ୍ୱରାଃ ଋଷୟଃ, ଋଗ୍‌ଯଜୁଃସାମାଥର୍ବାଣି ଛନ୍ଦାଂସି, ଚୈତନ୍ୟରୂପା ପ୍ରାଣଶକ୍ତିର୍ଦ୍ଦେବତା, ଓଁ ଆଂ ବୀଜଂ ହ୍ରୀଂ ଶକ୍ତିଃ କ୍ରୌଂ କୀଳକଂ, ମମ ପ୍ରାଣପ୍ରତିଷ୍ଠାକର୍ମଣି ବିନିଯୋଗଃ ।

**କରନ୍ୟାସଃ -**

ଓଁ ଅଂ କଂ ଖଂ ଗଂ ଘଂ ଙଂ ଆଂ ପୃଥିବ୍ୟପ୍‌ତେଜୋବାୟ୍ୱାକାଶାତ୍ମନେ ଅଙ୍ଗୁଷ୍ଠାଭ୍ୟାଂ ନମଃ ।

ଓଁ ଇଂ ଚଂ ଛଂ ଜଂ ଝଂ ଞଂ ଈଂ ଶବ୍ଦସ୍ପର୍ଶରୂପରସଗନ୍ଧାତ୍ମନେ ତର୍ଜନୀଭ୍ୟାଂ ସ୍ୱାହା ।

ଓଁ ଉଂ ଟଂ ଠଂ ଡଂ ଢଂ ଣଂ ଊଂ ଶ୍ରୋତ୍ରତ୍ୱକ୍‌ଚକ୍ଷୁର୍ଜିହ୍ୱାଘ୍ରାଣାତ୍ମନେ ମଧ୍ୟମାଭ୍ୟାଂ ବଷଟ୍ ।

ଓଁ ଏଂ ତଂ ଥଂ ଦଂ ଧଂ ନଂ ଐଂ ବାକ୍‌ପାଣିପାଦପାୟୂପସ୍ଥାତ୍ମନେ ଅନାମିକାଭ୍ୟାଂ ହୂମ୍ ।

ଓଁ ପଂ ଫଂ ବଂ ଭଂ ମଂ ଔଂ ବଚନାଦାନଗତିବିସର୍ଗାନନ୍ଦାତ୍ମନେ କନିଷ୍ଠାଭ୍ୟାଂ ବୌଷଟ୍ ।

ଓଁ ଅଂ ଯଂ ରଂ ଲଂବଂ ଶଂ ଷଂ ସଂ ହଂ ଳଂ କ୍ଷଂ ପ୍ରକୃତିମନୋବୁଦ୍ଧ୍ୟହଂକାରଚିତ୍ତାତ୍ମନେ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସଃ -

ଓଁ ଅଂ କଂ ଖଂ ଗଂ ଘଂ ଙଂ ଆଂ ପୃଥିବ୍ୟପ୍‌ତେଜୋବାୟ୍ୱାକାଶାତ୍ମନେ ହୃଦୟାୟ ନମଃ ।

ଓଁ ଇଂ ଚଂ ଛଂ ଜଂ ଝଂ ଞଂ ଈଂ ଶବ୍ଦସ୍ପର୍ଶରୂପରସଗନ୍ଧାତ୍ମନେ ଶିରସେ ସ୍ୱାହା ।

ଓଁ ଉଂ ଟଂ ଠଂ ଡଂ ଢଂ ଣଂ ଊଂ ଶ୍ରୋତ୍ରତ୍ୱକ୍‌ଚକ୍ଷୁର୍ଜିହ୍ୱାଘ୍ରାଣାତ୍ମନେ ଶିଖାୟୈ ବଷଟ୍ ।

ଓଁ ଏଂ ତଂ ଥଂ ଦଂ ଧଂ ନଂ ଐଂ ବାକ୍‌ପାଣିପାଦପାୟୂପସ୍ଥାତ୍ମନେ କବଚାୟ ହୂମ୍ ।

ଓଁ ଓଂ ପଂ ଫଂ ବଂ ଭଂ ମଂ ଔଂ ବଚନାଦାନଗତିବିସର୍ଗାନନ୍ଦାତ୍ମନେ ନେତ୍ରାଭ୍ୟାଂ ବୌଷଟ୍ ।

ଓଁ ଅଂ କ୍ଷଂ ରଂ ଲଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ପ୍ରକୃତି-ମନୋବୁଦ୍ଧ୍ୟହଂକାରଚିତ୍ତାତ୍ମନେ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ॥

ଏହାପରେ -

ଓଁ ଆଂ ନମଃ କହି ନାଭିରୁ ପାଦପର୍ଯ୍ୟନ୍ତ ସ୍ପର୍ଶ କରିବ ।

ଓଁ ହ୍ରୀଂ ନମଃ କହି ହୃଦୟରୁ ନାଭିପର୍ଯନ୍ତ ସ୍ପର୍ଶ କରିବ ।

ଓଁ କ୍ରୌଂ ନମଃ କହି ମସ୍ତକରୁ ହୃଦୟପର୍ଯ୍ୟନ୍ତ ସ୍ପର୍ଶ କରିବ ।

ଓଁ ୟଂ ତ୍ୱଗାତ୍ମନେ ନମଃ କହି ହୃଦୟପ୍ରଦେଶକୁ ସ୍ପର୍ଶ କରିବ ।

ଓଁ ରଂ ଅସୃଗାତ୍ମନେ ନମଃ କହି ଦକ୍ଷିଣସ୍କନ୍ଧକୁ ସ୍ପର୍ଶ କରିବ ।

ଓଁ ଲଂ ମାଂସାତ୍ମନେ ନମଃ କହି କକୁଦ ପ୍ରଦେଶକୁ ସ୍ପର୍ଶ କରିବ ।

ଓଁ ବଂ ବେଦାତ୍ମନେ ନମଃ କହି ବାମସ୍କନ୍ଧକୁ ସ୍ପର୍ଶ କରିବ ।

ଓଁ ଶଂ ଅସ୍ଥ୍ୟାତ୍ମନେ ନମଃ କହି ଦକ୍ଷିଣହସ୍ତକୁ ସ୍ପର୍ଶ କରିବ ।

ଓଁ ଷଂ ମଜ୍ଜାତ୍ମନେ ନମଃ କହି ବାମହସ୍ତକୁ ସ୍ପର୍ଶ କରିବ ।

ଓଁ ସଂ ଶୁକ୍ରାତ୍ମନେ ନମଃ କହି ହୃଦୟଠାରୁ ଦକ୍ଷିଣପାଦପର୍ଯ୍ୟନ୍ତ ସ୍ପର୍ଶ କରିବ ।

ଓଁ ହଂ ପ୍ରାଣାତ୍ମନେ ନମଃ କହି ହୃଦୟଠାରୁ ବାମ ପାଦ ପର୍ଯ୍ୟନ୍ତ ସ୍ପର୍ଶ କରିବ ।

ଓଁ ଲଂ ଶକ୍ତ୍ୟାତ୍ମନେ ନମଃ କହି ଜଠରପ୍ରଦେଶକୁ ସ୍ପର୍ଶ କରିବ ।

ଓଁ କ୍ଷଂ ଜୀବାତ୍ମନେ ନମଃ କହି ମୁଖକୁ ସ୍ପର୍ଶ କରିବ ।

ଧ୍ୟାନମ୍ -

ଓଁ ରକ୍ତାମ୍ଭୋଧିସ୍ଥପୋତୋଲ୍ଲସଦରୁଣସରୋଜାଧିରୂଢ଼ାକରାବ୍ଜୈଃ
ପାଶଂ କୋଦଣ୍ଡମିକ୍ଷୁଦ୍ଭବମଭୟବରାବଙ୍କୁଶଂ ପଞ୍ଚବାଣାନ୍ ।
ବିଭ୍ରାଣାସୃକ୍‌କପାଳଂ ତ୍ରିନୟନଲସିତା ପୀନବକ୍ଷୋରୁହାଢ୍ୟା
ଦେବୀ ବାଳାର୍କବର୍ଣ୍ଣା ଭବତୁ ସୁଖକରୀ ପ୍ରାଣଶକ୍ତିଃ ପରା ନଃ ॥

ଏହାପରେ ଗନ୍ଧପୁଷ୍ପ ଡାହାଣହାତରେ ଧରି ନିଜ ହୃଦୟକୁ ସ୍ପର୍ଶ କରି ଲେଲିହାନମୁଦ୍ରାରେ ପ୍ରାଣ ପ୍ରତିଷ୍ଠା କରିବ । ଯଥା-

ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଲଂ କ୍ଷଂ ସୋଽହଂ ହଂସଃ ମମ ପ୍ରାଣାଃ, ଇହ ପ୍ରାଣାଃ, ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ

ଲଂ କ୍ଷଂ ସୋଽହଂ ହଂସଃ ମମ ଜୀବ ଇହ ସ୍ଥିତଃ । ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଲଂ କ୍ଷଂ ସୋଽହଂ ହଂସଃ ମମ ସର୍ବେନ୍ଦ୍ରିୟାଣି ଇହସ୍ଥିତାନି । ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଲଂ କ୍ଷଂ ସୋଽହଂ ହଂ ସଃ ମମ ବାଙ୍ମନଶ୍ଚକ୍ଷୁଶ୍ରୋତ୍ରତ୍ୱକ୍ରସନାଘ୍ରାଣପ୍ରାଣା ଇହାଗତ୍ୟ ସୁଖ ଚିରଂ ତିଷ୍ଠତୁ ସ୍ୱାହା । ଏହିପରି ତିନିଥର କରିବ ।

ଏହାପରେ ଦୁଇହାତରେ ଗନ୍ଧପୁଷ୍ପ ଘର୍ଷଣ କରି ଅସ୍ତ୍ରମନ୍ତ୍ର ପାଠ କରି କରଶୁଦ୍ଧି କରିବ ଓ ପ୍ରାଣାୟାମ କରିବ ।

**ପ୍ରାଣାୟାମଃ -**

ଓଁ ପ୍ରଣବମନ୍ତ୍ରସ୍ୟ, ପ୍ରଜାପତିଋଷିଃ, ଗାୟତ୍ରୀଛନ୍ଦଃ, ପରମାତ୍ମାଦେବତା, ଅକାରୋ ବୀଜମ୍, ଉକାରଃ ଶକ୍ତିଃ, ମକାରଃ କୀଲକମ୍, ପ୍ରାଣାୟାମେ ବିନିଯୋଗଃ ।

**କରନ୍ୟାସଃ -** ଓଁ ଅଂ ଓଁ ଆଂ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ଇଂ ଓଁ ଈଂ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ଉଂ ଓଁ ଊଂ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ଏଂ ଓଁ ଐଂ ଅନାମିକାଭ୍ୟାଂ ହୂମ୍ ।
ଓଁ ଓଂ ଓଁ ଔଂ କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଅଂ ଓଁ ଅଃ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସଃ -** ଓଁ ଅଂ ଓଁ ଆଂ ହୃଦୟାୟ ନମଃ ।
ଓଁ ଇଂ ଓଁ ଈଂ ଶିରସେ ସ୍ୱାହା ।
ଓଁ ଉଂ ଓଁ ଊଂ ଶିଖାୟୈ ବଷଟ୍ ।
ଓଁ ଏଂ ଓଁ ଐଂ କବଚାୟ ହୂମ୍ ।
ଓଁ ଓଂ ଓଁ ଔଂ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଅଂ ଓଁ ଅଃ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍ -

ଓଁ ବିଷ୍ଣୁଂ ଭାସ୍ୱତ୍ କିରୀଟାଙ୍ଗଦବଲୟଗଲାକଳ୍ପହାରୋଦରାଙ୍ଘ୍ରିଂ
ଶ୍ରୋଣୀଭୂଷଂ ସବକ୍ଷୋମଣିମକରମହାକୁଣ୍ଡଲାମଣ୍ଡିତାଙ୍ଗମ୍ ।
ହସ୍ତୋଦ୍ୟଚ୍ଚକ୍ରଶଂଖାମ୍ବୁଜଗଦମମଳଂ ପୀତକୌଶେୟବାସୋ
ବିଦ୍ୟୋତଦ୍ଭାସମୁଦ୍ୟଦ୍ଦିନକରସଦୃଶଂ ପଦ୍ମସଂସ୍ଥଂ ନମାମି ॥

ଏହା ପାଠ କରି ଓଁ କାର ଉଚ୍ଚାରଣ ପୂର୍ବକ ୩ ଥର ପ୍ରାଣାୟାମ କରିବ । ପ୍ରାଣାୟାମବିଧି ନିତ୍ୟକର୍ମପ୍ରଦୀପ - ପ୍ରଥମଶିଖା (ପୃ.୧୧୭)ରେ ଦ୍ରଷ୍ଟବ୍ୟ । ତାପରେ ମୂଳମନ୍ତ୍ରରେ ବ୍ୟାପକନ୍ୟାସ କରିବ ।

## ମାତୃକାନ୍ୟାସଃ

ଋଷ୍ୟାଦିନ୍ୟାସଃ -

ମାତୃକାମନ୍ତ୍ରସ୍ୟ, ବ୍ରହ୍ମାଋଷିଃ, ଗାୟତ୍ରୀଛନ୍ଦଃ, ମାତୃକା ସରସ୍ୱତୀ ଦେବତା, ହଲୋ ବୀଜମ୍, ସ୍ୱରାଃ ଶକ୍ତୟଃ, ମାତୃକାନ୍ୟାସେ ବିନିୟୋଗଃ ।

କରନ୍ୟାସଃ -

ଓଁ ଅଂ କଂ ଖଂ ଗଂ ଘଂ ଙଂ ଆଂ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ଇଂ ଚଂ ଛଂ ଜଂ ଝଂ ଞଂ ଈଂ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ଉଂ ଟଂ ଠଂ ଡଂ ଢଂ ଣଂ ଊଂ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ଏଂ ତଂ ଥଂ ଦଂ ଧଂ ନଂ ଐଂ ଅନାମିକାଭ୍ୟାଂ ହୁମ୍ ।
ଓଁ ଓଂ ପଂ ଫଂ ବଂ ଭଂ ମଂ ଔଂ କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଅଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହଂ ଲଂ କ୍ଷଂ ଅଃ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସଃ -

ଓଁ ଅଂ କଂ ଖଂ ଗଂ ଘଂ ଙଂ ଆଂ ହୃଦୟାୟ ନମଃ ।

ଓଁ ଇଂ ଚଂ ଛଂ ଜଂ ଝଂ ଞଂ ଈଂ ଶିରସେ ସ୍ୱାହା ।

ଓଁ ଉଂ ଟଂ ଠଂ ଡଂ ଢଂ ଣଂ ଊଂ ଶିଖାୟୈ ବଷଟ୍ ।

ଓଁ ଏଂ ତଂ ଥଂ ଦଂ ଧଂ ନଂ ଐଂ କବଚାୟ ହୂମ୍ ।

ଓଁ ଓଂ ପଂ ଫଂ ବଂ ଭଂ ମଂ ଔଂ ନେତ୍ରାଭ୍ୟାଂ ବୌଷଟ୍ ।

ଓଁ ଅଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ଅଃ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍ -

ଓଁ ପଞ୍ଚାଶଦ୍ ବର୍ଣ୍ଣଭେଦୈର୍ବିହିତବଦନଦୋଃ ପାଦଯୁକ୍‌କୁକ୍ଷିବକ୍ଷୋ-
ଦେହାଂ ଭାସ୍ୱତ୍‌କପର୍ଦ୍ଦାକଳିତଶଶିକଳାମିନ୍ଦୁକୁନ୍ଦାବଦାତାମ୍ ।
ଅକ୍ଷସ୍ରକ୍‌କୁମ୍ଭଚିନ୍ତାଲିଖିତବରକରାଂ ତ୍ରୀକ୍ଷଣାଂ ପଦ୍ମସଂସ୍ଥା-
ମଚ୍ଛାକଳ୍ପାମତୁଚ୍ଛସ୍ତନଜଘନଭରାଂ ଭାରତୀଂ ତାଂ ନମାମି ॥

ଅନ୍ତର୍ମାତୃକା -

ମୂଳାଧାରପଦ୍ମରେ ବଂ ନମଃ, ଶଂ ନମଃ, ଷଂ ନମଃ, ସଂ ନମଃ ଏହି ଚାରିବର୍ଣ୍ଣଙ୍କୁ ନ୍ୟାସ କରିବ ।

ଲିଙ୍ଗପଦ୍ମରେ -

ବଂ ନମଃ,ଭଂ ନମଃ, ମଂ ନମଃ ଯଂ ନମଃ, ରଂ ନମଃ,ଲଂ ନମଃ ଏହି ଛଅବର୍ଣ୍ଣମାନଙ୍କୁ ନ୍ୟାସ କରିବ ।

ନାଭିପଦ୍ମରେ -

ଡଂ ନମଃ, ଢଂ ନମଃ, ଣଂ ନମଃ, ତଂ ନମଃ, ଥଂ ନମଃ,
ଦଂ ନମଃ, ଧଂ ନମଃ, ନଂ ନମଃ, ପଂ ନମଃ, ଫଂ ନମଃ ଏହି ଦଶବର୍ଣ୍ଣମାନଙ୍କୁ ନ୍ୟାସ କରିବ ।

ହୃଦୟପଦ୍ମରେ -

କଂ ନମଃ, ଖଂ ନମଃ , ଗଂ ନମଃ, ଘଂ ନମଃ ଙଂ ନମଃ
ଚଂ ନମଃ, ଛଂ ନମଃ, ଜଂ ନମଃ, ଝଂ ନମଃ, ଞଂ ନମଃ,
ଟଂ ନମଃ, ଠଂ ନମଃ ଏହି ଦ୍ୱାଦଶବର୍ଣ୍ଣମାନଙ୍କୁ ନ୍ୟାସ କରିବ ।

କଣ୍ଠପଦ୍ମରେ -

ଅଂ ନମଃ, ଆଂ ନମଃ, ଇଂ ନମଃ ଈଂ ନମଃ ଉଂ ନମଃ,
ଊଂ ନମଃ, ଋଂ ନମଃ, ୠଂ ନମଃ, ଌଂ ନମଃ, ୡଂ ନମଃ
ଏଂ ନମଃ, ଐଂ ନମଃ, ଓଂନମଃ, ଔଂ ନମଃ, ଅଂ ନମଃ, ଅଃ ନମଃ,
ଏହି ଷୋଡଶ ବର୍ଣ୍ଣମାନଙ୍କୁ ନ୍ୟାସ କରିବ ।

ଭ୍ରୂଲତାପଦ୍ମରେ -

ହଂ ନମଃ କ୍ଷଂ ନମଃ ଏହି ଦୁଇବର୍ଣ୍ଣକୁ ନ୍ୟାସ କରିବ ।

ବହିର୍ମାତୃକାନ୍ୟାସଃ -

| | | |
|---|---|---|
| ଶିରରେ | ଅଂ ନମଃ । | ମୁଖମଣ୍ଡଳରେ ଆଂ ନମଃ । |
| ଦକ୍ଷିଣନେତ୍ରରେ | ଇଂ ନମଃ । | ବାମନେତ୍ରରେ ଈଂ ନମଃ । |
| ଦକ୍ଷିଣକର୍ଣ୍ଣରେ | ଉଂ ନମଃ । | ବାମକର୍ଣ୍ଣରେ ଊଂ ନମଃ । |
| ଦକ୍ଷିଣନାକପୁଡାରେ | ଋଂ ନମଃ । | ବାମନାକପୁଡାରେ ୠଂ ନମଃ। |
| ଦକ୍ଷିଣଗଣ୍ଡରେ | ଌଂ ନମଃ । | ବାମଗଣ୍ଡରେ ୡଂ ନମଃ । |
| ଉପରଓଠରେ | ଏଂ ନମଃ । | ତଳଓଠରେ ଐଂ ନମଃ । |
| ଉପରଦାନ୍ତପାଟିରେ | ଓଂ ନମଃ । | ତଳଦାନ୍ତପାଟିରେ ଔଂ ନମଃ । |
| ଶିରରେ | ଅଂ ନମଃ । | ମୁଖରେ ଅଃ ନମଃ । |

ଦକ୍ଷିଣ ବାହୁର ମୂଳ, ମଧ, କଟଟି, ଆଙ୍ଗୁଠିମୂଳ ଓ ଆଙ୍ଗୁଠିଅଗରେ ଯଥାକ୍ରମେ-
କଂ ନମଃ । ଖଂ ନମଃ । ଗଂ ନମଃ । ଘଂ ନମଃ । ଙଂ ନମଃ ।

ବାମବାହୁର ମୂଳ, ମଧ, କଚଟି, ଆଙ୍ଗୁଠିମୂଳ, ଓ ଆଙ୍ଗୁଳି ଅଗରେ ଯଥାକ୍ରମେ

ଚଂ ନମଃ । ଛଂ ନମଃ । ଜଂ ନମଃ । ଝଂ ନମଃ । ଞଂ ନମଃ ।

ଦକ୍ଷିଣଗୋଡ଼ର ପଞ୍ଚସନ୍ଧିସ୍ଥାନ (୧- କଟିପାଖ, ୨- ଆଣ୍ଠୁ, ୩- ଗୋଇଠି ପାଖ, ୪- ବଳାଗଣ୍ଠି; ୫- ଆଙ୍ଗୁଠି ଅଗ) ରେ ଯଥାକ୍ରମେ -

ଟଂ ନମଃ । ଠଂ ନମଃ । ଡଂ ନମଃ । ଢଂ ନମଃ । ଣଂ ନମଃ ।

ବାମଗୋଡ଼ ରେ ସେହିପରି ପଞ୍ଚସନ୍ଧିସ୍ଥାନରେ -

ତଂ ନମଃ । ଥଂ ନମଃ । ଦଂ ନମଃ । ଧଂ ନମଃ । ନଂ ନମଃ ।

ନିଜ ଦେହର ଦକ୍ଷିଣପାଖରେ - ପଂ ନମଃ । ବାମ ପାଖରେ - ଫଂ ନମଃ ।

ପିଠିରେ - ବଂ ନମଃ । ନାଭିରେ - ଭଂ ନମଃ । ପେଟରେ - ମଂ ନମଃ ।

ହୃଦୟରେ - ଯଂ ନମଃ । ଦକ୍ଷିଣକାନ୍ଧରେ - ରଂ ନମଃ ।

ବେକମୂଣ୍ଡରେ - ଲଂ ନମଃ । ବାମକାନ୍ଧରେ - ବଂ ନମଃ ।

ହୃଦୟଠାରୁ ଡାହାଣହାତପର୍ଯ୍ୟନ୍ତ - ଶଂ ନମଃ ।

ହୃଦୟଠାରୁ ବାମହସ୍ତପର୍ଯ୍ୟନ୍ତ - ଷଂ ନମଃ ।

ହୃଦୟଠାରୁ ଦକ୍ଷିଣପାଦପର୍ଯ୍ୟନ୍ତ - ସଂ ନମଃ ।

ହୃଦୟଠାରୁ ବାମପାଦପର୍ଯ୍ୟନ୍ତ - ହଂ ନମଃ ।

ପେଟରେ - ଳଂ ନମଃ । ମୁଖରେ - କ୍ଷଂ ନମଃ ।

**ଅର୍ଘ୍ୟସଂସ୍କାରଃ -**

ଭୂମିରେ ଗୋମୟ ଜଳସେଚନ କରି ତହିଁରେ ମତ୍ସ୍ୟମୁଦ୍ରାରେ ତ୍ରିକୋଣ କରି ତାହାର ବାହାରପାର୍ଶ୍ୱରେ ଷଟ୍‌କୋଣ ବୃତ୍ତ ଅଙ୍କନ କରି ତାହାର ବାହାର ଭାଗରେ ଚତୁଷୋଣ କରି କ୍ରମାନୁସାରେ ମଣ୍ଡଳର ଚାରିକୋଣରେ ଯଥାକ୍ରମେ ପୂଜା କରିବ । ପ୍ରଣବମନ୍ତ୍ରରେ ଶଂଖାଧାରକୁ ଧୋଇ ଦେଇ ମଣ୍ଡଳ ଉପରେ ଥୋଇବ । ଅସ୍ତ୍ରମନ୍ତ୍ର ଉଚ୍ଚାରଣ କରି ଅର୍ଘ୍ୟପାତ୍ରକୁ ପ୍ରକ୍ଷାଳନ କରି ରଖିବ । ଶଂଖାଧାରକୁ ଓଁ ମଂ ଦଶକଳାତ୍ମନେ ବହ୍ନିମଣ୍ଡଳାୟ ନମଃ ଏହା ବୋଲି ଫୁଲ

ପକାଇ ପୂଜା କରିବ । ଓ ଅଂ ଦ୍ୱାଦଶକଳାତ୍ମନେ ସୂର୍ଯ୍ୟମଣ୍ଡଳାୟ ନମଃ ଇତି ଶଂଖକୁ, ଓଁ ଉଂ ଷୋଡଶକଳାତ୍ମନେ ଚନ୍ଦ୍ରମଣ୍ଡଳାୟ ନମଃ ଏହା କହି ଶଂଖରେ ଜଳ ପୂରାଇ ଜଳକୁ ପୂଜା କରିବ ।

ଏହାପରେ - **ଗଙ୍ଗେ ଚ ଯମୁନେ ଚୈବ ଗୋଦାବରି ସରସ୍ୱତି ।**

**ନର୍ମଦେ ସିନ୍ଧୁକାବେରୀ ଜଲେଽସ୍ମିନ୍ ସନ୍ନିଧିଂ କୁରୁ ॥**

ଏହି ମନ୍ତ୍ର ପଢ଼ି ଅଙ୍କୁଶ ମୁଦ୍ରା ଦ୍ୱାରା ସୂର୍ଯ୍ୟମଣ୍ଡଳରୁ ତୀର୍ଥାବାହନ କରିବ । ତାପରେ ଧେନୁମୁଦ୍ରା ଅମୃତୀକରଣ କରି ତହିଁରେ ନିଜର ହୃଦୟରୁ ଇଷ୍ଟଦେବତାଙ୍କୁ ଚିନ୍ତା କରି ଅଙ୍ଗନ୍ୟାସ ଦ୍ୱାରା ସକଳୀକରଣ କରିବ । କବଚ ମନ୍ତ୍ର ଦ୍ୱାରା ଅବଗୁଣ୍ଠନ କରି, ତାପରେ ଅସ୍ତ୍ରମନ୍ତ୍ରଦ୍ୱାରା ଦିଗ୍‌ବନ୍ଧନ କରି ବୀକ୍ଷଣ କରିବ । ଶଂଖମୁଦ୍ରାଦ୍ୱାରା ତାହାକୁ ସ୍ପର୍ଶ କରି ଯୋନିମୁଦ୍ରାଦ୍ୱାରା ଉଦ୍ଦୀପନ କରିବ । ଇଷ୍ଟଦେବତା ବୁଦ୍ଧିରେ ଗନ୍ଧପୁଷ୍ପାଦି ଦେଇ ମତ୍ସ୍ୟମୁଦ୍ରାରେ ଆଚ୍ଛାଦନ କରି ମୂଳମନ୍ତ୍ର ଆଠଥର ଜପ କରିବ । ସେହି ଜଳଦ୍ୱାରା ପୂଜା ସ୍ଥାନକୁ ନିଜକୁ ପବିତ୍ର କରିବ । ପ୍ରତିମା ଓ ପୂଜା ଦ୍ରବ୍ୟମାନଙ୍କରେ ଫୁଲଦ୍ୱାରା ୩ ଥର ପାଣି ଛିଞ୍ଚିବ । ଏହିପରି ଅର୍ଘ୍ୟ ସଂସ୍କାର କରିବ । ଏହି ପର୍ଯ୍ୟନ୍ତ କର୍ମ ସମସ୍ତ ପୂଜାରେ କରାଯିବ । ଏହାପରେ ପୂଜକ ଚାହୁଁଥିବା ପ୍ରକାରେ ଷୋଡ଼ଶ ଉପଚାର, ଦଶ ଉପଚାର ବା ନ୍ୟୂନାତିନ୍ୟୂନ ପଞ୍ଚୋପଚାରରେ ଇଷ୍ଟଦେବଙ୍କୁ ପୂଜା କରିବ ।

## ଶ୍ରୀବିଷ୍ଣୁପୂଜା

**କେଶବାଦିନ୍ୟାସଃ -**

**ଓଁ କେଶବାଦିନ୍ୟାସସ୍ୟ ଦକ୍ଷପ୍ରଜାପତିରଷିଃ, ଗାୟତ୍ରୀ ଛନ୍ଦଃ, ଲକ୍ଷ୍ମୀନାରାୟଣୌ ଦେବତେ, ଶ୍ରୀଂ ବୀଜଂ, ସ୍ୱାହା ଶକ୍ତିଃ, କେଶବପ୍ରୀତ୍ୟର୍ଥେ ବିନିଯୋଗଃ ।**

କରନ୍ୟାସଃ -

ଓଁ ଶ୍ରାଂ ଅଙ୍ଗୁଷ୍ଠାଭ୍ୟାଂ ନମଃ । ଓଁ ଶ୍ରୀଂ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ଶ୍ରୂଂ ମଧ୍ୟମାଭ୍ୟାଂ ବଷଟ୍ । ଓଁ ଶ୍ରୈଂ ଅନାମିକାଭ୍ୟାଂ ହୂମ୍ ।
ଓଁ ଶ୍ରୌଂ କନିଷ୍ଠାଭ୍ୟାଂ ବୌଷଟ୍ । ଓଁ ଶ୍ରଃ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସଃ -

ଓଁ ଶ୍ରାଂ ହୃଦୟାୟ ନମଃ । ଓଁ ଶ୍ରୀଂ ଶିରସେ ସ୍ୱାହା ।
ଓଁ ଶ୍ରୂଂ ଶିଖାୟୈ ବଷଟ୍ । ଓଁ ଶ୍ରୈଂ କବଚାୟ ହୂମ୍ ।
ଓଁ ଶ୍ରୌଂ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଶ୍ରଃ କରତଳକରପୃଷ୍ଠାଭ୍ୟାମ୍ ଅସ୍ତ୍ରାୟ ଫଟ୍ ।

ଧ୍ୟାନମ୍ -

ଓଁ ଉଦ୍ୟଦ୍‌ପ୍ରଦ୍ୟୋତନଶତରୁଚିଂ ତପ୍ତହେମାବଦାତଂ
ପାର୍ଶ୍ୱଦ୍ୱନ୍ଦ୍ୱେ ଜଲଧିତନୟା ବିଶ୍ୱଧାତ୍ର୍ୟା ଚ ଜୁଷ୍ଟମ୍ ।
ନାନାରତ୍ନୋଲ୍ଲସିତବିବିଧାକଳ୍ପମାପୀତବସ୍ତ୍ରଂ
ବିଷ୍ଣୁଂ ବନ୍ଦେ ଦରକମଲକୌମୋଦକୀଂ ଚକ୍ରପାଣିମ୍ ॥ ୧ ॥

ନ୍ୟାସଃ -

ଓଁ ଅଂ କ୍ଲୀଂ କେଶବାୟ କୀର୍ତ୍ତ୍ୟୈ ନମଃ ଶିରସି ।
ଓଁ ଆଂ ନାରାୟଣାୟ କାନ୍ତ୍ୟୈ ନମଃ ମୁଖବୃତ୍ତେ ।
ଓଁ ଇଂ ମାଧବାୟ ତୁଷ୍ଟ୍ୟୈ ନମଃ ଦକ୍ଷିଣନେତ୍ରେ ।
ଓଁ ଈଂ ଗୋବିନ୍ଦାୟ ପୁଷ୍ଟ୍ୟୈ ନମଃ ବାମନେତ୍ରେ ।
ଓଁ ଉଂ ବିଷ୍ଣବେ ଧୃତ୍ୟୈ ନମଃ ଦକ୍ଷିଣକର୍ଣ୍ଣେ ।
ଓଁ ଊଂ ମଧୁସୂଦନାୟ କ୍ଷାନ୍ତ୍ୟୈ ନମଃ ବାମକର୍ଣ୍ଣେ ।
ଓଁ ଋଂ ତ୍ରିବିକ୍ରମାୟ କ୍ରିୟାୟୈ ନମଃ ଦକ୍ଷିଣନାସାପୁଟେ ।
ଓଁ ୠଂ ବାମନାୟ ଦୟାୟୈ ନମଃ ବାମନାସାପୁଟେ ।

ଓଁ ଲୃଂ ଶ୍ରୀଧରାୟ ମେଧାୟୈ ନମଃ ଦକ୍ଷିଣଗଣ୍ଡେ ।
ଓଁ ଲୄଂ ହୃଷୀକେଶାୟ ହର୍ଷାୟୈ ନମଃ ବାମଗଣ୍ଡେ ।
ଓଁ ଏଂ ପଦ୍ମନାଭାୟ ଶ୍ରଦ୍ଧାୟୈ ନମଃ ଉର୍ଦ୍ଧ୍ୱୋଷ୍ଠେ ।
ଓଁ ଐଂ ଦାମୋଦରାୟ ଲଜ୍ଜାୟୈ ନମଃ ଅଧରୌଷ୍ଠେ ।
ଓଁ ଓଂ ବାସୁଦେବାୟ ଲକ୍ଷ୍ମ୍ୟୈ ନମଃ ଉର୍ଦ୍ଧ୍ୱଦନ୍ତପଂକ୍ତୌ ।
ଓଁ ଔଂ ସଙ୍କର୍ଷଣାୟ ସରସ୍ୱତ୍ୟୈ ନମଃ ଅଧୋଦନ୍ତପଂକ୍ତୌ ।
ଓଁ ଅଂ ପ୍ରଦ୍ୟୁମ୍ନାୟ ପ୍ରୀତ୍ୟୈ ନମଃ ଶିରସି ।
ଓଁ ଅଃ ଅନିରୁଦ୍ଧାୟ ରତ୍ୟୈ ନମଃ ମୁଖେ ।
ଓଁ କଂ ଚକ୍ରିଣେ ଜୟାୟୈ ନମଃ ।
ଓଁ ଖଂ ଗଦିନେ ଦୁର୍ଗାୟୈ ନମଃ ।
ଓଁ ଗଂ ଶାର୍ଙ୍ଗିଣେ ପ୍ରଭାୟୈ ନମଃ ।
ଓଁ ଘଂ ଖଡ୍‌ଗିନେ ସତ୍ୟାୟୈ ନମଃ ।
ଓଁ ଙଂ ଶଙ୍ଖିନେ ଚଣ୍ଡାୟୈ ନମଃ ।

ଏହି ନ୍ୟାସ ଦକ୍ଷିଣ ହାତ ସନ୍ଧିର ଅଗ୍ରମାନଙ୍କରେ  କରିବ ।

ଓଁ ଚଂ ହଲିନେ ବାଣ୍ୟୈ ନମଃ ।
ଓଁ ଛଂ ମୁଷଲିନେ ବିଳାସିନ୍ୟୈ ନମଃ ।
ଓଁ ଜଂ ଶୂଳିନେ ବିଜୟାୟୈ ନମଃ ।
ଓଁ ଝଂ ପାଶିନେ ବିରଜାୟୈ ନମଃ ।
ଓଁ ଞଂ ଅଙ୍କୁଶିନେ ବିଶ୍ୱାୟୈ ନମଃ ।

ଏହି ନ୍ୟାସ ବାମହାତ ସନ୍ଧିର ଅଗ୍ରମାନଙ୍କରେ କରିବ ।

ଓଁ ଟଂ ମୁକୁନ୍ଦାୟ ବିନନ୍ଦାୟୈ ନମଃ ।
ଓଁ ଠଂ ନନ୍ଦଜାୟ ସୁନନ୍ଦାୟୈ ନମଃ ।

ଓଁ ଢଂ ନନ୍ଦିନେ ସ୍ଥିତ୍ୟୈ ନମଃ ।
ଓଁ ଢଂ ନରାୟ ଗର୍ବ୍ୟୈ ନମଃ ।
ଓଁ ଣଂ ନରକଜିତେ ସମୃଦ୍ଧ୍ୟୈ ନମଃ ।

ଏହି ନ୍ୟାସ ଦକ୍ଷିଣପାଦ ସନ୍ଧିର ଅଗ୍ରମାନଙ୍କରେ କରିବ ।

ଓଁ ତଂ ହରୟେ ଶୁଦ୍ଧ୍ୟୈ ନମଃ ।
ଓଁ ଥଂ କୃଷ୍ଣାୟ ବୁଦ୍ଧ୍ୟୈ ନମଃ ।
ଓଁ ଦଂ ସତ୍ୟାୟ ଭୂତ୍ୟୈ ନମଃ ।
ଓଁ ଧଂ ସାତ୍ୱତାୟ ମତ୍ୟୈ ନମଃ ।
ଓଁ ନଂ ଶୌରୟେ କ୍ଷମାୟୈ ନମଃ ।

ଏହି ନ୍ୟାସ ବାମପାଦସନ୍ଧିର ଅଗ୍ରମାନଙ୍କରେ କରିବ ।

ଓଁ ପଂ ଶରାୟ ରମାୟୈ ନମଃ ଦକ୍ଷିଣପାର୍ଶ୍ୱେ ।
ଓଁ ଫଂ ଜନାର୍ଦ୍ଦନାୟ ଉମାୟୈ ନମଃ ବାମପାର୍ଶ୍ୱେ ।
ଓଁ ବଂ ଭୂଧରାୟ କ୍ଲେଦିନ୍ୟୈ ନମଃ ପୃଷ୍ଠେ ।
ଓଁ ଭଂ ବିଶ୍ୱମୂର୍ତ୍ତୟେ କ୍ଲିନ୍ନାୟୈ ନମଃ ନାଭୌ ।
ଓଁ ମଂ ବୈକୁଣ୍ଠାୟ ବସୁଦାୟୈ ନମଃ ଜଠରେ ।
ଓଁ ଯଂ ତ୍ୱଗାତ୍ମନେ ପୁରୁଷୋତ୍ତମାୟ ବସୁଧାୟୈ ନମଃ ହୃଦୟେ ।
ଓଁ ରଂ ଅସୃଗାତ୍ମନେ ବଳିନେ ପରାୟୈ ନମଃ ଦକ୍ଷିଣାଂସେ ।
ଓଁ ଲଂ ମାଂସାତ୍ମନେ ବଳାନୁଜାୟ ପରାୟଣାୟୈ ନମଃ କକୁଦି ।
ଓଁ ବଂ ମେଦାତ୍ମନେ ବଳାୟ ସୂକ୍ଷ୍ମାୟୈ ନମଃ ବାମାଂସେ ।
ଓଁ ଶଂ ଅସ୍ଥ୍ୟାତ୍ମନେ ବୃଷଘ୍ନାୟ ସନ୍ଧ୍ୟାୟୈ ନମଃ ହୃଦାଦିଦକ୍ଷିଣହସ୍ତେ ।
ଓଁ ଷଂ ମଜ୍ଜାତ୍ମନେ ବୃଷାୟ ପ୍ରଜ୍ଞାୟୈ ନମଃ ହୃଦାଦିବାମହସ୍ତେ ।
ଓଁ ସଂ ଶୁକ୍ରାତ୍ମନେ ହଂସାୟ ପ୍ରଭାୟୈ ନମଃ ହୃଦାଦିଦକ୍ଷିଣପାଦେ ।

ଓଁ ହଂ ପ୍ରାଣାତ୍ମନେ ବରାହାୟ ନିଶାୟୈ ନମଃ ହୃଦାଦିବାମପାଦେ ।
ଓଁ ଲଂ ଶକ୍ତ୍ୟାତ୍ମନେ ବିମଳାୟ ଅମୋଘାୟୈ ନମଃ ହୃଦାଦିଜଠରେ ।
ଓଁ ଶ୍ରୀଂ କ୍ଷଂ କ୍ରୋଧାତ୍ମନେ ନରସିଂହାୟ ବିଦ୍ୟୁତାୟୈ ନମଃ ହୃଦାଦିମୁଖେ ।
ଇତି କେଶବାଦିନ୍ୟାସଃ

ଏହାପରେ ପୂଜିତ ଦେବତାଙ୍କ ନିମନ୍ତେ ଋଷ୍ୟାଦିନ୍ୟାସ କରିବ । ଯଥା - ଓଁ ଅସ୍ୟ ଶ୍ରୀ ଅଷ୍ଟାକ୍ଷର ନାରାୟଣମନ୍ତ୍ରସ୍ୟ, ସାଧନାରାୟଣ ଋଷିଃ, ଅନୁଷ୍ଟୁପ୍ ଛନ୍ଦଃ, ଶ୍ରୀନାରାୟଣୋ ଦେବତା, ଅକାରୋ ବୀଜମ୍, ଉକାରଃ ଶକ୍ତିଃ, ମକାରଃ କୀଲକମ୍, ମମ ବିଷ୍ଣୁପୂଜାକର୍ମଣି ବିନିଯୋଗଃ ।

**କରନ୍ୟାସଃ -** ଓଁ କ୍ରୁଦ୍ଧୋଲ୍କାୟ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ମହୋଲ୍କାୟ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ବୀରୋଲ୍କାୟ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ଦ୍ୟୁରୋଲ୍କାୟ ଅନାମିକାଭ୍ୟାଂ ହୂମ୍ ।
ଓଁ ସହସ୍ରୋଲ୍କାୟ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସଃ -** ଓଁ କ୍ରୁଦ୍ଧୋଲ୍କାୟ ହୃଦୟାୟ ନମଃ ।
ଓଁ ମହୋଲ୍କାୟ ଶିରସେ ସ୍ୱାହା ।
ଓଁ ବୀରୋଲ୍କାୟ ଶିଖାୟୈ ବଷଟ୍ ।
ଓଁ ଦ୍ୟୁରୋଲ୍କାୟ କବଚାୟ ହୂମ୍ ।
ଓଁ ସହସ୍ରୋଲ୍କାୟ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଏହି ମନ୍ତ୍ର ପଞ୍ଚାଙ୍ଗ ଅଟେ ।

**ଧ୍ୟାନମ୍ -**

ଓଁ ଅର୍କୌଘାଭଂ କିରୀଟାନ୍ୱିତମକରଲସତ୍କୁଣ୍ଡଳଂ ଦୀପ୍ତିରାଜଦ୍
କେୟୂରଂ କୌସ୍ତୁଭାଭାରୁଚିରଶବଳହାରଂ ସପୀତାମ୍ବରଂ ଚ ।

**ନାନାରତ୍ନାଂଶୁଭିନ୍ନାଭରଣଶତଯୁତଂ ଶ୍ରୀଧରାଶ୍ଳିଷ୍ଟପାର୍ଶ୍ୱଂ**
**ବନ୍ଦେ ଦୋଃସକ୍ତଚକ୍ରାମ୍ବୁରୁହଦରଗଦଂ ବିଶ୍ୱବନ୍ଦ୍ୟଂ ମୁକୁନ୍ଦମ୍ ।।**

ଏହି ମନ୍ତ୍ର ପଢି ଦେବତାଙ୍କ ଉପରେ ଫୁଲଟିଏ ନିକ୍ଷେପ କରିବ । ତାପରେ ଦେବତାଙ୍କ ହୃଦୟରେ ମୂଳମନ୍ତ୍ରକୁ (ଓଁ ନମୋ ନାରାୟଣାୟ ) ଆଠଥର ଜପ କରିବ । ଏହି ମନ୍ତ୍ର ଉଚ୍ଚାରଣ କରି ଶ୍ରୀନାରାୟଣମାବାହୟାମି, ନାରାୟଣ ଇହାଗଛ, ଇହ ତିଷ୍ଠ, ଇହ ସନ୍ନିହିତୋ ଭବ, ଇହ ସନ୍ନିରୁଦ୍ଧୋ ଭବ, ଅତ୍ରାଧିଷ୍ଠାନଂ କୁରୁ,ମମ ପୂଜାଂ ଗୃହାଣ, ଏହା ବୋଲି ଫୁଲ ପକାଇବ । ତାପରେ ଆବାହନ, ସଂସ୍ଥାପନ, ସନ୍ନିଧାନ, ସଂନିରୋଧନ, ସକଳୀକରଣ, ଅବଗୁଣ୍ଠନ, ଧେନୁମୁଦ୍ରା , ଅମୃତୀକରଣ, ମହାମୁଦ୍ରା ଓ ପରମୀକରଣ ମୁଦ୍ରାମାନଙ୍କୁ ପ୍ରଦର୍ଶନ କରିବ । ଏହାପରେ ଷୋଡଶୋପଚାର କ୍ରମାନୁସାରେ ଦାନ କରିବ ।

**ଷୋଡଶୋପଚାରଦାନକ୍ରମଃ -**

**ଆସନଂ ସ୍ୱାଗତଂ ପାଦ୍ୟମର୍ଘ୍ୟମାଚମନୀୟକଂ ।**
**ମଧୁପର୍କାଚମସ୍ନାନବସନାଭରଣାନି ଚ ।।୧ ।।**
**ସୁଗନ୍ଧକୁସୁମଧୂପଦୀପନୈବେଦ୍ୟବନ୍ଦନଂ ।**
**ପ୍ରୟୋଜୟେଦର୍ଚ୍ଚନାୟାମୁପଚାରାଂଶ୍ଚ ଷୋଡଶ ।। ୨ ।।**

ବିଷ୍ଣୁଙ୍କ ପୂଜାରେ ସମଗ୍ର ପୁରୁଷସୂକ୍ତ ବ୍ୟବହାର କରାଯାଇଥାଏ । ଉପଚାର କ୍ରମ ଅନୁସାରେ ମନ୍ତ୍ରର କ୍ରମ ଅନୁସରଣ କରାଯାଇଥାଏ ।

**ଆସନମ୍ -**

**ଓଁ ରତ୍ନସିଂହାସନଂ ଦିବ୍ୟଂ କାରୁକର୍ମାଣି ଚିତ୍ରିତଂ ।**
**ଗୃହାଣେଦଂ ଦେବ ଦେବ ନାରାୟଣ ନମୋଽସ୍ତୁ ତେ ।।**
**ଓଁ ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।**
**ସ ଭୂମିଃ ସର୍ବତସ୍ପୃତ୍ୱାଽତ୍ୟତିଷ୍ଠଦ୍ଦଶାଙ୍ଗୁଳମ୍ ।।(ଯଜୁ୩୧-୧)**
**ଓଁ ବିଷ୍ଣବେ ଆସନଂ ନମଃ ।**

ପାଦାସନମ୍ -

ମୀନରୂପୋ ବରାହଶ୍ଚ ନାରସିଂହସ୍ତ୍ରିବିକ୍ରମଃ ।
ଅର୍ପିତଂ ଶ୍ରଦ୍ଧୟା ଦେବ ଗୃହାଣ ପାଦୁକାସନମ୍ ॥
ଓଁ ବିଷ୍ଣବେ ପାଦାସନଂ ନମଃ ।

ସ୍ୱାଗତମନ୍ତ୍ରଃ -

ସ୍ୱାଗତଂ ଭୋ ଜଗନ୍ନାଥ ଜଗଦାନନ୍ଦକାରକ ।
ପୂଜାଂ ଗୃହାଣ ଲକ୍ଷ୍ମୀଶ ଭକ୍ତିଂ ମେଽପ୍ୟଚଲାଂ କୁରୁ ॥
ଓଁ ପୁରୁଷ ଏବେଦଂ ସର୍ବଂ ଯଦ୍ଭୂତଂ ଯଚ୍ଚ ଭାବ୍ୟମ୍ ।
ଉତାମୃତ ତ୍ୱସ୍ୟେଶାନୋ ଯଦନ୍ନେନାତିରୋହତି ॥
(ଯଜୁ. ୩୧.୨)
ଓଁ ବିଷ୍ଣବେ ସ୍ୱାଗତାର୍ଥଂ ପୁଷ୍ପାଣି ବୌଷଟ୍ ।

ପାଦ୍ୟମନ୍ତ୍ରଃ -

ସୁପାଦ୍ୟଂ ପାଦୟୋର୍ଦ୍ଦେବ ପଦ୍ମନାଭ ସନାତନ ।
ବିଷ୍ଣୋ କମଲପତ୍ରାକ୍ଷ ଗୃହାଣ ମଧୁସୂଦନ ॥
ଓଁ ଏତାବାନସ୍ୟ ମହିମାତୋ ଜ୍ୟାୟାଂଶ୍ଚ ପୂରୁଷଃ ।
ପାଦୋଽସ୍ୟ ବିଶ୍ୱା ଭୂତାନି ତ୍ରିପାଦସ୍ୟାମୃତଂ ଦିବି ॥ (ଯଜୁ.୩୧.୩)
ଓଁ ବିଷ୍ଣବେ ପାଦ୍ୟଂ ନମଃ ।

ଅର୍ଘ୍ୟମନ୍ତ୍ରଃ -

ତାପତ୍ରୟହରଂ ଦିବ୍ୟଂ ପରମାନନ୍ଦଲକ୍ଷଣଂ ।
ତାପତ୍ରୟବିନିର୍ମୁକ୍ତଂ ତବାର୍ଘ୍ୟଂ କଳ୍ପୟାମ୍ୟହମ୍ ॥
ଓଁ ତ୍ରିପାଦୂର୍ଦ୍ଧ୍ୱଂ ଉଦୈତ୍ ପୁରୁଷଃ ପାଦୋଽସ୍ୟେହାଭବତ୍ ପୁନଃ ।
ତତୋ ବିଷ୍ୱଙ୍ ବ୍ୟକ୍ରାମତ୍ ସାଶନାନଶନେ ଅଧି ॥ (ଯଜୁ୩୧.୪)
ଓଁ ବିଷ୍ଣବେ ଅର୍ଘ୍ୟଂ ସ୍ୱାହା ।

**ଆଚମନୀୟମନ୍ତ୍ରଃ -**

ମନ୍ଦାକିନ୍ୟାସ୍ତୁ ଯଦ୍‌ବାରି ସର୍ବପାପହରଂ ଶୁଭଂ ।
ଗୃହାଣାଚମନୀୟଂ ତ୍ୱଂ ମୟା ଭକ୍ତ୍ୟା ନିବେଦିତମ୍ ।।
ଓଁ ତତୋ ବିରାଡଜାୟତ ବିରାଜୋ ଅଧି ପୂରୁଷଃ ।
ସ ଜାତୋ ଅତ୍ୟରିଚ୍ୟତ ପଶ୍ଚାଦ୍ ଭୂମିମଥୋ ପୁରଃ ।।
(ଯଜୁ. ୩୧.୫)

ଓଁ ବିଷ୍ଣବେ ଆଚମନୀୟଂ ନମଃ ।

**ମଧୁପର୍କମନ୍ତ୍ରଃ -**

ମଧୁପର୍କ ମହାଦେବ ବ୍ରହ୍ମାଦ୍ୟୈଃ କଳ୍ପିତଂ.ପୁରା ।
ଦଦାମି ସାମ୍ପ୍ରତଂ ଭକ୍ତ୍ୟା ଗୃହାଣ ପୁରୁଷୋତ୍ତମ ।।
ଓଁ ବିଷ୍ଣବେ ମଧୁପର୍କଂ ସ୍ୱାହା ।

**ସ୍ନାନମନ୍ତ୍ରଃ -**

ତ୍ୱମାପଃ ପୃଥିବୀ ଚୈବ ଜ୍ୟୋତିସ୍ତ୍ୱଂ ବାୟୁରେବ ଚ ।
ଲୋକସଂବୃତ୍ତିମନ୍ତ୍ରେଣ ବାରିଣା ସ୍ନାପୟାମ୍ୟହମ୍ ।।
ଓଁ ତସ୍ମାଦ୍ ଯଜ୍ଞାଦ୍ ସର୍ବହୁତଃ ସମ୍ଭୃତଂ ପୃଷଦାଜ୍ୟମ୍ ।
ପଶୂଂସ୍ତାଂଶ୍ଚକ୍ରେ ବାୟବ୍ୟାନାରଣ୍ୟା ଗ୍ରାମ୍ୟାଶ୍ଚ ଯେ ।।
(ଯଜୁ. ୩୧.୬)

ଓଁ ବିଷ୍ଣବେ ସ୍ନାନୀୟଂ ବୌଷଟ୍ ।

**ବସ୍ତ୍ରମନ୍ତ୍ରଃ-**

ଦେବତନ୍ତୁସମାଯୁକ୍ତେ ପୀତବର୍ଣ୍ଣସମନ୍ୱିତେ ।
ସବର୍ଣ୍ଣବର୍ଣ୍ଣପ୍ରଭବେ ବାସସୀ ତବ କେଶବ ।।
ଓଁ ତସ୍ମାଦ୍‌ଯଜ୍ଞାଦ୍ ସର୍ବହୁତ ଋଚଃ ସାମାନି ଜଜ୍ଞିରେ ।
ଛନ୍ଦାଂସି ଜଜ୍ଞିରେ ତସ୍ମାଦ୍ ଯଜୁସ୍ତସ୍ମାଦଜାୟତ ।। (ଯଜୁ.୩୧.୭)
ଓଁ ବିଷ୍ଣବେ ବସ୍ତ୍ରଯୁଗ୍ମଂ ନମଃ ।

**ଯଜ୍ଞୋପବୀତମନ୍ତ୍ରଃ -**

ଋଗ୍‌ଯଜୁଃସାମମନ୍ତ୍ରେଣ ନିର୍ମିତଂ ପଦ୍ମଯୋନିନା ।
ସାବିତ୍ରୀଗ୍ରନ୍ଥିସଂଯୁକ୍ତମୁପବୀତଂ ତବାଚ୍ୟୁତ ॥
ଓଁ ତସ୍ମାଦଶ୍ୱା ଅଜାୟନ୍ତ ଯେ କେ ଚୋଭୟାଦତଃ ।
ଗାବୋ ହ ଜଜ୍ଞିରେ ତସ୍ମାଉସ୍ମାଜ୍ଜାତା ଅଜାବୟଃ ॥
(ଯଜୁ. ୩୧.୮)

ଓଁ ବିଷ୍ଣବେ ଯଜ୍ଞୋପବୀତଂ ନମଃ ।

**ଆଭରଣମନ୍ତ୍ରଃ-**

ଦିବ୍ୟରତ୍ନସମାଯୁକ୍ତାଃ ବହ୍ନି ଭାନୁସମପ୍ରଭାଃ ।
ଗାତ୍ରାଣି ଶୋଭୟନ୍ତ୍ୟେତେ ଅଳଙ୍କାରାଶ୍ଚ ମାଧବ ॥
ଓଁ ବିଷ୍ଣବେ ଆଭରଣଂ ନମଃ ।

**ଗନ୍ଧମନ୍ତ୍ରଃ -**

ଶରୀରଂ ତେ ନ ଜାନାମି ଚେଷ୍ଟାଂ ନୈବ ଚ କେଶବ ।
ମୟା ନିବେଦିତାନ୍ ଗନ୍ଧାନ୍ ପ୍ରଗୃହାଣ ବିଲେପନମ୍ ॥
ଓଁ ତଂ ଯଜ୍ଞଂ ବର୍ହିଷି ପ୍ରୌକ୍ଷନ୍‌ପୁରୁଷଞ୍ଜାତମଗ୍ରତଃ ।
ତେନ ଦେବା ଅଯଜନ୍ତ ସାଧ୍ୟା ଋଷୟଶ୍ଚ ଯେ ॥ (ଯଜୁ. ୩୧.୯)
ଓଁ ବିଷ୍ଣବେ ଗନ୍ଧୋ ନମଃ ।

**ପୁଷ୍ପମନ୍ତ୍ରଃ -**

ତୁଳସୀ ମଲ୍ଲିକା ଜାତୀ ପଦ୍ମପୁଷ୍ପାଣି ଯାନି ଚ ।
ନିର୍ମିତାନି ବିଧାତ୍ରା ବୈ ଗୃହାଣ ପୁରୁଷୋତ୍ତମ ॥
ଓଁ ଯତ୍ ପୁରୁଷଂ ବ୍ୟଦଧୁଃ କତିଧା ବ୍ୟକଳ୍ପୟନ୍ ।
ମୁଖଂ କିମସ୍ୟାସୀଦ୍ କିଂ ବାହୂ କିମୂରୂ ପାଦା ଉଚ୍ୟେତେ ॥
(ଯଜୁ. ୩୧.୧୦)

ଓଁ ବିଷ୍ଣବେ ପୁଷ୍ପାଣି ବୌଷଟ୍ ।

ଧୂପମନ୍ତ୍ରଃ -

ବନସ୍ପତିରସୋ ଦିବ୍ୟୋ ଗନ୍ଧାଢ୍ୟଃ ସୁମନୋହରଃ ।
ମୟା ନିବେଦିତଂ ଭକ୍ତ୍ୟା ଧୂପୋଽୟଂ ପ୍ରତିଗୃହ୍ୟତାମ୍ ॥
ଓଁ ବ୍ରାହ୍ମଣୋଽସ୍ୟ ମୁଖମାସୀଦ୍ ବାହୂ ରାଜନ୍ୟ କୃତଃ ।
ଊରୂ ତଦସ୍ୟ ଯଦ୍‌ବୈଶ୍ୟଃ ପଦ୍‌ଭ୍ୟାଂ ଶୂଦ୍ରୋଽଅଜାୟତ ॥
(ଯଜୁ. ୩୧.୧୧)

ଓଁ ବିଷ୍ଣବେ ଧୂପଃ ସ୍ୱାହା ।

ଦୀପମନ୍ତ୍ରଃ -

ଦିକ୍‌ପ୍ରକାଶୋ ମହାଜ୍ୟୋତିଃ ସର୍ବତ୍ର ତିମିରାପହଃ ।
ସବାହ୍ୟାଭ୍ୟନ୍ତରଜ୍ୟୋତିର୍ଦୀପୋଽୟଂ ପ୍ରତିଗୃହ୍ୟତାମ୍ ॥
ଓଁ ଚନ୍ଦ୍ରମା ମନସୋ ଜାତଶ୍ଚକ୍ଷୋଃ ସୂର୍ଯ୍ୟୋଽଅଜାୟତ ।
ଶ୍ରୋତ୍ରାଦ୍ ବାୟୁଶ୍ଚ ପ୍ରାଣଶ୍ଚ ମୁଖାଦଗ୍ନିରଜାୟତ ॥
(ଯଜୁ.୩୧.୧୨)

ଓଁ ବିଷ୍ଣବେ ଦୀପଃ ସ୍ୱାହା ।

ନୈବେଦ୍ୟସଂସ୍କାରଃ -

ନୈବେଦ୍ୟକୁ ମୂଳମନ୍ତ୍ରରେ ବୀକ୍ଷଣ କରିବ । ଅସ୍ତ୍ରମନ୍ତ୍ରରେ ପ୍ରୋକ୍ଷଣ କରିବ । ଚକ୍ରମୁଦ୍ରାରେ ଅଭିରକ୍ଷଣ କରି ''ଯମ୍'' ଇତି ବାୟୁବୀଜରେ ନୈବେଦ୍ୟାନ୍ତର୍ଗତ ଦୋଷ ପରିଶୋଷଣ କରିବ । ''ରମ୍''ଇତି ଅଗ୍ନିବୀଜରେ ପରିତପ୍ତ କରି ଦକ୍ଷିଣହସ୍ତରେ ସଂଦାହ କରି ବାମହସ୍ତରେ ସଂନ୍ୟାସ କରିବ । ''ବମ୍''ଇତି ଅମୃତବୀଜରେ ନୈବେଦ୍ୟ ଅମୃତଦ୍ୱାରା ପରିପୂର୍ଣ୍ଣ ହୋଇଛି ବୋଲି ଚିନ୍ତା କରି ମୂଳମନ୍ତ୍ରରେ ଅମୃତୀକରଣମୁଦ୍ରା ପ୍ରଦର୍ଶନ କରିବ । ନୈବେଦ୍ୟକୁ ସ୍ୱର୍ଶକରି ମୂଳମନ୍ତ୍ର ଆଠଥର ଜପ କରିବ । ତାପରେ ସୁରଭିମୁଦ୍ରାରେ ପରିପୂର୍ଣ୍ଣନୈବେଦ୍ୟକୁ ଚିନ୍ତା କରି ଗନ୍ଧ ଓ ପୁଷ୍ପଦ୍ୱାରା ପୂଜା କରିବ ।

**ନୈବେଦ୍ୟମନ୍ତ୍ରଃ -**

ଅନ୍ନଂ ଚତୁର୍ବିଧଂ ଚୈବ ରସୈଃ ଷଡ୍‌ଭିଃ ସମନ୍ୱିତମ୍ ।
ମୟା ନିବେଦିତଂ ଭକ୍ତ୍ୟା ନୈବେଦ୍ୟଂ ତବ କେଶବ ।।
ଓଁ ନାଭ୍ୟା ଆସୀଦନ୍ତରିକ୍ଷଂ ଶୀର୍ଷ୍ଣୋ ଦ୍ୟୌଃ ସମବର୍ତ୍ତତ ।
ପଦ୍‌ଭ୍ୟାଂ ଭୂମିର୍ଦ୍ଦିଶଃ ଶ୍ରୋତ୍ରାତ୍ତଥା ଲୋକାନ୍ ଅକଳ୍ପୟନ୍ ।।
(ଯଜୁ. ୩୧.୧୩)

ଏହି ମନ୍ତ୍ର ପଢି ହାତରେ ପୁଷ୍ପାଞ୍ଜଳି ଧରି ନୈବେଦ୍ୟ ଗ୍ରହଣ କରିବା ପାଇଁ ବିଷ୍ଣୁଙ୍କୁ ପ୍ରାର୍ଥନା କରିବ । ହାତରେ ଜଳଚଳୁକ ଧରି ମୂଳମନ୍ତ୍ର ପାଠ କରି "ଓଁ ବିଷ୍ଣବେ ନୈବେଦ୍ୟଂ ସ୍ୱାହା" ଏହା କହି ଦେବତୀର୍ଥରେ ତିନିଥର ଜଳନିକ୍ଷେପ କରିବ । ତାପରେ ଓଁ ନୈବେଦ୍ୟାର୍ଥମାଚମନୀୟଂ ସ୍ୱାହା, କହି ଆଚମନାର୍ଥେ ଜଳ ପ୍ରଦାନ କରିବ ଓ "ଓଁ ଅମୃତୋପସ୍ତରଣମସି ସ୍ୱାହା" କହି ନୈବେଦ୍ୟ ଆଗରେ ଜଳଟିକିଏ ପକାଇଦେବ । ତାପରେ ନୈବେଦ୍ୟ ଦ୍ରବ୍ୟରୁ ଦେବତାଙ୍କୁ ଖୁଆଇବାପରି ଚିନ୍ତା କରି ପ୍ରାଣାଦି ପଞ୍ଚମୁଦ୍ରା ପ୍ରଦର୍ଶନ କରିବ । ଯଥା - ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା । ଏହାପରେ ଦେବତାଙ୍କୁ ନୈବେଦ୍ୟମୁଦ୍ରା ପ୍ରଦର୍ଶନ କରି "ନିବେଦୟାମି ଭଗବତେ ଜୁଷସ୍ୱ ଇଦଂ ହବିଃପ୍ରଭବମ୍" କହିବ । ତାପରେ ମୂଳମନ୍ତ୍ର (ଓଁ ନମୋ ନାରାୟଣାୟ) ୫୦ ଥର ଅଥବା ପ୍ରଣବ (ଓଁ) ୫୦ଥର ଜପ କରିବ । ତାପରେ "ଓଁ ଅମୃତାପିଧାନମସି ସ୍ୱାହା" କହି ଜଳଚଳୁକ ପ୍ରଦାନ କରିବ । ତାପରେ ଜଳପାନାର୍ଥେ " ଓଁ ନମୋ ନାରାୟଣାୟ, ଗଣ୍ଡୂଷଂ ନମଃ" କହି ଫୁଲଟିଏ ଅର୍ଘ୍ୟ ଜଳରେ ବୁଡାଇ ଦେବତାଙ୍କ ନିକଟକୁ ପକାଇଦେବ ।

**ତାମ୍ବୂଳମନ୍ତ୍ରଃ -**

ତାମ୍ବୂଳଂ ଗୃହ୍ୟତାଂ ଦେବ ଏଳାଦିଭିଃ ସମନ୍ୱିତଂ ।
ମୟା ନିବେଦିତଂ ଭକ୍ତ୍ୟା ମୁଖବାସାୟ କଳ୍ପିତମ୍ ।।

ଓଁ ଯଦ୍ ପୁରୁଷେଣ ହବିଷା ଦେବା ଯଜ୍ଞମତନ୍ୱତ ।
ବସନ୍ତୋଽସ୍ୟାସୀଦାଜ୍ୟଂ ଗ୍ରୀଷ୍ମ ଇଧ୍ମଃ ଶରଦ୍ଧବିଃ ॥
(ଯଜୁ . ୩୧.୧୪)

ଓଁ ବିଷ୍ଣବେ ତାମ୍ବୂଳଂ ନମଃ ।

**ଆରତ୍ରିକମନ୍ତ୍ରଃ -**

ଆରତ୍ରିକଂ ଗୃହାଣେଦଂ ସପ୍ତଭିର୍ବର୍ତ୍ତିଭିର୍ଯୁତଂ।
ଦେବ ଦେବ ଜଗନ୍ନାଥ ଜଗଦାନନ୍ଦକାରକ ॥
ଓଁ ସପ୍ତାସ୍ୟାସନ୍ ପରିଧୟସ୍ତ୍ରିଃ ସପ୍ତସମିଧଃ କୃତାଃ ।
ଦେବା ଯଦ୍ ଯଜ୍ଞଂ ତନ୍ୱାନା ଅବଧ୍ନନ୍ ପୁରୁଷଂ ପଶୁମ୍ ॥
( ଯଜୁ. ୩୧.୧୫)

ଓଁ ବିଷ୍ଣବେ ଆରତ୍ରିକଂ ନମଃ ।

**ପୁଷ୍ପାଞ୍ଜଳିମନ୍ତ୍ରଃ -**

ନବୀନନୀରଦଶ୍ୟାମ ଗୃହାଣ କୁସୁମାଞ୍ଜଳିଂ ।
ନିବେଦିତଂ ମୟା ଭକ୍ତ୍ୟା ପ୍ରସନ୍ନୋ ଭବ ସର୍ବଦା ॥
ଓଁ ଯଜ୍ଞେନ ଯଜ୍ଞମଯଜନ୍ତ ଦେବାସ୍ତାନି ଧର୍ମାଣି ପ୍ରଥମାନ୍ୟାସନ୍ ।
ତେ ହ ନାକଂ ମହିମାନଂ ସଚନ୍ତ ଯତ୍ର ପୂର୍ବେ ସାଧ୍ୟାଃ ସନ୍ତି ଦେବାଃ ॥
(ଯଜୁ. ୩୧.୧୬)

ଓଁ ବିଷ୍ଣବେ ପୁଷ୍ପାଞ୍ଜଳିଂ ସମର୍ପୟାମି ।

ଏହା କହି ୩ ଥର ପୁଷ୍ପାଞ୍ଜଳି ଦେବ ।

**ନମସ୍କାରମନ୍ତ୍ରଃ -**

ଓଁ ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ସୁରେଶ୍ୱର ।
ଯତ୍ପୂଜିତଂ ମୟା ଦେବ ପରିପୂର୍ଣ୍ଣଂ ତଦସ୍ତୁ ମେ ॥

ଆବାହନଂ ନ ଜାନାମି ନ ଜାନାମି ବିସର୍ଜନମ୍ ।
ପୂଜାକର୍ମ ନ ଜାନାମି କ୍ଷମସ୍ୱ ପରମେଶ୍ୱର ॥
ଓଁ ବିଷ୍ଣୁଂ ଶାରଦଚନ୍ଦ୍ରକୋଟିସଦୃଶଂ ଶଂଖଂ ରଥାଙ୍ଗଂ ଗଦା-
ମମ୍ଭୋଜଂ ଦଧତଂ ସିତାବ୍ଜନିଳୟଂ କାନ୍ତ୍ୟା ଜଗନ୍ମୋହନମ୍ ।
ଆବଦ୍ଧାଙ୍ଗଦହାରକୁଣ୍ଡଳମହାମୌଳିଂ ସ୍ଫୁରତ୍ କଙ୍କଣଂ -
ଶ୍ରୀବତ୍ସାଙ୍କମୁଦାରକୌସ୍ତୁଭଧରଂ ବନ୍ଦେ ମୁନୀନ୍ଦ୍ରୈଃ ସ୍ତୁତମ୍ ॥
॥ ଇତି ଶ୍ରୀ ବିଷ୍ଣୁପୂଜା ସମାପ୍ତା ॥

## ଶ୍ରୀଗଣେଶପୂଜା

ଶ୍ରୀଗଣେଶଙ୍କୁ ପୂଜା କରିବାକୁ ଇଚ୍ଛା କରୁଥିବା ବ୍ୟକ୍ତି ସ୍ନାନଶୌଚାଦି ସମାପନ କରି ଆଚମନ କରିବେ । ଦେବତାଙ୍କ ସମ୍ମୁଖରେ ପୂଜାସାମଗ୍ରୀ ଏକାଠି କରି ତାକୁ ଶୋଧନ କରିବେ । ଆସନରେ ବସି ଆସନଶୁଦ୍ଧି, ଭୂତଶୁଦ୍ଧି ଓ ପ୍ରଣବନ୍ୟାସ ସମାପ୍ତ କରିବେ । ଏହାପରେ ସଂକଳ୍ପପୂର୍ବକ ଷୋଡଶ ଉପଚାରରେ ପୂଜନ କରିବେ । ଷୋଡଶ ଉପଚାର ଯଥା -

୧) ଆବାହନ ୨) ଆସନ ୩) ପାଦ୍ୟ ୪) ଅର୍ଘ୍ୟ ୫) ଆଚମନୀୟ ୬) ସ୍ନାନ ୭) ବସ୍ତ୍ର ୮) ଯଜ୍ଞୋପବୀତ ୯) ଗନ୍ଧ ୧୦) ପୁଷ୍ପ (ଦୂର୍ବାଙ୍କୁର) ମାଳା ପ୍ରଭୃତି ୧୧) ଧୂପ ୧୨) ଦୀପ ୧୩) ନୈବେଦ୍ୟ ୧୪) ତାମ୍ବୂଳ ୧୫) ଆରତ୍ରିକ ପ୍ରଦକ୍ଷିଣ ୧୬) ପୁଷ୍ପାଞ୍ଜଳି ।

ଆବାହନାସନେ ପାଦ୍ୟମର୍ଘ୍ୟମାଚମନୀୟକମ୍ ।
ସ୍ନାନଂ ବସ୍ତ୍ରୋପବୀତେ ଚ ଗନ୍ଧମାଲ୍ୟାନ୍ୟନୁକ୍ରମାଦ୍ ॥
ଧୂପଂ ଦୀପଂ ଚ ନୈବେଦ୍ୟଂ ତାମ୍ବୂଳଂ ଚ ପ୍ରଦକ୍ଷିଣା ।
ପାଦ୍ୟାଙ୍ଗାନି ଚ ଚତ୍ୱାରି କଥିତାନି ସମାସତଃ ॥ (କର୍ମପ୍ରଦୀପେ)

**ପୂଜନ ପ୍ରାରମ୍ଭରେ ସଂକଳ୍ପ ଯଥା -**

ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ । ଅଦ୍ୟ ଇହ ଉତ୍କଳପ୍ରଦେଶାନ୍ତର୍ଗତେ ଶ୍ରୀପୁରୁଷୋତ୍ତମକ୍ଷେତ୍ରେ (ଅମୁକକ୍ଷେତ୍ରେ ବା) ଅମୁକନାମସଂବତ୍ସରେ ଦକ୍ଷିଣାୟନେ ଉତ୍ତରାୟଣେ ବା ଅମୁକମାସି ଅମୁକପକ୍ଷେ ଅମୁକତିଥୌ ଅମୁକବାସରେ ଅମୁକନକ୍ଷତ୍ରେ ଅମୁକଯୋଗେ ଅମୁକକରଣେ ଅମୁକ ରାଶିସ୍ଥିତେ ଶ୍ରୀଚନ୍ଦ୍ରେ ଅମୁକରାଶିସ୍ଥିତେ ଶ୍ରୀସୂର୍ଯ୍ୟେ ଅମୁକରାଶିସ୍ଥିତେ ଶ୍ରୀଦେବଗୁରୌ ଶେଷେଷୁ ଗ୍ରହେଷୁ ଚ ଯଥାରାଶିସ୍ଥାନସ୍ଥିତେଷୁ ସତ୍ସୁ ଏବଂ ଗ୍ରହଗୁଣଗଣବିଶେଷଣବିଶିଷ୍ଟାୟାଂ ଶୁଭପୁଣ୍ୟତିଥୌ ଅମୁକସଗୋତ୍ରଃ ଅମୁକଶର୍ମା (ଅମୁକବର୍ମା ଅମୁକଗୁପ୍ତଃ) ଅହଂ ମମାତ୍ମନଃ ଶ୍ରୀମହାଗଣପତିପ୍ରୀତ୍ୟର୍ଥଂ ଯଥାଲବ୍ଧୋପଚାରୈସ୍ତଦୀୟପୂଜନଂ କରିଷ୍ୟେ ।

ଏହି ସଂକଳ୍ପ ବାକ୍ୟ ପଢି ହାତରେ ସଂକଳ୍ପପୂର୍ବରୁ ରଖିଥିବା ଜଳ ଓ ଅକ୍ଷତ ପ୍ରଭୃତି ଭୂମିରେ ରଖାଯାଇଥିବା କୌଣସି ପାତ୍ରରେ ପକାଇଦେବ । ତାହାପରେ ଗଣପତିପୂଜନ ଆରମ୍ଭ କରିବ । ପ୍ରଥମେ ଧ୍ୟାନ କରିବ ।

**ଧ୍ୟାନମ୍ -** ଓଁ ଧ୍ୟାୟାମି ଦନ୍ତିବଦନଂ ଯୁଗବାହୁଦଣ୍ଡଂ,
ପାଶାଙ୍କୁଶାଦିସହିତଂ ରଦନୈକଯୁକ୍ତମ୍ ।
କର୍ଣ୍ଣେନ ଶୂର୍ପସଦୃଶେନ ଲସଦ୍‌ପତାକଂ,
ସନ୍ତର୍ଜୟନ୍ତମିବ ବିଘ୍ନଗଣଂ ଗଣେଶମ୍ ॥

**ଆବାହନମ୍ -**

୧) ଆବାହୟାମି ଗଣନାଥମୁମାସୁତଂ ତଂ,
ସିନ୍ଦୂରଶୋଣବପୁଷଂ ଗଜବକ୍ତ୍ରଶୋଭମ୍ ।
ଦୁର୍ଗାଂ ଚ ତସ୍ୟ ଜନନୀଂ ହରିପୃଷ୍ଠସଂସ୍ଥାଂ
ଭକ୍ତ୍ୟାଽଽହ୍ୱୟାମି ସୁତହାର୍ଦଗଲକ୍ଷୁଚାଢ୍ୟାମ୍ ॥

୨) ହେ ହେରମ୍ବ ତ୍ୱମେହ୍ୟେହି ହ୍ୟମ୍ବିକାତ୍ର୍ୟମ୍ବକାତ୍ମଜ ।
ସିଦ୍ଧିବୁଦ୍ଧିପ୍ରଦେ ତ୍ର୍ୟକ୍ଷଲକ୍ଷ୍ୟଲାଭପିତୁଃ ପିତଃ ॥
ନାଗାସ୍ୟଂ ନାଗହାରଂ ତ୍ୱାଂ ଗଣରାଜଂ ଚତୁର୍ଭୁଜମ୍ ।
ଭୂଷିତଂ ସ୍ୱାୟୁଧୈର୍ଦିବ୍ୟୈଃ ପାଶାଙ୍କୁଶପରଶ୍ୱଧୈଃ ॥
ଆବାହୟାମି ପୂଜାର୍ଥଂ ରକ୍ଷାର୍ଥଂ ଚ ମମ କ୍ରତୋଃ ।
ଇହାଗତ୍ୟ ଗୃହାଣ ତ୍ୱଂ ପୂଜାଂ ଯାଗଂ ଚ ରକ୍ଷ ମେ ॥
ଓଁ ଗଣାନାଂ ତ୍ୱା ଗଣପତିଂ ହବାମହେ ।
ପ୍ରିୟାଣାଂ ତ୍ୱା ପ୍ରିୟପତିଂ ହବାମହେ ।
ନିଧୀନାଂ ତ୍ୱା ନିଧିପତିଂ ହବାମହେ । ବସୋ ମମ ।
ଆହମଜାନି ଗର୍ଭଧମାତ୍ୱମଜାସି ଗର୍ଭଧମ୍ ॥(ଯଜୁ ୨୩-୧୯)
ଓଁ ଭୂର୍ଭୁବଃ ସ୍ୱଃ ସିଦ୍ଧିବୁଦ୍ଧିସହିତାୟ ଗଣପତୟେ ନମଃ,
ଗଣପତିମାବାହୟାମି ସ୍ଥାପୟାମି ।

ପ୍ରାଣପ୍ରତିଷ୍ଠା -

ଓଁ ମନୋଜୂତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ
ତନୋତ୍ୱରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ ।
ବିଶ୍ୱେଦେବାସ ଇହ ମାଦୟନ୍ତାଂ ଓଁ ପ୍ରତିଷ୍ଠା ।(ଯଜୁ. ୨-୧୩)
ଅସ୍ୟୈ ପ୍ରାଣାଃ ପ୍ରତିଷ୍ଠନ୍ତୁ ଅସ୍ୟୈ ପ୍ରାଣାଃ କ୍ଷରନ୍ତୁ ଚ ।
ଅସ୍ୟୈ ଦେବତ୍ୱମର୍ଚାୟୈ ମାମହେତି ନ କଶ୍ଚନ ॥
ଓଁ ସିଦ୍ଧିବୁଦ୍ଧିସହିତଗଣପତେ ସୁପ୍ରତିଷ୍ଠିତୋ ବରଦୋ ଭବ ।

ଆସନମ୍ -

ଆବାହିତାୟ ଚ ଦଦାମି ଯଥା ସ୍ୱଶକ୍ତିଂ,
ସ୍ୱର୍ଣ୍ଣାସନଂ ମଣିମୟଂ କୁସୁମାସନଂ ବା ।

ଏକେନ ଦନ୍ତମୂଳେନ ବିରାଜମାନୋ
ଗୃହ୍ଣାତୁ ଭକ୍ତିନିହିତଂ ସଦୟାମ୍ବିକା ଚ ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଆସନଂ ସମର୍ପୟାମି ।

ଏହି ମନ୍ତ୍ର ପଢ଼ି ଦିବ୍ୟସିଂହାସନଭାବନାରେ ପୁଷ୍ପ ଅର୍ପଣ କରିବ ।

**ପାଦ୍ୟମ୍ -** ଓଁ ସର୍ବତୀର୍ଥସମୁଦ୍‌ଭୂତଂ ପାଦ୍ୟଂ ଗନ୍ଧାଦିଭିର୍ଯୁତମ୍ ।
ବିଘ୍ନରାଜ ଗୃହାଣେଦଂ ଭଗବନ୍ ଭକ୍ତବତ୍ସଳ ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ପାଦୟୋଃ ପାଦ୍ୟଂ ସମର୍ପୟାମି ।

ଏହି ମନ୍ତ୍ର ପଢ଼ି ଗଣପତିଙ୍କର ପାଦପ୍ରକ୍ଷାଳନ ନିମିତ୍ତ ପାଦ୍ୟ ଅର୍ପଣ କରିବ ।

**ଅର୍ଘ୍ୟମ୍ -** ଓଁ ଗଣାଧ୍ୟକ୍ଷ ନମସ୍ତେଽସ୍ତୁ ଗୃହାଣ କରୁଣାକର ।
ଅର୍ଘ୍ୟଂ ଚ ଫଳସଂଯୁକ୍ତଂ ଗନ୍ଧମାଲ୍ୟାକ୍ଷତୈର୍ଯୁତମ୍ ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ହସ୍ତୟୋରର୍ଘ୍ୟଂ ସମର୍ପୟାମି ।

ଏହି ମନ୍ତ୍ର ପଢ଼ି ଗନ୍ଧ-ପୁଷ୍ପ-ଅକ୍ଷତ-ଜଳାଦିଯୁକ୍ତ ଅର୍ଘ୍ୟଜଳ ଅର୍ପଣ କରିବ ।

**ଆଚମନମ୍ -** ଓଁ ବିନାୟକ ନମସ୍ତୁଭ୍ୟଂ ତ୍ରିଦଶୈରଭିବନ୍ଦିତ ।
ଗଙ୍ଗୋଦକେନ ଦେବେଶ କୁରୁଷ୍ୱାଚମନଂ ପ୍ରଭୋ ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ମୁଖେ ଆଚମନୀୟଂ ସମର୍ପୟାମି ॥

ଏହି ମନ୍ତ୍ର ପଢ଼ି ଗଙ୍ଗାଜଳରେ ଆଚମନ କରାଇବ ।

ସ୍ନାନୀୟସମର୍ପଣମ୍ -

୧) ଓଁ ମନ୍ଦାକିନ୍ୟାସ୍ତୁ ଯଦ୍‌ବାରି ସର୍ବପାପହରଂ ଶୁଭମ୍ ।
ତଦିଦଂ କଳ୍ପିତଂ ଦେବ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ସର୍ବାଙ୍ଗେ ସ୍ନାନୀୟଂ ସମର୍ପୟାମି ।

୨) ପଞ୍ଚାମୃତଂ ମୟାଽଽନୀତଂ ପୟୋ ଦଧି ଘୃତଂ ମଧୁ ।
ଶର୍କରା ଚ ସମାଯୁକ୍ତଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଓଁ ପଞ୍ଚ ନଦ୍ୟଃ ସରସ୍ୱତୀମପିୟନ୍ତି ସସ୍ରୋତସଃ ।
ସରସ୍ୱତୀ ତୁ ପଞ୍ଚଧା ସୋ ଦେଶେଽଭବତ୍ ସରିତ୍ ॥
(ଶୁ.ଯ. ୩୪-୧୧)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ପଞ୍ଚାମୃତସ୍ନାନଂ ସମର୍ପୟାମି ।

ଏହି ମନ୍ତ୍ର ପଢି ଗଙ୍ଗାଜଳରେ ଓ ପଞ୍ଚାମୃତରେ ସ୍ନାନ କରାଇବ ।

ଶୁଦ୍ଧୋଦକସ୍ନାନମ୍ -

ଗଙ୍ଗା ଚ ଯମୁନା ଚୈବ ଗୋଦାବରୀ ସରସ୍ୱତୀ ।
ନର୍ମଦା ସିନ୍ଧୁଃ କାବେରୀ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଓଁ ଆପୋହିଷ୍ଠା ମୟୋଭୁବସ୍ତା ନ ଊର୍ଜେ ଦଧାତନ ।
ମହେରଣାୟ ଚକ୍ଷସେ ॥ (ଶୁ.ଯ. ୧୧-୫୦)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଶୁଦ୍ଧୋଦକସ୍ନାନଂ ସମର୍ପୟାମି ।

ଏହି ମନ୍ତ୍ରମାନ ପଢି ଗଙ୍ଗାଜଳ ବା ଅନ୍ୟତୀର୍ଥଜଳରେ ଶୁଦ୍ଧସ୍ନାନ କରାଇବ ।

ବସ୍ତ୍ରସମର୍ପଣମ୍ -

ଶୀତବାତୋଷ୍ଣସଂତ୍ରାଣଂ ଲଜ୍ଜାୟା ରକ୍ଷଣଂ ପରମ୍ ।
ଦେହାଲଂକରଣଂ ବସ୍ତ୍ରମତଃ ଶାନ୍ତିଂ ପ୍ରଯଚ୍ଛ ମେ ॥
ଓଁ ଯୁବା ସୁବାସା ପରିବୀତ ଆଗାତ୍
ସ ଉ ଶ୍ରେୟାନ୍ ଭବତି ଜାୟମାନଃ ।
ତଂ ଧୀରାସଃ କବୟ ଉନ୍ନୟନ୍ତି
ସ୍ୱାଧ୍ୟୋ ମନସା ଦେବୟନ୍ତଃ । (ଋଗ୍.୩-୮-୪)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ବସ୍ତ୍ରଂ ସମର୍ପୟାମି ।
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଆଚମନଂ ସମର୍ପୟାମି ॥

ଉତ୍ତରୀୟସମର୍ପଣମ୍ -

ଉତ୍ତରୀୟଂ ତଥା ଦେବ ନାନାଚିତ୍ରିତମୁତ୍ତମମ୍ ।
ଗୃହାଣେଦଂ ମୟା ଭକ୍ତ୍ୟା ଦତ୍ତଂ ତତ୍ ସଫଳୀକୁରୁ ॥
ଓଁ ସୁଜାତୋ ଜ୍ୟୋତିଷା ସହ ଶର୍ମ ବରୂଥମାऽସଦତ୍ ସ୍ୱଃ ।
ବାସୋ ଅଗ୍ନେ ବିଶ୍ୱରୂପଃ ସଂବ୍ୟୟସ୍ୱ ବିଭାବସୋ ॥
(ଶୁ.ଯଜୁ. ୧୧-୪୦)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଉପବସ୍ତ୍ରଂ ସମର୍ପୟାମି । ତଦନ୍ତେ ଆଚମନୀୟଂ ସମର୍ପୟାମି ।

ବସ୍ତ୍ର ଓ ଉତ୍ତରୀୟ ଅଭାବରେ ନାଲି ସୂତା ଓ ଅଳଙ୍କାର ଅଭାବରେ ଅକ୍ଷତ ଦାନ କରିବ । ମନ୍ତ୍ର ଯଥା -

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ବସ୍ତ୍ରୋତ୍ତରୀୟାର୍ଥେ ରକ୍ତସୂତ୍ରଂ ସମର୍ପୟାମି ।

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଅଳଂକରଣାର୍ଥମକ୍ଷତାନ୍ ସମର୍ପୟାମି ।

ଯଜ୍ଞୋପବୀତସମର୍ପଣମ୍ -

ନବଭିସ୍ତନ୍ତୁଭିର୍ଯୁକ୍ତଂ ତ୍ରିଗୁଣଂ ଦେବତାମୟମ୍ ।
ଉପବୀତଂ ମୟା ଦେବ ଗୃହାଣ ପରମେଶ୍ୱର ॥
ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ପ୍ରଜାପତେର୍ଯତ୍ସହଜଂ ପୁରସ୍ତାତ୍ ।
ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚ ଶୁଭ୍ରଂ ଯଜ୍ଞୋପବୀତଂ ବଳମସ୍ତୁ ତେଜଃ ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଯଜ୍ଞୋପବୀତଂ ସମର୍ପୟାମି ।
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଆଚମନଂ ସମର୍ପୟାମି ।

ଗନ୍ଧଦାନମ୍ -

କ) ଶ୍ରୀଖଣ୍ଡଚନ୍ଦନଂ ଦିବ୍ୟଂ ଗନ୍ଧାଢ୍ୟଂ ସୁମନୋହରମ୍ ।
ବିଲେପନଂ ସୁରଶ୍ରେଷ୍ଠ ଚନ୍ଦନଂ ପ୍ରତିଗୃହ୍ୟତାମ୍ ॥
ଖ) ଓଁ ତ୍ୱାଂ ଗନ୍ଧର୍ବାଂ ଅଖନସ୍ତ୍ୱାମିନ୍ଦ୍ରସ୍ତ୍ୱାଂ ବୃହସ୍ପତିଃ ।
ତ୍ୱାମୋଷଧେ ସୋମୋ ରାଜା ବିଦ୍ୱାନ୍ ଯକ୍ଷ୍ମାଦମୁଚ୍ୟତ ॥
(ଶୁ.ଯଜୁ.୧୨-୯୮)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ, ଗନ୍ଧଂ ସମର୍ପୟାମି ।

ଅକ୍ଷତଦାନମ୍ -

କ) ଅକ୍ଷତାଶ୍ଚ ସୁରଶ୍ରେଷ୍ଠ କୁଙ୍କୁମାକ୍ତାଃ ସୁଶୋଭିତାଃ ।
ମୟା ନିବେଦିତା ଭକ୍ତ୍ୟା ଗୃହାଣ ପରମେଶ୍ୱର ॥
ଖ) ଓଁ ଅକ୍ଷନ୍ନମୀମଦନ୍ତ ହାବ ପ୍ରିୟା ଅଧୂଷତ ।
ଅସ୍ତୋଷତସ୍ୱଭାନବୋ ବିପ୍ରା ନବିଷ୍ଠୟା ମତୀ ଯୋଜାନ୍ୱିନ୍ଦ୍ର ତେ ହରୀ ॥
(ଶୁ.ଯଜୁ. ୩-୫୧)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ, ଅକ୍ଷତାନ୍ସମର୍ପୟାମି ।

ଏହି ମନ୍ତ୍ର ପଢ଼ି ଗଣପତିଙ୍କ ଉଦ୍ଦେଶ୍ୟରେ ଅକ୍ଷତପ୍ରଦାନ କରିବ ।

ପୁଷ୍ପମାଳାଦାନମ୍ -

କ) ମାଲ୍ୟାଦୀନି ସୁଗନ୍ଧୀନି ମାଲତ୍ୟାଦୀନି ବୈ ପ୍ରଭୋ ।
ମୟାହୃତାନି ପୁଷ୍ପାଣି ଗୃହ୍ୟନ୍ତାଂ ପୂଜନାୟ ଭୋଃ ॥

ଖ) ଓଁ ଓଷଧୀଃ ପ୍ରତିମୋଦଧ୍ୱଂ ପୁଷ୍ପବତୀଃ ପ୍ରସୂବରୀଃ ।
ଅଶ୍ୱା ଇବ ସଜିତ୍ୱରୀର୍ବୀରୁଧଃ ପାରୟିଷ୍ଣବଃ ॥
(ଶୁ.ଯଜୁ. ୧୨-୭୭)

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ପୁଷ୍ପାଣି ପୁଷ୍ପମାଳାଂ ବା ସମର୍ପୟାମି ।

ଦୂର୍ବାଙ୍କୁରଦାନମ୍ -

କ) ଦୂର୍ବାଙ୍କୁରାନ୍ ସୁହରିତାନମୃତାନ୍ ମଙ୍ଗଳପ୍ରଦାନ୍ ।
ଆନୀତାନ୍ ତବ ପୂଜାର୍ଥଂ ଗୃହାଣ ଗଣନାୟକ ॥

ଖ) ଓଁ କାଣ୍ଡାତ୍ କାଣ୍ଡାତ୍ ପ୍ରରୋହନ୍ତୀ ପରୁଷଃ ପରୁଷସ୍ପରି ।
ଏବା ନୋ ଦୂର୍ବେ ପ୍ରତନୁ ସହସ୍ରେଣ ଶତେନ ଚ ॥
(ଶୁ.ଯ. ୧୩-୨୦)

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ ।
ଦୂର୍ବାଙ୍କୁରାନ୍ ସମର୍ପୟାମି ॥

ସିନ୍ଦୁରଦାନମ୍ -

କ) ସିନ୍ଦୂରଂ ଶୋଭନଂ ରକ୍ତଂ ସୌଭାଗ୍ୟଂ ସୁଖବର୍ଦ୍ଧନମ୍ ।
ଶୁଭଦଂ କାମଦଂ ଚୈବ ସିନ୍ଦୂରଂ ପ୍ରତିଗୃହ୍ୟତାମ୍ ॥

ଖ) ଓଁସିନ୍ଧୋରିବପ୍ରାଧ୍ୱନେଶୂଘନାସୋ ବାତପ୍ରମିୟଃ ପତୟନ୍ତି ଯହ୍ୱାଃ ।
ଘୃତସ୍ୟ ଧାରା ଅରୁଷୋ ନ ବାଜୀ କାଷ୍ଠା
ଭିନ୍ଦନ୍ନୂର୍ମିଭିଃ ପିନ୍ୱମାନଃ ॥ (ଶୁ.ଯ. ୧୭-୧୫)
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ, ସିନ୍ଦୂରଂ ସମର୍ପୟାମି ।

ଧୂପଦାନମ୍ -

କ) ବନସ୍ପତିରସୋଦ୍‌ଭୂତୋ ଗନ୍ଧାଢ଼୍ୟୋ ଗନ୍ଧ ଉତ୍ତମଃ ।
ଆଘ୍ରେୟଃ ସର୍ବଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାମ୍ ॥

ଖ) ଓଁ ଧୂରସି ଧୂର୍ବ ଧୂର୍ବନ୍ତଂ ଧୂର୍ବ ତଂ ଯୋଽସ୍ମାନ୍
ଧୂର୍ବତି ତଂ ଧୂର୍ବୟଂ ବୟଂ ଧୂର୍ବାମଃ ।
ଦେବାନାମସି ବହ୍ନିତମଂ ସସ୍ନିତମଂ ପପ୍ରିତମଂ ଜୁଷ୍ଟତମଂ ଦେବହୂତମମ୍ ।
( ଶୁ.ଯଜୁ. ୧-୮ )

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ, ଧୂପମାଘ୍ରାପୟାମି ।

ଏହା କହି ଗଣପତିଙ୍କ ଉଦ୍ଦେଶ୍ୟରେ ଧୂପପ୍ରଦାନ କରିବ ।

ଦୀପଦାନମ୍ -

କ) ସାଜ୍ୟଂ ଚ ବର୍ତ୍ତିସଂଯୁକ୍ତଂ ବହ୍ନିନା ଯୋଜିତଂ ମୟା ।
ଦୀପଂ ଗୃହାଣ ଦେବେଶ ତ୍ରୈଲୋକ୍ୟତିମିରାପହମ୍ ॥
ଭକ୍ତ୍ୟା ଦୀପଂ ପ୍ରୟଚ୍ଛାମି ଦେବାୟ ପରମାତ୍ମନେ ।
ତ୍ରାହି ମାଂ ନିରୟାଦ୍ ଘୋରାଦ୍ ଦୀପଜ୍ୟୋତିର୍ନମୋଽସ୍ତୁ ତେ ॥

ଖ) ଓଁ ଅଗ୍ନିର୍ଜ୍ୟୋତିର୍ଜ୍ୟୋତିରଗ୍ନିଃ ସ୍ୱାହା ।
ସୂର୍ଯ୍ୟୋ ଜ୍ୟୋତିର୍ଜ୍ୟୋତିଃ ସୂର୍ଯ୍ୟଃ ସ୍ୱାହା ।
ଅଗ୍ନିର୍ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା ।
ସୂର୍ଯ୍ୟୋ ବର୍ଚ୍ଚୋ ଜ୍ୟୋତିର୍ବର୍ଚ୍ଚଃ ସ୍ୱାହା ।
ଜ୍ୟୋତିଃ ସୂର୍ଯ୍ୟଃ ସୂର୍ଯ୍ୟୋ ଜ୍ୟୋତିଃ ସ୍ୱାହା ।(ଶୁ.ଯଜୁ. ୩-୯ )

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ, ଦୀପଂ ଦର୍ଶୟାମି ।

ଏହି ମନ୍ତ୍ର ପଢ଼ି ଗଣପତିଙ୍କ ଉଦ୍ଦେଶ୍ୟରେ ଦୀପପ୍ରଦାନ କରିବ ।

**ନୈବେଦ୍ୟନିବେଦନମ୍ -**

ଦୀପପ୍ରଦାନ କରି ସାରିବା ପରେ ହାତ ଧୋଇ ନୈବେଦ୍ୟ ଅର୍ପଣ କରିବ । ଫଳପ୍ରଭୃତି ପ୍ରୋକ୍ଷଣ ପୂର୍ବକ ଗଣପତିଙ୍କ ସମ୍ମୁଖରେ ସ୍ଥାପନ କରି ନିମ୍ନ ମନ୍ତ୍ରମାନ ପାଠ କରିବ ।

ନୈବେଦ୍ୟଂ ଗୃହ୍ୟତାଂ ଦେବ ଭକ୍ତିଂ ମେ ହ୍ୟଚଳାଂ କୁରୁ ।
ଈପ୍ସିତଂ ମେ ବରଂ ଦେହି ପରତ୍ର ଚ ପରାଂ ଗତିମ୍ ।।
ଶର୍କରାଖଣ୍ଡଖାଦ୍ୟାନି ଦଧିକ୍ଷୀରଘୃତାନି ଚ ।
ଆହାରଂ ଭକ୍ଷ୍ୟଭୋଜ୍ୟଂ ଚ ନୈବେଦ୍ୟଂ ପ୍ରତିଗୃହ୍ୟତାମ୍ ।।
ଓଁ ପ୍ରାଣାୟ ସ୍ୱାହା । ଓଁ ଅପାନାୟ ସ୍ୱାହା ।
ଓଁ ସମାନାୟ ସ୍ୱାହା । ଓଁ ଉଦାନାୟ ସ୍ୱାହା । ଓଁ ବ୍ୟାନାୟ ସ୍ୱାହା ।
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ନୈବେଦ୍ୟଂ ମୋଦକମୟଂ ଋତୁଫଳାନି ଚ ସମର୍ପୟାମି ।
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଆଚମନୀୟଂ ମଧ୍ୟେ ପାନୀୟଂ
ଉତ୍ତରାପୋଶାନଂ ଚ ସମର୍ପୟାମି ।
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ଚନ୍ଦନେନ କରୋଦ୍ୱର୍ତ୍ତନଂ ସମର୍ପୟାମି ।

**ତାମ୍ବୂଳାର୍ପଣମ୍ -**

ଓଁ ପୂଗୀଫଳଂ ମହଦ୍‌ଦିବ୍ୟଂ ନାଗବଲ୍ଲୀଦଳୈର୍ଯୁତମ୍ ।
ଏଲାଚୂର୍ଣ୍ଣାଦିସଂଯୁକ୍ତଂ ତାମ୍ବୂଳଂ ପ୍ରତିଗୃହ୍ୟତାମ୍ ।।
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ମୁଖବାସାର୍ଥମେଳାପୂଗୀଫଳାଦିସହିତଂ ତାମ୍ବୂଳଂ ସମର୍ପୟାମି ।

ଆରତ୍ରିକମ୍ -

କ) କଦଳୀଗର୍ଭସମ୍ଭୂତଂ କର୍ପୂରଂ ତୁ ପ୍ରଦୀପିତମ୍ ।
ଆରାତ୍ରିକମହଂ କୁର୍ବେ ପଶ୍ୟ ମେ ବରଦୋ ଭବ ॥

ଖ) ଓଁ ଇଦଂ ହବିଃ ପ୍ରଜନନଂ ମେ ଅସ୍ତୁ, ଦଶବୀରଂ ସର୍ବଗଣଂ ସ୍ୱସ୍ତୟେ ।
ଆତ୍ମସନି ପ୍ରଜାସନି ପଶୁସନି ଲୋକସନ୍ୟଭୟସନି ।
ଅଗ୍ନିଃ ପ୍ରଜାଂ ବହୁଲାଂ ମେ କରୋତ୍ୱନ୍ନଂ ପୟୋ ରେତୋ ଅସ୍ମାସୁ ଧତ୍ତ ॥
(ଶୁ.ଯଜୁ. ୧୯-୪୮)

ଆ ରାତ୍ରିଂ ପାର୍ଥିବଂ ରଜଃ ପିତୁରପ୍ରାୟି ଧାମଭିଃ ।
ଦିବଃ ସଦାଂ ସି ବୃହତୀ ତିଷ୍ଠସ ଆ ତ୍ୱେଷଂ ବର୍ତ୍ତତେ ତମଃ ॥
( ଶୁ.ଯଜୁ. ୩୪-୩୨ )

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
କର୍ପୂରନୀରାଜନଂ ସମର୍ପୟାମି ।

ପୁଷ୍ପାଞ୍ଜଳିସମର୍ପଣମ୍ -

ନାନାସୁଗନ୍ଧିପୁଷ୍ପାଣି ଯଥାକାଳୋଦ୍‌ଭବାନି ଚ ।
ପୁଷ୍ପାଞ୍ଜଳିର୍ମୟା ଦତ୍ତୋ ଗୃହାଣ ପରମେଶ୍ୱର ॥
ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ,
ମନ୍ତ୍ରପୁଷ୍ପାଞ୍ଜଳିଂ ସମର୍ପୟାମି ।

ପ୍ରଦକ୍ଷିଣମ୍ -

କ) ଯାନି କାନି ଚ ପାପାନି ଜ୍ଞାନାଜ୍ଞାନକୃତାନି ଚ ।
ତାନି ସର୍ବାଣି ନଶ୍ୟନ୍ତି ପ୍ରଦକ୍ଷିଣପଦେ ପଦେ ॥

ଖ) ଓଁ ଯେ ତୀର୍ଥାନି ପ୍ରଚରନ୍ତି ସୃକାହସ୍ତା ନିଷଙ୍ଗିଣଃ ।
ତେଷାଂ ସହସ୍ରଯୋଜନେଽବ ଧନ୍ୱାନି ତନ୍ମସି ॥
(ଶୁ.ଯଜୁ. ୧୬-୬୧)

ଓଁ ସିଦ୍ଧିବୁଦ୍ଧିସହିତାୟ ମହାଗଣପତୟେ ନମଃ, ପ୍ରଦକ୍ଷିଣଂ ସମର୍ପୟାମି ।

ଏହାପରେ ବିସର୍ଜନନିମିତ୍ତ ମନ୍ତ୍ରପାଠ କରିବ ।

ମନ୍ତ୍ର ଯଥା - ଦ୍ବଂ ଦେବଃ ଭକ୍ତକୃପୟା ପରିହୃତମାତ୍ରଃ
ସର୍ବାତ୍ମକଃ ସକଳବସ୍ତୁଷୁ ସନ୍ନିଧତ୍ସେ ।
ସମ୍ପୂଜ୍ୟ ସ୍ୱସ୍ୟ ହୃଦୟେ ବିନିବେଶୟେଽହଂ
କାର୍ଯ୍ୟାନ୍ତରେଷ୍ୱପି ପୁନସ୍ମରିତାଽଽଗମାୟ ।।

ପ୍ରାର୍ଥନା - ବିଘ୍ନେଶ୍ୱରାୟ ବରଦାୟ ସୁରପ୍ରିୟାୟ,
ଲମ୍ବୋଦରାୟ ସକଳାୟ ଜଗଦ୍ଧିତାୟ ।
ନାଗାନନାୟ ଶ୍ରୁତିଯଜ୍ଞବିଭୂଷିତାୟ
ଗୌରୀସୁତାୟ ଗଣନାଥ ନମୋ ନମସ୍ତେ ।।
ଭକ୍ତାର୍ତ୍ତିନାଶନପରାୟ ଗଣେଶ୍ୱରାୟ
ସର୍ବେଶ୍ୱରାୟ ଶୁଭଦାୟ ସୁରେଶ୍ୱରାୟ ।
ବିଦ୍ୟାଧରାୟ ବିକଟାୟ ଚ ବାମନାୟ
ଭକ୍ତପ୍ରସନ୍ନବରଦାୟ ନମୋ ନମସ୍ତେ ।।
ନମସ୍ତେ ବ୍ରହ୍ମରୂପାୟ ବିଷ୍ଣୁରୂପାୟ ତେ ନମଃ ।
ନମସ୍ତେ ରୁଦ୍ରରୂପାୟ କରିରୂପାୟ ତେ ନମଃ ।।
ବିଶ୍ୱରୂପସ୍ୱରୂପାୟ ନମସ୍ତେ ବ୍ରହ୍ମଚାରିଣେ ।
ଭକ୍ତପ୍ରିୟାୟ ଦେବାୟ ନମସ୍ତୁଭ୍ୟଂ ବିନାୟକ ।।
ଲମ୍ବୋଦର ନମସ୍ତୁଭ୍ୟଂ ସତତଂ ମୋଦକପ୍ରିୟ ।
ନିର୍ବିଘ୍ନଂ କୁରୁ ମେ ଦେବ ସର୍ବକାର୍ଯ୍ୟେଷୁ ସର୍ବଦା ।।
ତ୍ୱାଂ ବିଘ୍ନଶତ୍ରୁଦଳନେତି ଚ ସୁନ୍ଦରେତି,
ଭକ୍ତପ୍ରିୟେତି ସୁଖଦେତି ଫଳପ୍ରଦେତି ।
ବିଦ୍ୟାପ୍ରଦେତ୍ୟଘହରେତି ଚ ଯେ ସ୍ତୁବନ୍ତି
ତେଭ୍ୟୋ ଗଣେଶ ବରଦୋ ଭବ ନିତ୍ୟମେବ ।।
ଗଣେଶପୂଜନେ କର୍ମ ଯନ୍ନ୍ୟୂନମଧିକଂ କୃତମ୍ ।
ତେନ ସର୍ବେଣ ସର୍ବାତ୍ମା ପ୍ରସନ୍ନୋଽସ୍ତୁ ସଦା ମମ ।।
ଅନୟା ପୂଜୟା ସିଦ୍ଧି-ବୁଦ୍ଧିସହିତୋ ମହାଗଣପତିଃ ପ୍ରୀୟତାଂ ନ ମମ ।।

ଏହା କହି ପୂଜା ସମାପ୍ତ କରିବ ।

।। ଇତି ଶ୍ରୀ ଗଣେଶପୂଜା ସମାପ୍ତା ।।

# ଶ୍ରୀ ଶିବପୂଜା

ପୂଜକ ଶିବପୂଜା କରିବା ପୂର୍ବରୁ ଆସନଶୁଦ୍ଧି, ଭୂତଶୁଦ୍ଧି-ପ୍ରାଣପ୍ରତିଷ୍ଠା-(ନିଜର ଓ ଦେବତାଙ୍କର) ପ୍ରଣବନ୍ୟାସ (ପ୍ରାଣାୟାମ)ଓ ମାତୃକାନ୍ୟାସ କରି ଏହାପରେ ଶ୍ରୀକଣ୍ଠାଦି ନ୍ୟାସ ଅନୁଷ୍ଠାନ କରିବେ ।

**ଶ୍ରୀକଣ୍ଠାଦିନ୍ୟାସଃ -**

**ଋଷ୍ୟାଦିନ୍ୟାସଃ :**

ଓଁ ଅସ୍ୟ ଶ୍ରୀକଣ୍ଠାଦିନ୍ୟାସସ୍ୟ **ଦକ୍ଷିଣାମୂର୍ତ୍ତିଋଷିଃ, ଗାୟତ୍ରୀଛନ୍ଦଃ,** ଶ୍ରୀ ଅର୍ଦ୍ଧନାରୀଶ୍ୱରୋ ଦେବତା, ହ୍ରାଂ ବୀଜଂ, ସଂ ଶକ୍ତିଃ, ମମ ଶ୍ରୀକଣ୍ଠାଦିନ୍ୟାସେ ବିନିଯୋଗଃ।

**କରନ୍ୟାସଃ -**

ଓଁ ହ୍ରାଂ ହଂ ସାଂ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ହ୍ରୀଂ ହଂ ସୀଂ  ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ହ୍ରୂଂ ହଂ ସୂଂ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ହ୍ରୈଂ ହଂସୈଂ ଅନାମିକାଭ୍ୟାଂ ହୂମ୍ ।
ଓଁ ହ୍ରୌଂ ହଂ ସୌଂ କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ହ୍ରଃ ହଂ ସଃ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସଃ -**

ଓଁ ହ୍ରାଂ ହଂ ସାଂ ହୃଦୟାୟ ନମଃ ।
ଓଁ ହ୍ରୀଂ ହଂ ସୀଂ ଶିରସେ ସ୍ୱାହା ।
ଓଁ ହ୍ରୂଂ ହଂ ସୂଂ ଶିଖାୟୈ ବଷଟ୍ ।
ଓଁହ୍ରୈଂ ହଂ ସୈଂ କବଚାୟ ହୂମ୍ ।
ଓଁ ହ୍ରୌଂ ହଂ ସୌଂ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ହ୍ରଃ ହଂ ସଃ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍ - ଓଁ ପାଶାଙ୍କୁଶବରାକ୍ଷସ୍ରକ୍ପାଣିଶୀତାଂଶୁଶେଖରମ୍ ।
ତ୍ର୍ୟକ୍ଷଂ ରକ୍ତସୁବର୍ଣ୍ଣାଭମର୍ଦ୍ଧନାରୀଶ୍ୱରଂ ଭଜେ ।।
ବନ୍ଧୂକକାଞ୍ଚନନିଭଂ ରୁଚିରାକ୍ଷମାଳାଂ
ପାଶାଙ୍କୁଶୌ ଚ ବରଦଂ ନିଜବାହୁଦଣ୍ଡୈଃ ।
ବିଭ୍ରାଣମିନ୍ଦୁସକଳାଭରଣଂ ତ୍ରିନେତ୍ରଂ
ଅର୍ଦ୍ଧାମ୍ବିକେଶମନିଶଂ ବପୁରାଶ୍ରୟାମଃ ।।

ଏହାପରେ ବହିର୍ମାତୃକାନ୍ୟାସ ପରି ଅକ୍ଷରମାନଙ୍କର ସର୍ବାଙ୍ଗନ୍ୟାସ କରିବେ ।

**ସର୍ବାଙ୍ଗନ୍ୟାସଃ -**

| | | |
|---|---|---|
| ଶିରରେ | - | ଓଁ ଅଂ ଶ୍ରୀକଣ୍ଠାୟ ପୂର୍ଣ୍ଣୋଦର୍ଯ୍ୟୈ ନମଃ । |
| ମୁଖମଣ୍ଡଳରେ | - | ଓଁ ଆଂ ଅନନ୍ତାୟ ବିରଜାୟୈ ନମଃ । |
| ଦକ୍ଷିଣନେତ୍ରରେ | - | ଓଁ ଇଂ ସୂକ୍ଷ୍ମେଶାୟ ଶାଲ୍ମଲ୍ୟୈ ନମଃ । |
| ବାମନେତ୍ରରେ | - | ଓଁ ଈଂ ତ୍ରିମୂର୍ତ୍ତୟେ ଲୋଲାକ୍ଷ୍ୟୈ ନମଃ । |
| ଦକ୍ଷିଣକର୍ଣ୍ଣରେ | - | ଓଁ ଉଂ ଅମରେଶାୟ ବର୍ତ୍ତୁଳାକ୍ଷ୍ୟୈ ନମଃ । |
| ବାମକର୍ଣ୍ଣରେ | - | ଓଁ ଊଂ ଅର୍ଘୀଶାୟ ଦୀର୍ଘଘୋଣାୟୈ ନମଃ । |
| ଦକ୍ଷିଣନାକପୁଡ଼ାରେ | - | ଓଁ ଋଂ ଭାରଭୂତୟେ ସୁଦୀର୍ଘମୁଖ୍ୟୈ ନମଃ । |
| ବାମନାକପୁଡ଼ାରେ | - | ଓଁ ୠଂ ଅତିଥୀଶାୟ ଗୋମୁଖ୍ୟୈ ନମଃ । |
| ଦକ୍ଷିଣଗଣ୍ଡସ୍ଥଳରେ | - | ଓଁ ଌଂ ସ୍ଥାଣୁକାୟ ଦୀର୍ଘଜିହ୍ୱାୟୈ ନମଃ । |
| ବାମଗଣ୍ଡସ୍ଥଳରେ | - | ଓଁ ୡଂ ହରାୟ କୁଣ୍ଡୋଦର୍ଯ୍ୟୈ ନମଃ । |
| ଉପରଓଠରେ | - | ଓଁ ଏଂ ଝିଣ୍ଟୀଶାୟ ଊର୍ଦ୍ଧ୍ୱକେଶ୍ୟୈ ନମଃ । |
| ତଳଓଠରେ | - | ଓଁ ଐଂ ଭୌତିକାୟ ବିକୃତମୁଖ୍ୟୈ ନମଃ । |
| ଉପରଦାନ୍ତପାଟିରେ | - | ଓଁ ଓଂ ସଦ୍ୟୋଜାତାୟ ଜ୍ୱାଳାମୁଖ୍ୟୈ ନମଃ । |
| ତଳଦାନ୍ତପାଟିରେ | - | ଓଁ ଔଂ ଅନୁଗ୍ରହେଶାୟ ଉଲ୍କାମୁଖ୍ୟୈ ନମଃ । |

ଶିରଃପ୍ରଦେଶରେ - ଓଁ ଅଂ ଅକ୍ରୂରାୟ ଶ୍ରୀମୁଖ୍ୟୈ ନମଃ ।
ମୁଖରେ - ଓଁ ଅଃ ମହାସେନାୟ ବିଦ୍ୟାମୁଖ୍ୟୈ ନମଃ ।
ଦକ୍ଷିଣବାହୁମୂଳରେ - ଓଁ କଂ କ୍ରୋଧୀଶାୟ ମହାକାଲ୍ୟୈ ନମଃ ।
ଦକ୍ଷିଣବାହୁମଧ୍ୟରେ - ଓଁ ଖଂ ଚଣ୍ଡେଶ୍ୱରାୟ ସରସ୍ୱତ୍ୟୈ ନମଃ ।
ଦକ୍ଷିଣବାହୁକଚଟିରେ - ଓଁ ଗଂ ପଞ୍ଚାନ୍ତକାୟ ସର୍ବସିଦ୍ଧ୍ୟୈ ନମଃ ।
ଦକ୍ଷିଣବାହୁଆଙ୍ଗୁଠିମୂଳରେ - ଓଁ ଘଂ ଶିବୋତ୍ତମାୟ ଗୌର୍ଯ୍ୟୈ ନମଃ ।
ଦକ୍ଷିଣବାହୁଆଙ୍ଗୁଠିଅଗରେ - ଓଁ ଙଂ ଏକରୁଦ୍ରାୟ ତ୍ରୈଲୋକ୍ୟବିଦ୍ୟାୟୈ ନମଃ ।
ବାମବାହୁମୂଳରେ - ଓଁ ଚଂ କୂର୍ମାୟ ମନ୍ତ୍ରାତ୍ମଶକ୍ତୟେ ନମଃ ।
ବାମବାହୁମଧ୍ୟରେ - ଓଁ ଛଂ ଏକନେତ୍ରାୟ ଭୂତମାତ୍ରେ ନମଃ ।
ବାମବାହୁକଚଟିରେ - ଓଁ ଜଂ ଚତୁରାନନାୟ ଲମ୍ବୋଦର୍ଯ୍ୟୈ ନମଃ ।
ବାମବାହୁଆଙ୍ଗୁଠିମୂଳରେ - ଓଁ ଝଂ ଅଜେଶାୟ ଦ୍ରାବିଣ୍ୟୈ ନମଃ ।
ବାମବାହୁଆଙ୍ଗୁଠିଅଗରେ - ଓଁ ଞଂ ଶର୍ବାୟ ନଗର୍ଯ୍ୟୈ ନମଃ ।
ଦକ୍ଷିଣଗୋଡ଼ କଟିପାଖରେ(ଉରୁମୂଳେ)-ଓଁ ଟଂ ସୋମେଶ୍ୱରାୟ ଖେଚର୍ଯ୍ୟୈ ନମଃ ।
ଦକ୍ଷିଣଗୋଡ଼ର ଆଣ୍ଠୁରେ - ଓଁ ଠଂ ଲାଙ୍ଗଲିନେ ମଞ୍ଜର୍ଯ୍ୟୈ ନମଃ ।
ଦକ୍ଷିଣଗୋଡ଼ର ଗୋଇଠିପାଖରେ - ଓଁ ଡ଼ଂ ଦାରୁକାୟ ରୂପିଣ୍ୟୈ ନମଃ ।
ଦକ୍ଷିଣପାଦ ଆଙ୍ଗୁଠିମୂଳରେ - ଓଁ ଢ଼ଂ ଅର୍ଦ୍ଧନାରୀଶ୍ୱରାୟ ବୀରିଣ୍ୟୈ ନମଃ ।
ଦକ୍ଷିଣପାଦ ଆଙ୍ଗୁଠିଅଗରେ - ଓଁ ଣଂ ଉମାକାନ୍ତାୟ କାକୋଦର୍ଯ୍ୟୈ ନମଃ ।
ବାମଗୋଡ଼ର କଟିପାଖରେ(ଉରୁମୂଳେ)-ଓଁ ତଂ ଆଷାଢ଼ିନେ ପୂତନାୟୈ ନମଃ ।
ବାମଗୋଡ଼ର ଆଣ୍ଠୁରେ - ଓଁ ଥଂ ଦଣ୍ଡିନେ ଭଦ୍ରକାଲ୍ୟୈ ନମଃ ।
ବାମଗୋଡ଼ର ଗୋଇଠି ପାଖରେ - ଓଁ ଦଂ ଅଦ୍ରୟେ ଯୋଗିନ୍ୟୈ ନମଃ ।
ବାମପାଦ ଆଙ୍ଗୁଠିମୂଳରେ - ଓଁ ଧଂ ମୀନାୟ ଶଂଖିନ୍ୟୈ ନମଃ ।
ବାମପାଦ ଆଙ୍ଗୁଠି ଅଗରେ - ଓଁ ନଂ ମେଷାୟ ଗର୍ଜିନ୍ୟୈ ନମଃ ।

ଦେହର ଦକ୍ଷିଣପାର୍ଶ୍ୱରେ - ଓଁ ପଂ ଲୋହିତାୟ କାଳରାତ୍ର୍ୟୈ ନମଃ ।

ଦେହର ବାମପାର୍ଶ୍ୱରେ - ଓଁ ଫଂ ଶିଖିନ୍ୟୈ କକୁଦିନ୍ୟୈ ନମଃ ।

ପିଠିରେ - ଓଁ ଛଗଲଣ୍ଡାୟ କପର୍ଦ୍ଦିନ୍ୟୈ ନମଃ ।

ନାଭିରେ - ଓଁ ଭଂ ଦ୍ୱିରଣ୍ଡେଶାୟ ବଜ୍ରାୟୈ ନମଃ ।

ପେଟରେ - ଓଁ ମଂ ମହାକାଳାୟ ଜୟାୟୈ ନମଃ ।

ହୃଦୟରେ - ଓଁ ଯଂ ତ୍ୱଗାତ୍ମନେ ବାଳିନେ ସୁମୁଖେଶ୍ୱର୍ୟ୍ୟୈ ନମଃ ।

ଦକ୍ଷିଣସ୍କନ୍ଧରେ - ଓଁ ରଂ ଅସୃଗାତ୍ମନେ ଭୁଜଙ୍ଗେଶାୟ ରେବତ୍ୟୈ ନମଃ ।

ବାମସ୍କନ୍ଧରେ - ଓଁ ଲଂ ମାଂସାତ୍ମନେ ପିନାକିନେ ମାଧବ୍ୟୈ ନମଃ ।

କକୁଦପ୍ରଦେଶରେ - ଓଁ ବଂ ମେଦାତ୍ମନେ ଖଡ୍‌ଗେଶାୟ ବାରୁଣ୍ୟୈ ନମଃ ।

ହୃଦୟରୁ ଦକ୍ଷିଣହାତପର୍ଯ୍ୟନ୍ତ -ଓଁ ଶଂ ଅସୃଗାତ୍ମନେ ବୃକ୍‌କାୟ ବାୟବ୍ୟୈ ନମଃ ।

ହୃଦୟରୁ ବାମହସ୍ତପର୍ଯ୍ୟନ୍ତ - ଓଁ ଷଂ ମଜ୍ଜାତ୍ମନେ ଶ୍ୱେତାୟ ରକ୍ଷୋବଧାରିଣ୍ୟୈ ନମଃ ।

ହୃଦୟରୁ ଦକ୍ଷିଣପାଦପର୍ଯ୍ୟନ୍ତ- ଓଁ ସଂ ଶୁକ୍ରାତ୍ମନେ ଭୃଗବେ ସହଜାୟୈ ନମଃ ।

ହୃଦୟରୁ ବାମପାଦପର୍ଯ୍ୟନ୍ତ - ଓଁ ହଂ ପ୍ରାଣାତ୍ମନେ ନକୁଳୀଶାୟ ମହାଲକ୍ଷ୍ମ୍ୟୈ ନମଃ ।

ନାଭିରେ - ଓଁ ଳଂ ଶକ୍ତ୍ୟାତ୍ମନେ ଶିବାୟ ବ୍ୟାପିନ୍ୟୈ ନମଃ ।

ଶିରଃପ୍ରଦେଶରେ - ଓଁ କ୍ଷଂ କ୍ରୋଧାତ୍ମନେ ସଂବର୍ତ୍ତକାୟ ମାୟାୟୈ ନମଃ ।

॥ ଇତି ଶ୍ରୀକଣ୍ଠାଦିନ୍ୟାସଃ ॥

**ମନ୍ତ୍ରନ୍ୟାସଃ -**

ଓଁ ତ୍ର୍ୟମ୍ବକମିତି ମନ୍ତ୍ରସ୍ୟ । ବସିଷ୍ଠ ଋଷିଃ । ଅନୁଷ୍ଟୁପ୍‌ଛନ୍ଦଃ । ଈଶ୍ୱରୋ ଦେବତା । ପୂଜାକର୍ମଣି ବିନିଯୋଗଃ ।

**କରନ୍ୟାସଃ -**

ଓଁ ତ୍ର୍ୟମ୍ବକଂ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ଯଜାମହେ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ସୁଗନ୍ଧିଂ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ପୁଷ୍ଟିବର୍ଦ୍ଧନମ୍ ଅନାମିକାଭ୍ୟାଂ ହୁମ୍ ।
ଓଁ ଉର୍ବାରୁକମିବ ବନ୍ଧନାତ୍ କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ମୃତ୍ୟୋର୍ମୁକ୍ଷୀୟ ମାଽମୃତାତ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସଃ -**

ଓଁ ତ୍ର୍ୟମ୍ବକଂ ହୃଦୟାୟ ନମଃ ।
ଓଁ ଯଜାମହେ ଶିରସେ ସ୍ୱାହା ।
ଓଁ ସୁଗନ୍ଧିଂ ଶିଖାୟୈ ବଷଟ୍ ।
ଓଁ ପୁଷ୍ଟିବର୍ଦ୍ଧନମ୍ କବଚାୟ ହୁମ୍ ।
ଓଁ ଉର୍ବାରୁକମିବ ବନ୍ଧନାତ୍ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ମୃତ୍ୟୋର୍ମୁକ୍ଷୀୟ ମାଽମୃତାତ୍ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

**ଧ୍ୟାନମ୍ -**

ଓଁ ଧ୍ୟାୟେନ୍ନିତ୍ୟଂ ମହେଶଂ ରଜତଗିରିନିଭଂ ଚାରୁଚନ୍ଦ୍ରାବତଂସଂ
ରତ୍ନାକଳ୍ପୋଜ୍ଜ୍ୱଳାଙ୍ଗଂ ପରଶୁମୃଗବରାଭୀତିହସ୍ତଂ ପ୍ରସନ୍ନମ୍ ।
ପଦ୍ମାସୀନଂ ସମନ୍ତାତ୍ ସ୍ତୁତମମରଗଣୈର୍ବ୍ୟାଘ୍ରକୃତ୍ତିଂ ବସାନଂ
ବିଶ୍ୱାଦ୍ୟଂ ବିଶ୍ୱବୀଜଂ ନିଖିଳଭୟହରଂ ପଞ୍ଚବକ୍ତ୍ରଂ ତ୍ରିନେତ୍ରମ୍ ॥

**ବୈଦିକମନ୍ତ୍ରଃ -**

ଓଁ ତ୍ର୍ୟମ୍ବକଂ ଯଜାମହେ ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନମ୍ ।
ଉର୍ବାରୁକମିବ ବନ୍ଧନାତ୍ ମୃତ୍ୟୋର୍ମୁକ୍ଷୀୟ ମାଽମୃତାତ୍ ଓଁ ॥

**ତାନ୍ତ୍ରିକମନ୍ତ୍ରଃ -**

ଓଁ ଅସ୍ୟ ଶ୍ରୀଶିବପଞ୍ଚାକ୍ଷରମନ୍ତ୍ରସ୍ୟ, ବାମଦେବଋଷିଃ, ପଙ୍‌କ୍ତିଶ୍ଛନ୍ଦଃ, ଶ୍ରୀ ସାମ୍ବସଦାଶିବୋ ଦେବତା, ନଂ ବୀଜଂ, ମଃ ଶକ୍ତିଃ, ମମ ପୂଜାକର୍ମଣି ବିନିଯୋଗଃ ।

**କରନ୍ୟାସଃ -** ଓଁ ଓଁ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ନଂ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ମଂ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ଶିଂ ଅନାମିକାଭ୍ୟାଂ ହୂମ୍ ।
ଓଁ ବାଂ କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ୟଂ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସଃ -** ଓଁ ଓଁ ହୃଦୟାୟ ନମଃ ।
ଓଁ ନଂ ଶିରସେ ସ୍ୱାହା ।
ଓଁ ମଂ ଶିଖାୟୈ ବଷଟ୍ ।
ଓଁ ଶିଂ କବଚାୟ ହୂମ୍ ।
ଓଁ ବାଂ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ୟଂ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

**ଧ୍ୟାନମ୍ -** ପୂର୍ବ ଧ୍ୟାନ ଏଠାରେ ମଧ୍ୟ ପାଠ କରାଯାଇପାରେ (ଧ୍ୟାୟେନ୍ନିତ୍ୟଂ ଇତ୍ୟାଦି) ।

**ମନ୍ତ୍ରଃ -** ଓଁ ନମଃ ଶିବାୟ ।

**ଶିବଗାୟତ୍ରୀ -**

ଓଁ ତତ୍‌ପୁରୁଷାୟ ବିଦ୍ମହେ । ମହାଦେବାୟ ଧୀମହି ।
ତନ୍ନୋ ରୁଦ୍ରଃ ପ୍ରଚୋଦୟାତ୍ ଓଁ ॥

**ଶିବଙ୍କର ପ୍ରିୟ ଷୋଡଶମୁଦ୍ରା -**

ଆବାହନୀ ଚନ୍ଦ୍ରକର୍ଣ୍ଣୀ ମହାମୁଦ୍ରା ଚ ନିଷ୍ଠୁରା ।
କାଳକର୍ଣ୍ଣୀ ଲିଙ୍ଗମୁଦ୍ରା ଯୋନିମୁଦ୍ରା କପାଳକମ୍ ।।
ତତଃ ତ୍ରିଶୂଳ-ଖଟ୍ୱାଙ୍ଗ-ଖଡ୍ଗ-ପାଶାଙ୍କୁଶାଭୟାଃ ।
ବରଦା ଧେନୁମୁଦ୍ରା ଚ ହ୍ୟେତାଃ ଷୋଡ଼ଶକୀର୍ତ୍ତିତାଃ ।।

ଏହି ଷୋଡଶ ମୁଦ୍ରା ଦେଖାଇ ତା ପରେ ଲିଙ୍ଗସଂସ୍କାର କରିବ ।

**ସଂସ୍କାରମନ୍ତ୍ରଃ - ଓଁ ହ୍ରୌଂ ନମୋ ଭଗବତେ ମହାରୁଦ୍ରାୟ ହ୍ରୌଂ ।।**

ଏହି ମନ୍ତ୍ର ଆଠଥର ପାଠ କରି ଅଥବା ସଦ୍ୟୋଜାତ ମନ୍ତ୍ରଦ୍ୱାରା ଅଙ୍ଗୁଳିମାନଙ୍କ ଦ୍ୱାରା ଲିଙ୍ଗ ସଂସ୍କାର କରିବ । ଏହାପରେ ସମସ୍ତ ଦେବତାଙ୍କ ପାଇଁ ସାଧାରଣ ଦଶମୁଦ୍ରା ପ୍ରଦର୍ଶନ କରିବ । ଦଶମୁଦ୍ରା ଯଥା - ଆବାହନ, ସଂସ୍ଥାପନ, ସନ୍ନିଧାନ, ସନ୍ନିରୋଧନ, ସକଳୀକରଣ, ଅବଗୁଣ୍ଠନ, ଧେନୁମୁଦ୍ରା, ଅମୃତୀକରଣ, ମହାମୁଦ୍ରା ଓ ପରମୀକରଣମୁଦ୍ରା ।

**ପ୍ରାଣପ୍ରତିଷ୍ଠା -**

ଡାହାଣ ହାତରେ ଗୋଟିଏ ଫୁଲ ଧରି ନିଜର ତଥା ଦେବତାଙ୍କର ହୃଦୟକୁ ସ୍ପର୍ଶ କରି ପ୍ରାଣପ୍ରତିଷ୍ଠା କରିବ । ଯଥା -

ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ହଂ ସଃ ସୋଽହଂ ହଂସଃ ସ୍ୱାହା ମମ ପ୍ରାଣା ଇହ ପ୍ରାଣାଃ ।

ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ହଂ ସଃ ସୋଽହଂ ହଂସଃ ସ୍ୱାହା, ମମ ଜୀବଃ ଇହ ସ୍ଥିତଃ ।

ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ହଂ ସଃ ସୋଽହଂ ହଂସଃ ସ୍ୱାହା ମମ ସର୍ବେନ୍ଦ୍ରିୟାଣି ଇହ ସ୍ଥିତାନି ।

ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ହଂ ସଃ ସୋଽହଂ ହଂସଃ ସ୍ୱାହା ମମ ବାଙ୍ ମନଃ ଚକ୍ଷୁଃ ଶ୍ରୋତ୍ରଘ୍ରାଣପ୍ରାଣାଃ ଇହାଗତ୍ୟ ସୁଖଂ ଚିରଂ ତିଷ୍ଠନ୍ତୁ ସ୍ୱାହା ।

।। ଇତି ପ୍ରାଣପ୍ରତିଷ୍ଠା ।।

# ଶିବସ୍ୟାବରଣ ପୂଜା

ପ୍ରଥମାବରଣମ୍-

ଗନ୍ଧପୁଷ୍ପାକ୍ଷତଦ୍ୱାରା ପଦ୍ମକର୍ଣ୍ଣିକାର ପୂର୍ବାଦିଚାରିଦିଗରେ - ପୂର୍ବେ - ଓଁ ତତ୍ପୁରୁଷାୟ ବିଦ୍ମହେ । ଦକ୍ଷିଣେ - ଓଁ ନଂ ଅଘୋରାୟ ନମଃ ।

ପଶ୍ଚିମେ - ଓଁ ଶିଂ ସଦ୍ୟୋଜାତାୟ ନମଃ । ଉତ୍ତରେ - ଓଁ ବାଂ ବାମଦେବାୟ ନମଃ ।

ଈଶାନାଦିଚତୁଷ୍କୋଣେଷୁ -

ଓଁ ୟଂ ଈଶାନାୟ ନମଃ । ଓଁ ନିବୃତ୍ତ୍ୟୈ ନମଃ ।
ଓଁ ପ୍ରତିଷ୍ଠାୟୈ ନମଃ । ଓଁ ବିଦ୍ୟାୟୈ ନମଃ ।
ଓଁ ଶାନ୍ତ୍ୟୈ ନମଃ ।

ପଦ୍ମକେଶରସ୍ୟ -

ଆଗ୍ନେୟେ - ଓଁ ହୃଦୟାୟ ନମଃ । ଐଶାନ୍ୟେ - ନଂ ଶିରସେ ସ୍ୱାହା ।
ବାୟବ୍ୟେ - ମଃ ଶିଖାୟୈ ବଷଟ୍ । ନୈଋତେ - ଶିଂ କବଚାୟ ହୁମ୍ ।
ପୁରତଃ - ବାଂ ନେତ୍ରତ୍ରୟାୟ ବୌଷଟ୍ । ଚତୁର୍ଦିକ୍ଷୁ - ୟଂ ଅସ୍ତ୍ରାୟ ଫଟ୍ ।

ପଦ୍ମସ୍ୟ ପୂର୍ବାଦ୍ୟଷ୍ଟଦଳେଷୁ -

ଓଁ ଅନନ୍ତାୟ ନମଃ । ଓଁ ସୂକ୍ଷ୍ମେଶାୟ ନମଃ ।
ଓଁ ଶିବୋତ୍ତମାୟ ନମଃ । ଓଁ ଏକନେତ୍ରାୟ ନମଃ ।
ଓଁ ଏକରୁଦ୍ରାୟ ନମଃ । ଓଁ ତ୍ରିମୂର୍ତ୍ତୟେ ନମଃ ।
ଓଁ ଶ୍ରୀକଣ୍ଠାୟ ନମଃ । ଓଁ ଶିଖଣ୍ଡିନେ ନମଃ ।

ଉତ୍ତରାଦିକ୍ରମେଣ ବାୟବ୍ୟାନ୍ତଂ ଦଳାଗ୍ରେଷୁ -

ଓଁ ଉମାୟୈ ନମଃ । ଓଁ ଚଣ୍ଡେଶ୍ୱରାୟ ନମଃ ।
ଓଁ ନନ୍ଦିନେ ନମଃ । ଓଁ ମହାକାଳାୟ ନମଃ ।

ଓଁ ବୃଷଭାୟ ନମଃ । ଓଁ ଗଣପତୟେ ନମଃ ।
ଓଁ ଭୃଙ୍ଗରିଟୟେ ନମଃ । ଓଁ ସ୍କନ୍ଦାୟ ନମଃ ।

ପଦ୍ମସ୍ୟ ବହିଃ ପୂର୍ବାଦିଦିକ୍ଷୁ -

ଓଁ ଇନ୍ଦ୍ରାୟ ନମଃ । ଓଁ ଅଗ୍ନୟେ ନମଃ ।
ଓଁ ଯମାୟ ନମଃ । ଓଁ ନୈରତାୟ ନମଃ ।
ଓଁ ବରୁଣାୟ ନମଃ । ଓଁ ବାୟବେ ନମଃ ।
ଓଁ କୁବେରାୟ ନମଃ । ଓଁ ଈଶାନାୟ ନମଃ ।

ଊର୍ଦ୍ଧ୍ୱେ - ଓଁ ବିଧାତ୍ରେ ନମଃ । ଅଧଃ - ଓଁ ଅନନ୍ତାୟ ନମଃ ।

ପଦ୍ମସ୍ୟ ବହିଃଭାଗେ -

ଓଁ ବଜ୍ରାୟ ନମଃ । ଓଁ ଶକ୍ତୟେ ନମଃ ।
ଓଁ ଦଣ୍ଡାୟ ନମଃ । ଓଁ ଖଡ୍‌ଗାୟ ନମଃ ।
ଓଁ ପାଶାୟ ନମଃ । ଓଁ ଅଙ୍କୁଶାୟ ନମଃ ।
ଓଁ ଗଦାୟୈ ନମଃ । ଓଁ ତ୍ରିଶୂଳାୟ ନମଃ ।
ଓଁ ପଦ୍ମାୟ ନମଃ । ଓଁ ଚକ୍ରାୟ ନମଃ ।

॥ ଇତି ଆବରଣପୂଜା ॥

ଏହାପରେ ଆବାହନାଦି ଷୋଡଶ ଉପଚାରରେ ପୂଜା କରିବ ।

ଆବାହନମନ୍ତ୍ରଃ -

ଆୟାହି ଭଗବନ୍ ଦେବ ଲୋକାନୁଗ୍ରହକାରକ ।
ପୂଜୟାମି ଯଥାଶକ୍ତି ପ୍ରସୀଦ ପରମେଶ୍ୱର ॥
ଶ୍ରୀଭଗବତେ ସଦାଶିବାୟ ନମଃ ।
ଆବାହନାର୍ଥଂ ପୁଷ୍ପଂ ସମର୍ପୟାମି ।

ଆସନମନ୍ତ୍ରଃ -

ଆସନଂ ବହୁମୂଲ୍ୟଂ ଚ ଗୃହ୍ୟତାଂ ପରମେଶ୍ୱର ।
ମୟା ନିବେଦିତଂ ଭକ୍ତ୍ୟା ମମ କଲ୍ୟାଣହେତବେ ॥

ଶ୍ରୀ ଭଗବତେ ସଦାଶିବାୟ ନମଃ ।
ଆସନାର୍ଥେ ବିଲ୍ୱପତ୍ରଂ ସମର୍ପୟାମି ।

ସ୍ୱାଗତମନ୍ତ୍ରଃ -

ସ୍ୱାଗତଂ ଭୋ ଜଗନ୍ନାଥ ଯାବତ୍ ପୂଜାବସାନକଂ ।
ତାବତ୍ତ୍ୱଂ ପ୍ରୀତଭାବେନ ଲିଙ୍ଗେଽସ୍ମିନ୍ ସନ୍ନିଧିଂ କୁରୁ ॥
ଶ୍ରୀ ଭଗବତେ ସଦାଶିବାୟ ନମଃ ।
ସ୍ୱାଗତାର୍ଥେ ପୁଷ୍ପଂ ସମର୍ପୟାମି ।

ପାଦ୍ୟମନ୍ତ୍ରଃ -

ଗଙ୍ଗୋଦକଂ ନିର୍ମଳଂ ଚ ସର୍ବସୌଗନ୍ଧ୍ୟସଂଯୁତମ୍ ।
ପାଦପ୍ରକ୍ଷାଳନାର୍ଥାୟ ଦତ୍ତଂ ମେ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତେ ସଦାଶିବାୟ ନମଃ ।
ପାଦୟୋଃ ସୁଗନ୍ଧିତୀର୍ଥଜଳରୂପଂ ପାଦ୍ୟଂ ସମର୍ପୟାମି ।

ଅର୍ଘ୍ୟମନ୍ତ୍ରଃ -

ଗନ୍ଧପୁଷ୍ପାକ୍ଷତୈର୍ୟୁକ୍ତମର୍ଘ୍ୟଂ ସଂପାଦିତଂ ମୟା ।
ଗୃହାଣ ଭଗବନ୍ ଶମ୍ଭୋ ପ୍ରସନ୍ନୋ ବରଦୋ ଭବ ॥
ଶ୍ରୀ ଭଗବତେ ସଦାଶିବାୟ ନମଃ ।
ହସ୍ତୟୋଃ ଅର୍ଘ୍ୟଂ ସମର୍ପୟାମି।

ଆଚମନୀୟମନ୍ତ୍ରଃ -

ନାନାତୀର୍ଥୋଦ୍ଭବଂ ବାରି ଗନ୍ଧାଢ୍ୟଂ ସୁମନୋହରଂ ।
ମୟା ନିବେଦିତଂ ଭକ୍ତ୍ୟା ଗୃହାଣ ପରମେଶ୍ୱର ॥
ଶ୍ରୀଭଗବତେ ସଦାଶିବାୟ ନମଃ ।
ଆଚମନୀୟଂ ଜଳଂ ସମର୍ପୟାମି।

ମଧୁପର୍କମନ୍ତ୍ରଃ -

ମଧୁପର୍କଂ ଗୃହାଣେଦଂ କାଂସ୍ୟପାତ୍ରେଽପି ସଂସ୍ଥିତମ୍ ।
ଦଧ୍ନା ମଧୁସମାୟୁକ୍ତଂ ଗୃହାଣ ଗିରିଜାପତେ ॥
ଶ୍ରୀଭଗବତେ ସଦାଶିବାୟ ନମଃ ।
ମଧୁପର୍କଂ ସମର୍ପୟାମି ।

ସ୍ନାନମନ୍ତ୍ରଃ -

ସର୍ବତୀର୍ଥୋଦ୍‌ଭବଂ ବାରି ଶୀତଳଂ ସୁମନୋହରଂ ।
ସ୍ନାନାର୍ଥଂ ତେ ମୟା ଦତ୍ତଂ କୁରୁ ସ୍ନାନଂ ମହାପ୍ରଭୋ ॥
ଶ୍ରୀଭଗବତେ ସଦାଶିବାୟ ନମଃ ।
ସ୍ନାନୀୟଂ ଜଳଂ ସମର୍ପୟାମି ।

ଦୁଗ୍ଧସ୍ନାନମନ୍ତ୍ରଃ -

କାମଧେନୁସମୁଦ୍ଭୂତଂ ସର୍ବେଷାଂ ଜୀବନଂ ପରମ୍ ।
ପାବନଂ ଯଜ୍ଞହେତୁଶ୍ଚ ପୟଃ ସ୍ନାନାୟ ଗୃହ୍ୟତାମ୍ ॥
ଶ୍ରୀ ଭଗବତେ ସଦାଶିବାୟ ନମଃ ।
ସ୍ନାନାର୍ଥେ ପୟଃ ସମର୍ପୟାମି ।

ଦଧିସ୍ନାନମନ୍ତ୍ରଃ -

ପୟସସ୍ତୁ ସମୁଦ୍ଭୂତଂ ମଧୁରାମ୍ଳଂ ଶଶିପ୍ରଭମ୍ ।
ଦଧ୍ୟାନୀତଂ ମୟା ଦେବ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତେ ସଦାଶିବାୟ ନମଃ ।
ସ୍ନାନାର୍ଥଂ ଦଧି ସମର୍ପୟାମି ।

ଘୃତସ୍ନାନମନ୍ତ୍ରଃ -

ନବନୀତସମୁତ୍ପନ୍ନଂ ସର୍ବସନ୍ତୋଷକାରକମ୍ ।
ଘୃତଂ ତୁଭ୍ୟଂ ପ୍ରଦାସ୍ୟାମି ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥

ଶ୍ରୀ ଭଗବତେ ସଦାଶିବାୟ ନମଃ ।
ସ୍ନାନାର୍ଥଂ ଘୃତଂ ସମର୍ପୟାମି ।

ମଧୁସ୍ନାନମନ୍ତ୍ରଃ -

ପୁଷ୍ପରେଣୁସମୁତ୍ପନ୍ନଂ ସୁସ୍ୱାଦୁ ମଧୁରଂ ମଧୁ ।
ତେଜଃପୁଷ୍ଟିକରଂ ଦିବ୍ୟଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।
ଶ୍ରୀ ଭଗବତେ ସଦାଶିବାୟ ନମଃ ।
ମଧୁସ୍ନାନଂ ସମର୍ପୟାମି ।

ଶର୍କରାସ୍ନାନମନ୍ତ୍ରଃ -

ଇକ୍ଷୁସାରସମୁଦ୍ଭୂତାଂ ଶର୍କରାଂ ପୁଷ୍ଟିଦାଂ ଶୁଭାମ୍ ।
ମଳାପହାରିକାଂ ଦିବ୍ୟାଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।
ଶ୍ରୀଭଗବତେ ସଦାଶିବାୟ ନମଃ ।
ଶର୍କରାସ୍ନାନଂ ସମର୍ପୟାମି ।

ପଞ୍ଚାମୃତସ୍ନାନମନ୍ତ୍ରଃ -

ପୟୋଦଧିଘୃତଂ ଚୈବ ମଧୁ ଚ ଶର୍କରାନ୍ୱିତମ୍ ।
ପଞ୍ଚାମୃତଂ ମୟାଽଽନୀତଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।
ଶ୍ରୀ ଭଗବତେ ସଦାଶିବାୟ ନମଃ ।
ପଞ୍ଚାମୃତସ୍ନାନଂ ସମର୍ପୟାମି ।

ସ୍ନାନାନ୍ତ ଆଚମନମ୍ - ସ୍ନାନାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

ବସ୍ତ୍ରମନ୍ତ୍ରଃ - ଶୁଦ୍ଧଂ ଶୁଭମିଦଂ ବସ୍ତ୍ରଂ କୌଶେୟଂ କରୁଣାନିଧେ ।
ଦଦାମି ପରିଧାନାର୍ଥଂ ଗୃହାଣ ତ୍ରିପୁରାନ୍ତକ ।।
ଶ୍ରୀ ଭଗବତେ ସଦାଶିବାୟ ନମଃ । ବସ୍ତ୍ରଂ ସମର୍ପୟାମି ।
ବସ୍ତ୍ରାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

ଯଜ୍ଞୋପବୀତମନ୍ତ୍ରଃ -

ଯଜ୍ଞସୂତ୍ରଂ ମୟା ଦତ୍ତଂ ବ୍ରହ୍ମଣା ନିର୍ମିତଂ ପୁରା ।
ଗୃହାଣ ପାର୍ବତୀନାଥ ସର୍ବକାମଫଳପ୍ରଦ ॥
ଶ୍ରୀ ଭଗବତେ ସଦାଶିବାୟ ନମଃ । ଯଜ୍ଞୋପବୀତଂ ସମର୍ପୟାମି ।
ଯଜ୍ଞୋପବୀତାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

ଉତ୍ତରୀୟମନ୍ତ୍ରଃ-

ବ୍ୟାଘ୍ରଚର୍ମୋତ୍ତରୀୟଂ ଚ ଗୃହାଣ ବୃଷଭଧ୍ୱଜ ।
ମୟା ନିବେଦିତଂ ଭକ୍ତ୍ୟା ପୂଜାଂ ମେ ସଫଳାଂ କୁରୁ ।
ଶ୍ରୀଭଗବତେ ସଦାଶିବାୟ ନମଃ । ଉତ୍ତରୀୟଂ ସମର୍ପୟାମି ।
ଉତ୍ତରୀୟାର୍ଥେ ଆଚମନୀୟଂ ଜଳଂ ସମର୍ପୟାମି ।

ଚନ୍ଦନମନ୍ତ୍ରଃ- ପରମାନନ୍ଦସୌରଭ୍ୟପରିପୂର୍ଣ୍ଣଦିଗନ୍ତରଂ ।
ଗୃହାଣ ପରମଂ ଗନ୍ଧଂ କୃପୟା ପରମେଶ୍ୱର ॥
ଶ୍ରୀ ଭଗବତେ ସଦାଶିବାୟ ନମଃ । ଚନ୍ଦନଂ ସମର୍ପୟାମି ।

ଅକ୍ଷତମନ୍ତ୍ରଃ- ଅକ୍ଷତାଶ୍ଚ ସୁରଶ୍ରେଷ୍ଠ କୁଙ୍କୁମାକ୍ତାଃ ସୁଶୋଭିତାଃ ।
ମୟା ନିବେଦିତା ଭକ୍ତ୍ୟା ଗୃହାଣ ପରମେଶ୍ୱର ॥
ଶ୍ରୀ ଭଗବତେ ସଦାଶିବାୟ ନମଃ । ଅକ୍ଷତଂ ସମର୍ପୟାମି ।

ପୁଷ୍ପମାଳାମନ୍ତ୍ରଃ -

ମାଲ୍ୟାଦୀନି ସୁଗନ୍ଧୀନି ମାଲତ୍ୟାଦୀନି ଭକ୍ତିତଃ ।
ମୟାଽଽହୃତାନି ପୁଷ୍ପାଣି ଗୃହାଣ ପରମେଶ୍ୱର ॥
ଶ୍ରୀଭଗବତେ ସଦାଶିବାୟ ନମଃ । ପୁଷ୍ପମାଳାଂ ସମର୍ପୟାମି ।

ବିଲ୍ୱପତ୍ରପ୍ରଦାନମନ୍ତ୍ରଃ -

ତ୍ରିଦଳଂ ତ୍ରିଗୁଣାକାରଂ ତ୍ରିନେତ୍ରଂ ଚ ତ୍ରିଧାୟୁତମ୍ ।
ତ୍ରିଜନ୍ମପାପସଂହାରଂ ବିଲ୍ୱପତ୍ରଂ ଶିବାର୍ପଣମ୍ ॥
ଶ୍ରୀଭଗବତେ ସଦାଶିବାୟ ନମଃ । ବିଲ୍ୱପତ୍ରଂ ସମର୍ପୟାମି ।

**ଆଭୂଷଣମନ୍ତ୍ରଃ -**

ଗୃହାଣ ସର୍ବାଭରଣଂ ହୈମରଜତନିର୍ମିତଂ ।
ନାନାରତ୍ନସମାକୀର୍ଣ୍ଣଂ ସୁନ୍ଦରଂ ସୁମନୋହରମ୍ ।।
ଶ୍ରୀ ଭଗବତେ ସଦାଶିବାୟ ନମଃ । ଆଭୂଷଣଂ ସମର୍ପୟାମି ।

**ଧୂପମନ୍ତ୍ରଃ -** ବନସ୍ପତିରସୋଦ୍‌ଭୂତୋ ଗନ୍ଧାଢ୍ୟୋ ଗନ୍ଧ ଉତ୍ତମଃ ।
ଆଘ୍ରେୟଃ ସର୍ବଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାମ୍ ।।
ଶ୍ରୀ ଭଗବତେ ସଦାଶିବାୟ ନମଃ । ଧୂପଂ ସମର୍ପୟାମି ।

**ଦୀପମନ୍ତ୍ରଃ-** ସୁପ୍ରକାଶୋ ମହାଦୀପଃ, ସର୍ବଶସ୍ତିମିରାପହଃ ।
ସବାହ୍ୟାଭ୍ୟନ୍ତରଜ୍ୟୋତିର୍ଦୀପୋଽୟଂ ପ୍ରତିଗୃହ୍ୟତାମ୍ ।।
ଶ୍ରୀଭଗବତେ ସଦାଶିବାୟ ନମଃ । ଦୀପଂ ସମର୍ପୟାମି ।

**ନୈବେଦ୍ୟସଂସ୍କାରଃ -**

ଈକ୍ଷଣଂ ବୀକ୍ଷଣଂ ଚୈବାଭ୍ୟୁକ୍ଷଣଂ ଚ ସତାଡନଂ ।
ଅମୃତୀକରଣଂ ଚୈବାବଗୁଣ୍ଠନମତଃ ପରମ୍ ।।
ତାଳତ୍ରୟଂ ଦିଗ୍‌ବନ୍ଧନଂ ଚାସ୍ତ୍ରମନ୍ତ୍ରେଣ ମନ୍ତ୍ରବିତ୍ ।
ଅଷ୍ଟବାରଂ ଜପଂ କୃତ୍ୱା ଧେନୁମୁଦ୍ରାଂ ପ୍ରଦର୍ଶୟେତ୍ ।।

ଏହାପରେ ଜଳଚଳୁକ ଗ୍ରହଣ କରି ନୈବେଦ୍ୟ ସମର୍ପଣ କରିବ । ଏହାପରେ ନୈବେଦ୍ୟାର୍ଥମାଚମନୀୟଂ ସ୍ୱାହା କହି ଟିକିଏ ଜଳ ଦେବ ।

**ନୈବେଦ୍ୟମନ୍ତ୍ରଃ -**

ନିବେଦୟାମି ଭଗବନ୍ ଗୃହାଣେଦଂ ହବିର୍ହର ।
ନୈବେଦ୍ୟଂ ଷଡ୍ରସୋପେତଂ ସୁସ୍ୱାଦୁଂ ସୁମନୋହରମ୍ ।।
ଶ୍ରୀ ଭଗବତେ ସଦାଶିବାୟ ନମଃ ।
ନୈବେଦ୍ୟଂ ନିବେଦୟାମି ।।

ଏହା କହି ନୈବେଦ୍ୟ ଚାରିପଟେ ଜଳ ହାତରେ ରଖି ବୁଲାଇ ନୈବେଦ୍ୟ ଉପରେ ଉତ୍ସର୍ଗ କରିବ । ତାପରେ 'ଓଁ ଅମୃତୋପସ୍ତରଣମସି ସ୍ୱାହା' କହି

ନୈବେଦ୍ୟ ନିକଟରେ ଟିକିଏ ଜଳ ଦେବତାଙ୍କ ଉଦ୍ଦେଶ୍ୟରେ ଦେବ । ଓ ଦେବତାଙ୍କୁ "ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା" ଏହା କହି ପଞ୍ଚଗ୍ରାସ ମୁଦ୍ରା ପ୍ରଦର୍ଶନ କରିବ । ଏହାପରେ ଦେବତାଙ୍କ ମୂଳମନ୍ତ୍ର (ଓଁ ନମଃ ଶିବାୟ ) ୫୪ ଅଥବା ୨୮ ଅଥବା ୧୮ ଥର ଜପ କରିବ । ତାପରେ 'ଓଁ ଅମୃତାପିଧାନମସି ସ୍ୱାହା' ଏହି ମନ୍ତ୍ର ପାଠ କରି ଆଚମନନିମିତ୍ତ ଆଉ ଟିକିଏ ଜଳପ୍ରଦାନ କରି ଦେବତାଙ୍କ ନେବୈଦ୍ୟ ସରିଲା ବୋଲି ଭାବିବ ।

**ଆରତ୍ରିକମନ୍ତ୍ରଃ -**

କର୍ପୂରବର୍ତ୍ତିସଂଯୁକ୍ତଂ ଭ୍ରାମିତଂ ମଦନାନ୍ତକ ।
ଆରତ୍ରିକଂ ଗୃହାଣେଦଂ ଭକ୍ତିଂ ମେଽପ୍ୟଚଳାଂ କୁରୁ ॥
ଶ୍ରୀଭଗବତେ ସଦାଶିବାୟ ନମଃ । ଆରତ୍ରିକଂ ସମର୍ପୟାମି ।

**ପୁଷ୍ପାଞ୍ଜଳିମନ୍ତ୍ରଃ -**

ଅଜ୍ଞାନାଦ୍ ଯଦି ବା ଜ୍ଞାନାଜ୍ଜପପୂଜାଦିକଂ ମୟା ।
କୃତଂ ତଦସ୍ତୁ ସଫଳଂ କୃପୟା ତବ ଶଙ୍କର ॥
ଶ୍ରଦ୍ଧୟା ସିକ୍ତୟା ଭକ୍ତ୍ୟା ହାର୍ଦ୍ଦପ୍ରେମ୍ଣା ସମର୍ପିତଃ ।
ମନ୍ତ୍ରପୁଷ୍ପାଞ୍ଜଳିଶ୍ଚାୟଂ କୃପୟା ପ୍ରତିଗୃହ୍ୟତାମ୍ ॥
ଶ୍ରୀ ଭଗବତେ ସଦାଶିବାୟ ନମଃ । ପୁଷ୍ପାଞ୍ଜଳିଂ ସମର୍ପୟାମି ।

**ସମର୍ପଣମନ୍ତ୍ରଃ -**

ତ୍ୱମେବ ମାତା ଚ ପିତା ତ୍ୱମେବ, ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ ।
ତ୍ୱମେବ ବିଦ୍ୟା ଦ୍ରବିଣଂ ତ୍ୱମେବ
ତ୍ୱମେବଂ ସର୍ବଂ ମମ ଦେବଦେବ ॥
ଶିବେ ଭକ୍ତିଃ ଶିବେ ଭକ୍ତିଃ ଶିବେ ଭକ୍ତିର୍ଭବେ ଭବେ ।
ଅନ୍ୟଥା ଶରଣଂ ନାସ୍ତି ତ୍ୱମେବ ଶରଣଂ ମମ ॥

ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ସୁରେଶ୍ୱର ।
ଯତ୍ପୂଜିତଂ ମୟା ଦେବ ପରିପୂର୍ଣ୍ଣଂ ତଦସ୍ତୁ ମେ ।।

**ନମସ୍କାରମନ୍ତ୍ରଃ -**

ନମୋ ଓଁକାରରୂପାୟ ବେଦରୂପାୟ ତେ ନମଃ ।
ଅଲିଙ୍ଗଲିଙ୍ଗରୂପାୟ ବିଶ୍ୱରୂପାୟ ତେ ନମଃ ।।
ନମୋ ମୋକ୍ଷପ୍ରଦେ ତୁଭ୍ୟଂ ନମୋ ନାଦାତ୍ମନେ ତଥା ।
ନମଃ ଶବ୍ଦସ୍ୱରୂପାୟ ରୂପାତୀତାୟ ତେ ନମଃ ।।
ତ୍ୱଂ ଗୁରୁସ୍ତ୍ୱଂ ଗତିଃ ସାକ୍ଷାତ୍ ତ୍ୱଂ ପିତା ତ୍ୱଂ ପିତାମହଃ ।
ନମସ୍ତେ ଭଗବନ୍ ରୁଦ୍ରଃ ଭାସ୍କରାମିତତେଜସେ ।।
ସଂସାରସାଗରେ ମଗ୍ନଂ ମାମୁଦ୍ଧର ଶିବାବ୍ୟୟ ।।
ଅନେନ ପୂଜନେନ ତ୍ୱଂ ବାଞ୍ଛିତାର୍ଥପ୍ରଦୋ ଭବ ।।
ମନ୍ତ୍ରହୀନଂ କ୍ରିୟାହୀନଂ ବିଧିହୀନଂ ମହେଶ୍ୱର ।
ପୂଜିତଂ ଯନ୍ମୟା ଦେବ ପରିପୂର୍ଣ୍ଣଂ ତଦସ୍ତୁ ମେ ।।

।। ଇତି ଶ୍ରୀ ଶିବପୂଜା ସମାପ୍ତା ।

# ଶ୍ରୀ ଦୁର୍ଗାପୂଜା

ପୂଜକ ଦୁର୍ଗାପୂଜା କରିବା ପୂର୍ବରୁ ଆସନଶୁଦ୍ଧି-ଭୂତଶୁଦ୍ଧି-ପ୍ରାଣପ୍ରତିଷ୍ଠା (ନିଜର ଓ ଦେବତାଙ୍କର), ପ୍ରଣବନ୍ୟାସ (ପ୍ରାଣାୟାମ), ଓ ମାତୃକାନ୍ୟାସ ସମାପନ କରିବେ । ଏହାପରେ ଦୁର୍ଗାଙ୍କର ମନ୍ତ୍ରନ୍ୟାସ ଆରମ୍ଭ କରିବେ ।

**ମନ୍ତ୍ରନ୍ୟାସଃ -**

**ଋଷ୍ୟାଦିନ୍ୟାସଃ -**

ଓଁ ଅସ୍ୟ ଶ୍ରୀବନଦୁର୍ଗାମନ୍ତ୍ରସ୍ୟ । ଆରଣ୍ୟକଋଷିଃ । ଅନୁଷ୍ଟୁପ୍ଛନ୍ଦଃ । ଶ୍ରୀବନଦୁର୍ଗା ଦେବତା । ହ୍ରୂଂ ବୀଜଂ । ସ୍ୱାହା ଶକ୍ତିଃ । ମନ୍ତ୍ରଜପେ ବିନିଯୋଗଃ ।

କରନ୍ୟାସଃ -

ଓଁ ଐଂ ହ୍ରୀଂ ଶ୍ରୀ ଦାଂ ଜ୍ୱଳ ଉତ୍ତିଷ୍ଠ ପୁରୁଷି ଅଙ୍ଗୁଷ୍ଠାଭ୍ୟାଂ ନମଃ ।

ଓଁ ଦୀଂ ଜ୍ୱାଳିନୀଂ କିଂ ସ୍ୱପିଷି ତର୍ଜନୀଭ୍ୟାଂ ସ୍ୱାହା ।

ଓଁ ଦୁଂ ପ୍ରଜ୍ୱଳିନୀଂ ଭୟଂ ମେ ସମୁପସ୍ଥିତଂ ମଧ୍ୟମାଭ୍ୟାଂ ବଷଟ୍ ।

ଓଁ ଦୈଂ ଶୂଳିନୀଂ ଯଦି ଶକ୍ୟମଶକ୍ୟଂ ହୂଂ ଅନାମିକାଭ୍ୟାଂ ହୂମ୍ ।

ଓଁ ଦୌଃ କପର୍ଦ୍ଦିନୀଂ ଦୂଂ ଦୁର୍ଗେ ଭଗବତି କନିଷ୍ଠାଭ୍ୟାଂ ବୌଷଟ୍ ।

ଓଁ ଦଃ ଶୂଳିନୀଂ ଶମୟ ସ୍ୱାହା କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସଃ -

ଓଁ ଐଂ ହ୍ରୀଂ ଶ୍ରୀଂ ଦାଂ ଜ୍ୱଳ ଉତ୍ତିଷ୍ଠ ପୁରୁଷି ହୃଦୟାୟ ନମଃ ।

ଓଁ ଦୀଂ ଜ୍ୱାଳିନୀଂ କିଂ ସ୍ୱପିଷି ଶିରସେ ସ୍ୱାହା ।

ଓଁ ଦୁଂ ପ୍ରଜ୍ୱଳିନୀଂ ଭୟଂ ମେ ସମୁପସ୍ଥିତଂ ଶିଖାୟୈ ବଷଟ୍ ।

ଓଁ ଦୈଂ ଶୂଳିନୀଂ ଯଦି ଶକ୍ୟମଶକ୍ୟଂ ହୂଂ କବଚାୟ ହୂମ୍ ।

ଓଁ ଦୌଃ କପର୍ଦ୍ଦିନୀଂ ଦୂଂ ଦୁର୍ଗେ ଭଗବତି ନେତ୍ରାଭ୍ୟାଂ ବୌଷଟ୍ ।

ଓଁ ଦଃ ଶୂଳିନୀଂ ଶମୟ ସ୍ୱାହା କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍- ଓଁ ଧ୍ୟାୟେତ୍ ସୁବର୍ଣ୍ଣବର୍ଣ୍ଣାଭାଂ ତ୍ରିନେତ୍ରାଂ ଚାରୁହାସିନୀଂ ।

ସର୍ବଲକ୍ଷଣସଂପନ୍ନାମର୍ଦ୍ଧେନ୍ଦୁକୃତଶେଖରାମ୍ ।।

ଚତୁର୍ଭୁଜାଂ ଶଙ୍ଖଚକ୍ରଧରାଂ ବାଲାଂ ସ୍ୱରୂପିଣୀଂ ।

ଉଦ୍ୟଦ୍ ତ୍ରିଶୂଳନିର୍ଭିନ୍ନମହିଷାଂ ସିଂହବାହିନୀମ୍ ।।

ମୁକ୍ତାଦାମଲସତ୍କଣ୍ଠାଂ ମୁନିଭିଃ ସ୍ତୁତିପାଠକୈଃ ।

ସିଦ୍ଧୈର୍ଦେବଗଣୈର୍ଜୁଷ୍ଟାଂ କୁମାରୀଭିଶ୍ଚ ସେବିତାମ୍ ।

ସର୍ବକାମପ୍ରଦାଂ ଦୁର୍ଗାଂ ବରଦାଂ ଭକ୍ତବତ୍ସଳାମ୍ ।।

ଦୁର୍ଗାଗାୟତ୍ରୀମନ୍ତ୍ରଃ -

ଓଁ ମହାଦେବ୍ୟୈ ବିଦ୍ମହେ । ଦୁର୍ଗାଦେବ୍ୟୈ ଧୀମହି ।
ତନ୍ନୋ ଦେବୀ ପ୍ରଚୋଦୟାତ୍ ଓଁ ।।

ବୈଦିକମନ୍ତ୍ରଃ -

ଓଁ ଅମ୍ବେ ଅମ୍ବିକେ ଅମ୍ବାଲିକେ ନ ମାନୟତି କଶ୍ଚନ ।
ସ୍ୱସ୍ତିକ ସୁଭଦ୍ରିକାଂ ଦେବୀଂ କାମ୍ପିଲ୍ୟବାସିନୀମ୍ ।।

ତାନ୍ତ୍ରିକମନ୍ତ୍ରଃ-

ଓଁ ଉତ୍ତିଷ୍ଠ ପୁରୁଷି କିଂ ସ୍ୱପିଷି ଭୟଂ ମେ ସମୁପସ୍ଥିତମ୍ ।
ଯଦି ଶକ୍ୟମଶକ୍ୟଂ ହୁ ଦୁଂ ଦୁର୍ଗେ ଭଗବତି ଶମୟ ସ୍ୱାହା ।।

ଆବାହନମନ୍ତ୍ରଃ -

ଆଗଚ୍ଛ ଦେବଦେବେଶି ମହିଷାସୁରମର୍ଦ୍ଦିନି ।
ପୂଜାଂ ଗୃହାଣ କୃପୟା ପ୍ରସନ୍ନା ବରଦା ଭବ ।।
ଶ୍ରୀ ଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ଦୁର୍ଗାଦେବୀମାବାହୟାମି ।

ଆସନମନ୍ତ୍ରଃ -

ନାନାରତ୍ନସମାକୀର୍ଣ୍ଣଂ ସୁନ୍ଦରଂ ସୁମନୋହରଂ ।
ଆସନଂ ଦେବଦେବେଶି ପ୍ରୀତ୍ୟର୍ଥଂ ପ୍ରତିଗୃହ୍ୟତାମ୍ ।।
ଶ୍ରୀ ଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ଆସନାର୍ଥେ ପୁଷ୍ପାଣି ସମର୍ପୟାମି ।

ସ୍ୱାଗତମନ୍ତ୍ରଃ -

ସ୍ୱାଗତାର୍ଥଂ ପୁଷ୍ପଷଟ୍କଂ ଗୃହାଣ ପରମେଶ୍ୱରି ।
ମୟା ନିବେଦିତଂ ଭକ୍ତ୍ୟା ପ୍ରସନ୍ନା ଭବ ସର୍ବଦା ।।

ଶ୍ରୀ ଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ସ୍ୱାଗତାର୍ଥଂ ପୁଷ୍ପାଣି ସମର୍ପୟାମି ।

ପାଦ୍ୟମନ୍ତ୍ରଃ-ପାଦ୍ୟଂ ଗୃହାଣ ଦେବେଶି ଶୀତଳଂ ସୁମନୋହରଂ ।
ଅର୍ପିତଂ ପରୟା ଭକ୍ତ୍ୟା ଜଗଦାନନ୍ଦକାରିଣି ।।
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ପାଦୟୋଃ ପାଦ୍ୟଂ ସମର୍ପୟାମି ।

ଅର୍ଘ୍ୟମନ୍ତ୍ରଃ-ଅର୍ଘ୍ୟଂ ଗୃହାଣ ଦେବେଶି ଗନ୍ଧପୁଷ୍ପାକ୍ଷତୈର୍ଯୁତଂ ।
ଅର୍ପିତଂ ତବ ପ୍ରୀତ୍ୟର୍ଥଂ ପ୍ରସୀଦ ପରମେଶ୍ୱରି ।।
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ହସ୍ତୟୋଃ ଅର୍ଘ୍ୟଂ ସମର୍ପୟାମି ।

ଆଚମନମନ୍ତ୍ରଃ -
ନାନାତୀର୍ଥୋଦ୍‌ଭବଂ ବାରି କର୍ପୂରାଦ୍ୟୈଃ ସୁବାସିତଂ ।
ଗୃହାଣାଚମନୀୟ ତ୍ୱଂ ପ୍ରସନ୍ନା ଭବ ସର୍ବଦା ।।
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ଆଚମନୀୟଂ ସମର୍ପୟାମି ।

ମଧୁପର୍କମନ୍ତ୍ରଃ -
ମଧୁପର୍କଂ ପରଂ ହୃଦ୍ୟଂ ଦେବଦେବୀପ୍ରିୟଙ୍କରଂ ।
ଗୃହାଣ କୃପୟା ଦେବି ଦୈତ୍ୟଦର୍ପବିନାଶିନି ।।
ଶ୍ରୀ ଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ମଧୁପର୍କଂ ସମର୍ପୟାମି ।

ସ୍ନାନମନ୍ତ୍ରଃ- ନାନାତୀର୍ଥୋଦ୍‌ଭବଂ ବାରି କୁଙ୍କୁମାଦ୍ୟୈଃ ସୁଶୀତଳଂ ।
ତଦିଦଂ କଳ୍ପିତଂ ଦେବି ! ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।

ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ସ୍ନାନାର୍ଥଂ ଜଳଂ ସମର୍ପୟାମି ॥
ସ୍ନାନାନ୍ତେ ପୁନରାଚମନୀୟଂ ଜଳଂ ସମର୍ପୟାମି ।

ପଞ୍ଚାମୃତସ୍ନାନମନ୍ତ୍ରଃ -

ପୟୋ ଦଧି ଘୃତଂ ଚୈବ ମଧୁ ଚ ଶର୍କରାନ୍ୱିତମ୍ ।
ପଞ୍ଚାମୃତଂ ମୟାଽଽନୀତଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀ ଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ସ୍ନାନାର୍ଥଂ ପଞ୍ଚାମୃତଂ ସମର୍ପୟାମି।

ବସ୍ତ୍ରମନ୍ତ୍ରଃ - ବିଶୁଦ୍ଧେ ଶୋଭନେ କ୍ଷୌମେ ସୁସୂକ୍ଷ୍ମେ ଶାଟିକେ ଶୁଭେ ।
ମୟା ନିବେଦିତଂ ଦେବି ଗୃହାଣ ପରମେଶ୍ୱରି ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ସୋତ୍ତରୀୟାମିମାଂ ଶାଟିକାଂ ସମର୍ପୟାମି ।
ବସ୍ତ୍ରାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

ଆଭରଣମନ୍ତ୍ରଃ -

ନାନାରତ୍ନସମାକୀର୍ଣ୍ଣାଂମାଳାଂ ସ୍ୱର୍ଣ୍ଣମୟୀଂ ତଥା ।
ମୁଦ୍ରିକାଂ ପାଦଭୂଷଣଂ ଗୃହାଣ ଜଗଦମ୍ବିକେ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ଆଭରଣମିଦଂ ସମର୍ପୟାମି ।

ସୌଭାଗ୍ୟସୂତ୍ରମନ୍ତ୍ରଃ -

ସୌଭାଗ୍ୟସୂତ୍ରଂ ବରଦେ ସୁବର୍ଣ୍ଣମଣିସଂଯୁତମ୍ ।
କଣ୍ଠେ ବଧ୍ନାମି ଦେବେଶି ସୌଭାଗ୍ୟଂ ଦେହି ମେ ସଦା ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ସୌଭାଗ୍ୟସୂତ୍ରଂ ସମର୍ପୟାମି ।

**ଗନ୍ଧମନ୍ତ୍ରଃ** - ଚନ୍ଦନଂ ଶୀତଳଂ ରମ୍ୟଂ ସୌରଭଂ ଦେବତାପ୍ରିୟଂ ।
ଶ୍ରଦ୍ଧୟା ଚାର୍ପିତଂ ଦେବି ଗୃହ୍ୟତାଂ ବରଦେ ଶୁଭେ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ । ଗନ୍ଧଂ ସମର୍ପୟାମି ।

**ସିନ୍ଦୂରଦାନମନ୍ତ୍ରଃ** -
ସିନ୍ଦୂରମରୁଣାଭାସଂ ଜପାକୁସୁମସନ୍ନିଭମ୍ ।
ଅର୍ପିତଂ ତେ ମୟା ଭକ୍ତ୍ୟା ପ୍ରସୀଦ ପରମେଶ୍ୱରି ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ । ସିନ୍ଦୂରଂ ସମର୍ପୟାମି ।

**ପୁଷ୍ପମନ୍ତ୍ରଃ**- ଜାତୀଚମ୍ପକପୁଷ୍ପାଣି ଗୃହାଣ ପରମେଶ୍ୱରି ।
ନିବେଦିତାନି ଯତ୍ନୟା ଭକ୍ତ୍ୟା ସଂଗୃହ୍ୟତାଂ ଶିବେ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ । ପୁଷ୍ପଂ ସମର୍ପୟାମି ।

**ଧୂପମନ୍ତ୍ରଃ** - ବନସ୍ପତିରସୋ ଦିବ୍ୟୋ ଗନ୍ଧାଢ୍ୟଃ ସୁମନୋହରଃ ।
ମୟା ନିବେଦିତୋ ଭକ୍ତ୍ୟା ଚଣ୍ଡିକେ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ । ଧୂପଂ ସମର୍ପୟାମି ।

**ଦୀପମନ୍ତ୍ରଃ**- ସାଜ୍ୟଂ ଚ ବର୍ତ୍ତିସଂଯୁକ୍ତଂ ବହ୍ନିନା ଯୋଜିତଂ ମୟା ।
ଦୀପଂ ଗୃହାଣ ଦେବେଶି ତ୍ରୈଲୋକ୍ୟତିମିରାପହମ୍ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ । ଦୀପଂ ସମର୍ପୟାମି ।

ଧୂପଦୀପ ସମର୍ପଣ କରିସାରିବା ପରେ ହସ୍ତ ପ୍ରକ୍ଷାଳନ କରିବ ।

**ନୈବେଦ୍ୟମନ୍ତ୍ରଃ** -
ନୈବେଦ୍ୟଂ ଷଡ୍ରସୋପେତଂ ପିଷ୍ଟକଂ ଘୃତପାଚିତଂ ।
ଚତୁର୍ବିଧଂ ମୟା ଦତ୍ତମମ୍ବିକେ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
ନୈବେଦ୍ୟଂ ସମର୍ପୟାମି ।

ଏହା କହି ଦୁର୍ଗାଦେବୀଙ୍କୁ ମନରେ ଧ୍ୟାନ କରି ଦେବୀଙ୍କ ଉଦ୍ଦେଶ୍ୟରେ ଆଚମନ ପାଇଁ ଜଳ ଦେଇ "ନୈବେଦ୍ୟାର୍ଥେ ଆଚମନୀୟଂ ସ୍ୱାହା" କହିବ ।

ପୁଣି ଟିକିଏ ଜଳ ଦେଇ "ଅମୃତୋପସ୍ତରଣମସି ସ୍ୱାହା" କହିବ । ଏହାପରେ ଗ୍ରାସାଦି ପଞ୍ଚମୁଦ୍ରା ପ୍ରଦର୍ଶନପୂର୍ବକ "ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା" କହିବ । ତାପରେ ଧ୍ୟାନମୁଦ୍ରାରେ ପ୍ରଣବ ୫୦ ଥର ମନରେ ଉଚ୍ଚାରଣ କରିବ ଓ "ଅମୃତୋପସ୍ତରଣମସି ସ୍ୱାହା" ଏହି ମନ୍ତ୍ରରେ ଜଳଚଳୁକ ପ୍ରଦାନ କରିବ ।

**ଆରତ୍ରିକମନ୍ତ୍ରଃ -**

ଆରତ୍ରିକଂ ମୟା ଦତ୍ତଂ ସପ୍ତବର୍ତ୍ତିଭିରନ୍ୱିତଂ ।
ଗୃହ୍ୟତାଂ ଜଗତଃ ମାତର୍ଭକ୍ତିଂ ମେଽପ୍ୟଚଳାଂ କୁରୁ ॥
ଶ୍ରୀଭଗବତ୍ୟୈ ଦୁର୍ଗାଦେବ୍ୟୈ ନମଃ ।
କର୍ପୂରାରତ୍ରିକଂ ସମର୍ପୟାମି ।

**ପ୍ରାର୍ଥନାମନ୍ତ୍ରଃ -**

ବିଧେହି ଦେବି କଲ୍ୟାଣଂ ବିଧେହି ବିପୁଳାଂ ଶ୍ରିୟମ୍ ।
ରୂପଂ ଦେହି ଜୟଂ ଦେହି ଯଶୋ ଦେହି ଦ୍ୱିଷୋ ଜହି ॥

**ନମସ୍କାରମନ୍ତ୍ରଃ -**

ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା ।
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।
ସର୍ବମଙ୍ଗଳମାଙ୍ଗଲ୍ୟେ ଶିବେ ସର୍ବାର୍ଥସାଧିକେ ।
ଶରଣ୍ୟେ ତ୍ର୍ୟମ୍ବକେ ଗୌରି ନାରାୟଣି ନମୋଽସ୍ତୁ ତେ ॥
ସର୍ବସ୍ୱରୂପେ ସର୍ବେଶେ ସର୍ବଶକ୍ତିସମନ୍ୱିତେ ।
ଭୟେଭ୍ୟସ୍ତ୍ରାହି ନୋ ଦେବି ଦୁର୍ଗେ ଦେବି ନମୋଽସ୍ତୁ ତେ ॥
ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ସୁରେଶ୍ୱରି ।
ଯତ୍ପୂଜିତଂ ମୟା ଦେବି ପରିପୂର୍ଣ୍ଣଂ ତଦସ୍ତୁ ମେ ॥

॥ ଇତି ଶ୍ରୀ ଦୁର୍ଗାପୂଜା ସମାପ୍ତା ॥

# ଶ୍ରୀ ସୂର୍ଯ୍ୟପୂଜା

ପୂଜକ ସୂର୍ଯ୍ୟପୂଜା କରିବା ପୂର୍ବରୁ ଆସନଶୁଦ୍ଧି-ଭୂତଶୁଦ୍ଧି-ପ୍ରାଣପ୍ରତିଷ୍ଠା-ପ୍ରଣବନ୍ୟାସ (ପ୍ରାଣାୟାମ) ଓ ମାତୃକାନ୍ୟାସ ସମାପନ କରିବେ । ଏହାପରେ ହାତରେ ରକ୍ତପୁଷ୍ପାକ୍ଷତ ଧାରଣ କରି ମଣ୍ଡଳ ମଧ୍ୟରେ ରବିଙ୍କୁ ଧ୍ୟାନ କରିବେ ।

**ଧ୍ୟାନ ଯଥା- ଓଁ ଶୋଣଂ ବର୍ତ୍ତୁଳମଣ୍ଡଳାନ୍ତରଗତଂ ଧ୍ୟାୟେତ୍ସ୍ୱଜହସ୍ତଦ୍ୱୟଂ**
**ରକ୍ତାଚ୍ଛାଦନମାଳିନଂ ରଥବରେ ସପ୍ତାଶ୍ୱଯୁକ୍ତେ ସ୍ଥିତମ୍ ।**
**କାଳିଙ୍ଗଂ ଗିରୀଶାଧିଦୈବତମହଂ ଶକ୍ରାଗ୍ନିଭଂ କାଶ୍ୟପଂ**
**ବହ୍ନିପ୍ରତ୍ୟଧିଦୈବତଂ କପିଳଶୋ ଚିସ୍କେଶରୂପଂ ରବିମ୍ ॥**

**ଆବାହନ -**

ଅବତର ଅବତର ଭଗବନ୍ ସବାହନାୟ ସଦାରାପତ୍ୟାୟ ସପରିବାରାୟ ସାୟୁଧାୟ ରବିମହାଗ୍ରହାୟ ସ୍ୱସ୍ଥାନଂ ପରିତ୍ୟଜ୍ୟ ମର୍ତ୍ତ୍ୟଲୋକେ ଇହ ମଣ୍ଡଳେ ଉପତିଷ୍ଠ ।

**ପ୍ରାଣପ୍ରତିଷ୍ଠା -**

ଓଁ ଯସ୍ତେ ପ୍ରାଣଃ ପଶୁଷୁ ପ୍ରବିଷ୍ଟୋ ଦେବାନାଂ ବିଷ୍ଠା ମୁନୟୋ ବିତସ୍ତେ ।
ଆମ୍ନବାନ୍ ସୋମ ଘୃତବାନ୍ ହି ସ୍ୱର୍ଗଚ୍ଛାଗ୍ନିର୍ଯଜମାନାୟ ବିନ୍ଦ ॥

ଅଥବା -

ଓଁ ମନୋର୍ଜୁତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂତନୋତୁ ।
ଅରିଷ୍ଟଂ ଯଜ୍ଞଂ ସମିମଂ ଦଧାତୁ, ବିଶ୍ୱେଦେବା ସ ଇହ ମାଦୟନ୍ତାଂ ଓଁ ପ୍ରତିଷ୍ଠ ।
ଓଁ ଶ୍ରୀରବିମହାଗ୍ରହାୟ ପ୍ରାଣ ସୁପ୍ରତିଷ୍ଠିତୋ ଭବ ।

**ସୂର୍ଯ୍ୟମନ୍ତ୍ରନ୍ୟାସଃ -**

**ଋଷ୍ୟାଦିନ୍ୟାସଃ -**

ଓଁ ଆକୃଷ୍ଣେନେତି ମନ୍ତ୍ରସ୍ୟ, ହିରଣ୍ୟଗର୍ଭଋଷିଃ, ତ୍ରିଷ୍ଟୁପ୍‌ଛନ୍ଦଃ, ସୂର୍ଯ୍ୟୋ ଦେବତା, ସୂର୍ଯ୍ୟପୂଜାୟାଂ ବିନିଯୋଗଃ ।

**କରନ୍ୟାସଃ -**

ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନଃ ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ନିବେଶୟନ୍ ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ଅମୃତଂ ମର୍ତ୍ତ୍ୟଂ ଚ ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ହିରଣ୍ମୟେନ ଅନାମିକାଭ୍ୟାଂ ହୂମ୍ ।
ଓଁ ସବିତା ରଥେନ କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ଦେବୋ ଯାତି ଭୁବନାନି ପଶ୍ୟନ୍ କରତଳକରପୃଷ୍ଠାଭ୍ୟାଂ ଫଟ୍ ।

**ଅଙ୍ଗନ୍ୟାସଃ -**

ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନଃ ହୃଦୟାୟ ନମଃ ।
ଓଁ ନିବେଶୟନ୍ ଶିରସେ ସ୍ୱାହା ।
ଓଁ ଅମୃତଂ ମର୍ତ୍ତ୍ୟଂ ଚ ଶିଖାୟୈ ବଷଟ୍ ।
ଓଁ ହିରଣ୍ମୟେନ କବଚାୟ ହୂମ୍ ।
ଓଁ ସବିତା ରଥେନ ନେତ୍ରାଭ୍ୟାଂ ବୌଷଟ୍ ।
ଓଁ ଦେବୋ ଯାତି ଭୁବନାନି ପଶ୍ୟନ୍ କରତଳକରପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍- ଓଁ ପଦ୍ମାକ୍ଷଯୁଗ୍ମାଭୟଦାନହସ୍ତଂ
କେୟୂରହାରାଙ୍ଗଦକୁଣ୍ଡଳାଢ୍ୟଂ ।
ମାଣିକ୍ୟମୌଳିଂ ଦିନନାଥମୀଡେ
ବନ୍ଧୁକକାନ୍ତିଂ ବିଳସତ୍ ତ୍ରିନେତ୍ରମ୍ ।।

ମନ୍ତ୍ରଃ - ଓଁ ଆକୃଷ୍ଣେନ ରଜସା ବର୍ତ୍ତମାନୋ ନିବେଶୟନ୍ନମୃତଂ ମର୍ତ୍ତ୍ୟଂ ଚ ।
ହିରଣ୍ମୟେନ ସବିତା ରଥେନ ଦେବୋ ଯାତି ଭୁବନାନି ପଶ୍ୟନ୍ ।।

ଗାୟତ୍ରୀ - ଓଁ ଆଦିତ୍ୟାୟ ବିଦ୍ମହେ । ମାର୍ତ୍ତଣ୍ଡାୟ ଧୀମହି ।
ତନ୍ନୋ ସୂର୍ଯ୍ୟଃ ପ୍ରଚୋଦୟାତ୍ ଓଁ ।।

ତାନ୍ତ୍ରିକରୀତିରେ ମନ୍ତ୍ରନ୍ୟାସ ମଧ୍ୟ କରାଯାଇପାରେ । ଯଥା -

**ଋଷ୍ୟାଦିନ୍ୟାସଃ -**

ଓଁ ଅସ୍ୟାଷ୍ଟାକ୍ଷର ସୂର୍ଯ୍ୟମନ୍ତ୍ରସ୍ୟ । ଭାର୍ଗବଋଷିଃ । ଅନୁଷ୍ଟୁପ୍ ଛନ୍ଦଃ ।
ଓଁ ସୂର୍ଯ୍ୟୋ ଦେବତା । ଶ୍ରୀ ସୂର୍ଯ୍ୟମହାଗ୍ରହମନ୍ତ୍ରଜପେ ବିନିଯୋଗଃ ।

କରନ୍ୟାସଃ -

ଓଁ ସତ୍ୟାୟ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ବ୍ରହ୍ମଣେ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ବିଷ୍ଣବେ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ମଧ୍ୟମାଭ୍ୟାଂ ବଷଟ୍ ।
ଓଁ ରୁଦ୍ରାୟ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ଅନାମିକାଭ୍ୟାଂ ହୂମ୍ ।
ଓଁ ଅଗ୍ନୟେ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା କନିଷ୍ଠାଭ୍ୟାଂ ବୌଷଟ୍ ।
ଓଁ ସ୍ୱର୍ଗାୟ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା କରତଳକରପୃଷ୍ଠାଭ୍ୟାଂ ଫଟ୍ ।

ଅଙ୍ଗନ୍ୟାସଃ -

ଓଁ ସତ୍ୟାୟ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ହୃଦୟାୟ ନମଃ ।
ଓଁ ବ୍ରହ୍ମଣେ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ଶିରସେ ସ୍ୱାହା ।
ଓଁ ବିଷ୍ଣବେ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ଶିଖାୟୈ ବଷଟ୍ ।
ଓଁ ରୁଦ୍ରାୟ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା କବଚାୟ ହୂମ୍ ।
ଓଁ ଅଗ୍ନୟେ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା ନେତ୍ରତ୍ରୟାୟ ବୌଷଟ୍ ।
ଓଁ ସ୍ୱର୍ଗାୟ ତେଜୋଜ୍ୱାଳାମାଳିନେ ହୂଁ ଫଟ୍ ସ୍ୱାହା କରତଳକର-ପୃଷ୍ଠାଭ୍ୟାମସ୍ତ୍ରାୟ ଫଟ୍ ।

ଧ୍ୟାନମ୍ - ଓଁ ପଦ୍ମାକ୍ଷଯୁଗ୍ମାଭୟଦାନହସ୍ତଂ
କେୟୂରହାରାଙ୍ଗଦକୁଣ୍ଡଳାଢ୍ୟଂ ।
ମାଣିକ୍ୟମୌଳିଂ ଦିନନାଥମୀଡେ
ବନ୍ଧୂକକାନ୍ତିଂ ବିଳସତ୍ ତ୍ରିନେତ୍ରମ୍ ॥

**ମନ୍ତ୍ରଃ** - ଓଁ ଘୃଣିଃ ସୂର୍ଯ୍ୟ ଆଦିତ୍ୟାୟ ସ୍ୱାହା ।

**ଆବାହନମନ୍ତ୍ରଃ** -

ଓଁ ଆବାହୟାମି ଦେବେଶଂ ସର୍ବଜୀବଗତଂ ବିଭୁଂ ।
ମମ ପୂଜାଂ ଗୃହାଣେହ ପ୍ରସନ୍ନୋ ଭବ ସର୍ବଦା ॥

ଓଁ ସୂର୍ଯ୍ୟ ଇହାଗଛ, ଇହ ତିଷ୍ଠ, ଅତ୍ରାଧିଷ୍ଠାନଂ କୁରୁ । ମମ ପୂଜାଂ ଗୃହାଣ ଏହା କହି ଆବାହନାଦିମୁଦ୍ରା ପ୍ରଦର୍ଶନ କରିବ । ଆବାହନାଦି ମୁଦ୍ରା ଯଥା - ଆବାହନ-ସଂସ୍ଥାପନ-ସନ୍ନିଧାନ-ସନ୍ନିରୋଧନ-ସକଳୀକରଣ-ଅବଗୁଣ୍ଠନ-ଧେନୁମୁଦ୍ରା-ଅମୃତୀକରଣ-ମହାମୁଦ୍ରା-ପରମୀକରଣାନି । ଏହାପରେ ସୂର୍ଯ୍ୟଙ୍କ ସପ୍ତମୁଦ୍ରା ମଧ ପ୍ରଦର୍ଶନ କରିବ । ଯଥା -

ବ୍ୟୋମମୁଦ୍ରା (୧) କମ୍ବୁମୁଦ୍ରା (୨) ପଦ୍ମମୁଦ୍ରା (୩) ଚ ନିଷ୍ଠୁରା (୪) ।
ଗୋବିଷାଣା (୫) ଧେନୁମୁଦ୍ରା (୬) ଦ୍ରାସିନୀ (୭) ସପ୍ତମୁଦ୍ରିକା ॥

ଏହାପରେ ପ୍ରତ୍ୟେକ ଉପଚାର ବୈଦିକମନ୍ତ୍ରରେ (ଓଁ ଆକୃଷ୍ଣେନ ଇତ୍ୟାଦି ମନ୍ତ୍ରରେ) ବା ତାନ୍ତ୍ରିକମନ୍ତ୍ରରେ (ଓଁ ଘୃଣିଃ ସୂର୍ଯ୍ୟ ଇତ୍ୟାଦି) ସୂର୍ଯ୍ୟଙ୍କ ଉଦ୍ଦେଶ୍ୟରେ ନିବେଦନ କରିବ ।

**ସୂର୍ଯ୍ୟସ୍ୟାବରଣପୂଜା** -

**ପ୍ରଥମାବରଣେ** -

ଓଁ ସତ୍ୟାୟ ତେଜୋଜ୍ୱାଳାମଣୟେ ହୃଦୟାୟ ନମଃ ।
ଓଁ ବ୍ରହ୍ମଣେ ତେଜୋଜ୍ୱାଳାମଣୟେ ଶିରସେ ସ୍ୱାହା ।
ଓଁ ବିଷ୍ଣବେ ତେଜୋଜ୍ୱାଳାମଣୟେ କବଚାୟ ହୂମ୍ ।
ଓଁ ସର୍ବାୟ ତେଜୋଜ୍ୱାଳାମଣୟେ ଅସ୍ତ୍ରାୟ ଫଟ୍ ।

**ଦ୍ୱିତୀୟାବରଣେ** -

ଓଁ ଧର୍ମାୟ ନମଃ । ଓଁ ଜ୍ଞାନାୟ ନମଃ ।
ଓଁ ବୈରାଗ୍ୟାୟ ନମଃ । ଓଁ ଐଶ୍ୱର୍ଯ୍ୟାୟ ନମଃ ।

ଓଁ ଅଧର୍ମାୟ ନମଃ । ଓଁ ଅଜ୍ଞାନାୟ ନମଃ ।

ଓଁ ଅବୈରାଗ୍ୟାୟ ନମଃ । ଓଁ ଅନୈଶ୍ୱର୍ଯ୍ୟାୟ ନମଃ ।

ତୃତୀୟାବରଣେ -

ଓଁ ଚନ୍ଦ୍ରାୟ ନମଃ । ଓଁ ଭୌମାୟ ନମଃ ।

ଓଁ ବୁଧାୟ ନମଃ । ଓଁ ବୃହସ୍ପତୟେ ନମଃ ।

ଓଁ ଶୁକ୍ରାୟ ନମଃ । ଓଁ ଶନୈଶ୍ଚରାୟ ନମଃ ।

ଓଁ ରାହବେ ନମଃ । ଓଁ କେତବେ ନମଃ ।

ଚତୁର୍ଥାବରଣେ -

ଓଁ ବୈବସ୍ୱତାୟ ନମଃ । ଓଁ ଯମାୟ ନମଃ ।

ଓଁ ରେବନ୍ତାୟ ନମଃ । ଓଁ ଅଶ୍ୱିନୀକୁମାରାଭ୍ୟାଂ ନମଃ ।

ଓଁ ସଂଜ୍ଞାୟୈ ନମଃ । ଓଁ ଛାୟାୟୈ ନମଃ ।

ପଞ୍ଚମାବରଣେ -

ଓଁ ବସୁଭ୍ୟୋ ନମଃ । ଓଁ କ୍ରତବେ ନମଃ ।

ଓଁ ବରାୟ ନମଃ । ଓଁ ନାରାୟଣାୟ ନମଃ ।

ଓଁ ଅବ୍ଜେ ନମଃ । ଓଁ ଗୋବ୍ଜେ ନମଃ ।

ଓଁ ଋତଜେ ନମଃ । ଓଁ ଅଦ୍ରିଜେ ନମଃ ।

ଷଷ୍ଠାବରଣେ -

ଓଁ ବାଲଖିଲ୍ୟେଭ୍ୟୋ ନମଃ । ଓଁ ଭାରଦ୍ୱାଜାୟ ନମଃ ।

ଓଁ ଗୌତମାୟ ନମଃ । ଓଁ କାଶ୍ୟପାୟ ନମଃ ।

ଓଁ ଉଷାୟୈ ନମଃ । ଓଁ ପ୍ରଭାୟୈ ନମଃ ।

ଓଁ ସନ୍ଧ୍ୟାୟୈ ନମଃ । ଓଁ ପ୍ରଜ୍ଞାୟୈ ନମଃ ।

ଅଗ୍ରେ ଓଁ ଅରୁଣାୟ ନମଃ ।

**ସପ୍ତମାବରଣେ -**

ଓଁ ବ୍ରାହ୍ମ୍ୟୈ ନମଃ । ଓଁ ନାରାୟଣ୍ୟୈ ନମଃ ।
ଓଁ କୌମାର୍ଯ୍ୟୈ ନମଃ । ଓଁ ମାହେଶ୍ୱର୍ଯ୍ୟୈ ନମଃ ।
ଓଁ ଇନ୍ଦ୍ରାଣ୍ୟୈ ନମଃ । ଓଁ ଚାମୁଣ୍ଡାୟୈ ନମଃ ।
ଓଁ ବାରାହ୍ୟୈ ନମଃ । ଓଁ ନାରସିଂହ୍ୟୈ ନମଃ ।
ଓଁ ଅପରାଜିତାୟୈ ନମଃ ।

ଏହାପରେ ପୂର୍ବାଦିଦିଗମାନଙ୍କରେ ଦିକ୍‌ପାଳମାନଙ୍କୁ ପୂଜା କରିବ । **ଯଥା-**

ଓଁ ଇନ୍ଦ୍ରାୟ ନମଃ । ଓଁ ବଜ୍ରାୟ ନମଃ ।
ଓଁ ଶକ୍ତ୍ୟୈ ନମଃ । ଓଁ ଦଣ୍ଡାୟ ନମଃ ।
ଓଁ ଖଡ୍‌ଗାୟ ନମଃ । ଓଁ ପାଶାୟ ନମଃ ।
ଓଁ ଅଙ୍କୁଶାୟ ନମଃ । ଓଁ ଗଦାୟୈ ନମଃ ।
ଓଁ ତ୍ରିଶୂଳାୟ ନମଃ । ଓଁ ପଦ୍ମାୟ ନମଃ ।
ଓଁ ଚକ୍ରାୟ ନମଃ ।

ଆବରଣ ପୂଜା ନକରି ମଧ୍ୟ ସୂର୍ଯ୍ୟଙ୍କୁ ନିମ୍ନ ପ୍ରକାରରେ ପୂଜା କରାଯାଇପାରେ ।

**ଆସନମନ୍ତ୍ରଃ -**

ପ୍ରାଞ୍ଚୈଃ କୃତଂ ଚ ଯଦ୍ ପୂର୍ବଂ ତଦ୍‌ପୂର୍ବଂ ଚ କୃତଂ ମୟା ।
ବ୍ରହ୍ମଣା ନିର୍ମିତଂ ଯେନ ଆସନଂ ପ୍ରତିଗୃହ୍ୟତାମ୍ ।।
ଓଁ ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଆସନଂ ସମର୍ପୟାମି ।

**ସ୍ୱାଗତମନ୍ତ୍ରଃ -**

ସୁସ୍ୱାଗତଂ ସ୍ୱାଗତଂ ଭୋ ଗୃହାଣ ତ୍ୱଂ ଦିବାକର ।
ପୂଜାର୍ଥମାହ୍ୱୟାମି ତ୍ୱଂ କୃପୟା ବରଦୋ ଭବ ।।
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ ।
ସ୍ୱାଗତାର୍ଥଂ ପୁଷ୍ପାଣି ସମର୍ପୟାମି ।

ପାଦ୍ୟମନ୍ତ୍ରଃ - ସର୍ବତୀର୍ଥମୟଂ ପୂଣ୍ୟଂ ସର୍ବଗନ୍ଧସମନ୍ୱିତଂ ।
ପାଦ୍ୟଂ ଗୃହାଣ ଶାନ୍ତ୍ୟର୍ଥଂ ପ୍ରସୀଦ ପରମେଶ୍ୱର ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ ।
ପାଦୟୋଃ ପାଦ୍ୟଂ ସମର୍ପୟାମି ।

ଅର୍ଘ୍ୟମନ୍ତ୍ରଃ - ଏହି ସୂର୍ଯ୍ୟ ସହସ୍ରାଂଶୋ ତେଜୋରାଶେ ଜଗତ୍ପତେ ।
ଅନୁକମ୍ପୟ ମାଂ ଭକ୍ତ୍ୟା ଗୃହାଣାର୍ଘ୍ୟଂ ଦିବାକର ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ ।
ହସ୍ତୟୋଃ ଅର୍ଘ୍ୟଂ ସମର୍ପୟାମି ॥

ଆଚମନୀୟମନ୍ତ୍ରଃ -
ଚନ୍ଦନାଗୁରୁକର୍ପୂରୈର୍ବାସିତଂ ସୁମନୋହରଂ ।
ମୟା ନିବେଦିତଂ ଭକ୍ତ୍ୟା ଗୃହାଣାଚମନୀୟକମ୍ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ ।
ହସ୍ତୟୋଃ ଆଚମନୀୟଂ ସମର୍ପୟାମି ।

ମଧୁପର୍କମନ୍ତ୍ରଃ- ମଧୁପର୍କଂ ଗୃହାଣେଦଂ ଦେବଦେବ ଦିବାକର ।
ତ୍ରୟୀମୟ ନମସ୍ତୁଭ୍ୟଂ ଜୀବଜୀବନଦାୟକ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ ।
ହସ୍ତୟୋଃ ମଧୁପର୍କଂ ସମର୍ପୟାମି ।

ସ୍ନାନମନ୍ତ୍ରଃ - ଗଙ୍ଗୋଦକେନ ସଂଯୁକ୍ତେ ଚନ୍ଦନେନ ସୁବାସିତେ ।
ସ୍ନାନଂ କୁରୁ ସୂର୍ଯ୍ୟଦେବ ଭକ୍ତିଂ ମେଽପ୍ୟଚଲାଂ କୁରୁ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ସ୍ନାନୀୟଂ ସମର୍ପୟାମି ।

ବସ୍ତ୍ରମନ୍ତ୍ରଃ - ବସ୍ତ୍ରଂ ସୁଶୋଭିତଂ ଦିବ୍ୟଂ ସର୍ବେଷାମପି ଭୂଷଣଂ ।
ଗୃହ୍ୟତାଂ ଗ୍ରହଦେବେତି ଶ୍ରଦ୍ଧୟା ଦୀୟତେ ମୟା ।
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ବସ୍ତ୍ରଂ ସମର୍ପୟାମି ।

ଯଜ୍ଞୋପବୀତମନ୍ତ୍ରଃ -

ପବିତ୍ରାଣାଂ ପବିତ୍ରଂ ତୁ ଗୁରୋର୍ଯଦ୍ ପ୍ରହିତଂ ପ୍ରଭୋ ।
ଗୃହ୍ୟତାଂ ଯଜ୍ଞସୂତ୍ରଂ ତୁ ଧନାରୋଗ୍ୟପ୍ରଦୋ ଭବ ।
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ ।
ଯଜ୍ଞୋପବୀତଂ ସମର୍ପୟାମି ।

ଉତ୍ତରୀୟମନ୍ତ୍ରଃ -

ନାନାତନ୍ତୁସମାଯୁକ୍ତଂ ପବିତ୍ରଂ ସୁମନୋହରଂ ।
ଉତ୍ତରୀୟଂ ଗୃହାଣେଦଂ ତେଜୋରାଶେ ନମୋଽସ୍ତୁ ତେ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଉତ୍ତରୀୟଂ ସମର୍ପୟାମି ।

ଆଭରଣମନ୍ତ୍ରଃ -

ଗୃହାଣ ଦିବ୍ୟାଭରଣଂ କାଞ୍ଚନାଦିବିନିର୍ମିତଂ ।
କୃପାଂ କୁରୁ ଲୋକଚକ୍ଷୁର୍ଲୋକସାକ୍ଷିନ୍ନମୋଽସ୍ତୁ ତେ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଆଭରଣଂ ସମର୍ପୟାମି ।

ଗନ୍ଧମନ୍ତ୍ରଃ - ଚନ୍ଦନାଗୁରୁକର୍ପୂରକୁଙ୍କୁମୈରୁପଶୋଭିତଂ ।
ଭକ୍ତ୍ୟା ଭୋ ପୂଜ୍ୟବିଧିନାଽପ୍ୟନୁଲେପଂ ଗୃହାଣ ମେ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଗନ୍ଧଂ ସମର୍ପୟାମି ।

ପୁଷ୍ପମନ୍ତ୍ରଃ - ଜାତୀଚମ୍ପକପୁଷ୍ପାଣି ପବିତ୍ରାଣି ଶୁଭାନି ଚ ।
ଦତ୍ତାନି ପରୟା ଭକ୍ତ୍ୟା ଗୃହାଣ ପରମେଶ୍ୱର ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ପୁଷ୍ପଂ ସମର୍ପୟାମି ।

ଧୂପମନ୍ତ୍ରଃ - ବନସ୍ପତିରସୋ ଦିବ୍ୟୋ ଗନ୍ଧାଢ୍ୟଃ ସୁମନୋହରଃ ।
ଆଘ୍ରେୟଃ ସର୍ବଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଧୂପଂ ସମର୍ପୟାମି ।

**ଦୀପମନ୍ତ୍ରଃ-** ଆଜ୍ୟାକ୍ତବର୍ତ୍ତିସଂଯୁକ୍ତୋ ବହ୍ନିନା ଦ୍ୟୋତିତୋ ବିଭୋ ।
ତମୋନାଶାୟ ଲୋକାନାଂ ଦୀପୋଽୟଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଦୀପଂ ସମର୍ପୟାମି ।
ଧୂପଦୀପାର୍ଥମାଚମନୀୟଂ ସ୍ୱାହା ।

**ନୈବେଦ୍ୟମନ୍ତ୍ରଃ -**

ନୈବେଦ୍ୟ ସମ୍ଭାରକୁ ବୀକ୍ଷଣ-ପ୍ରୋକ୍ଷଣାଦି କରି ନୈବେଦ୍ୟ ସଂସ୍କାର କରିବ । ନୈବେଦ୍ୟକୁ ସ୍ପର୍ଶ କରି ଆଠ ଥର ମୂଳମନ୍ତ୍ର (ଓଁ ଆକୃଷ୍ଣେନ ଇତ୍ୟାଦି) ଜପ କରିବ ॥

ଅର୍ଘ୍ୟୋଦକ ସହିତ ଗନ୍ଧପୁଷ୍ପାକ୍ଷତ ଧାରଣ କରି ନିମ୍ନ ମନ୍ତ୍ର ପାଠ କରିବ ।

ଫଳାନି ମୃଦୁପକ୍ୱାନି ପୂପାନି ବିବିଧାନି ଚ ।
ମୟାହୃତାନି ସର୍ବାଣି ଗୃହାଣ ଗ୍ରହକୁଞ୍ଜର ॥
ଶର୍କରାଘୃତସଂଯୁକ୍ତଂ ମଧୁରଂ ସ୍ୱାଦୁ ଚୋତ୍ତମଂ ।
ଉପହାରସମାଯୁକ୍ତଂ ନୈବେଦ୍ୟଂ ପ୍ରତିଗୃହ୍ୟତାମ୍ ॥

ଏହା ପାଠ କରି ପୁଣି ମୂଳମନ୍ତ୍ର ତିନିଥର ଉଚ୍ଚାରଣ କରି ସାୟୁଧାୟ ସପରିବାରାୟ ସାଙ୍ଗୋପାଙ୍ଗାୟ ସଶକ୍ତିକାୟ ଶ୍ରୀସୂର୍ଯ୍ୟଦେବାୟ ଇଦମମୃତନୈବେଦ୍ୟଂ ସ୍ୱାହା କହି ସେହି ଜଳ ନୈବେଦ୍ୟ ଉପରେ ଦେବତୀର୍ଥରେ ନିକ୍ଷେପ କରିବ । ଏହାପରେ "ନୈବେଦ୍ୟାର୍ଥମାଚମନୀୟଂ ସ୍ୱାହା" ପାଠ କରି ଟିକିଏ ଜଳ ନୈବେଦ୍ୟ ନିକଟରେ ଦେବ । ଆଉ ଟିକିଏ ଜଳ "ଅମୃତୋପସ୍ତରଣମସି ସ୍ୱାହା" କହି ଦେବ । ଏହାପରେ ଗ୍ରାସାଦି ପଞ୍ଚମୁଦ୍ରା ମନ୍ତ୍ର ପାଠ ସହିତ ପ୍ରଦର୍ଶନ କରିବ ।

ତାପରେ ପ୍ରଣବ (ଓଁ) ୫୦ ଥର ଜପ କରିବ । ଏହାପରେ "ଅମୃତାପିଧାନମସି ସ୍ୱାହା" ଏହି ମନ୍ତ୍ରରେ ଟିକିଏ ଜଳଦାନ କରିବ ।

ଏହାପରେ ନିମ୍ନ ମନ୍ତ୍ରରେ ନୈବେଦ୍ୟ ପାଇଁ ଆଚମନ ଜଳ ଦେବତାଙ୍କୁ ଅର୍ପଣ କରିବ ।

ବହୁତୀର୍ଥାନି ତୋୟାନି ଗନ୍ଧଯୁକ୍ତାନି ବୈ ପ୍ରଭୋ ।
ଆପୋଶାନଂ ମୟା ଦତ୍ତଂ ଗୃହାଣ ପରମେଶ୍ୱର ॥
ଶ୍ରୀ ସୂର୍ଯ୍ୟଦେବାୟ ଆଚମନୀୟଂ ନମଃ ।

ତାମ୍ବୂଳମନ୍ତ୍ରଃ -ପୂଗଫଳଂ ମହଦ୍ଦିବ୍ୟଂ ନାଗବଲ୍ଲିଦଳୈର୍ଯୁତଂ ।
ଏଲାଚୂର୍ଣ୍ଣାଦିସଂଯୁକ୍ତଂ ତାମ୍ବୂଳଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ତାମ୍ବୂଳଂ ସମର୍ପୟାମି ।

ଆରତ୍ରିକମନ୍ତ୍ରଃ-ସପ୍ତପ୍ରଦୀପସଂଯୁକ୍ତଂ କର୍ପୂରାଦିସମନ୍ୱିତଂ ।
ଆରତ୍ରିକଂ ଗୃହାଣେଦଂ ଗ୍ରହରାଜ ନମୋଽସ୍ତୁ ତେ ॥
ଶ୍ରୀଭଗବତେ ସୂର୍ଯ୍ୟାୟ ନମଃ । ଆରତ୍ରିକଂ ସମର୍ପୟାମି ।

ପୁଷ୍ପାଞ୍ଜଳିମନ୍ତ୍ରଃ -

ଏକଚକ୍ରୋ ରଥୋ ଯସ୍ୟ ଦିବ୍ୟକନକଭୂଷିତଃ ।
ସ ମେ ଭବତୁ ସୁପ୍ରୀତଃ ପଦ୍ମହସ୍ତୋ ଦିବାକରଃ ॥
ଏହ୍ୟେହି ଭଗବନ୍ ସୁରସପ୍ତାଶ୍ୱରଥବାହନ ।
ଅନୁକମ୍ପୟ ମାଂ ଭକ୍ତ୍ୟା ଗୃହାଣ କୁସୁମାଞ୍ଜଳିମ୍ ॥

ନମସ୍କାରମନ୍ତ୍ରଃ -

ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନଂ ସୁରେଶ୍ୱର ।
ଯଦ୍ପୂଜିତଂ ମୟା ଦେବ ପରିପୂର୍ଣ୍ଣଂ ତଦସ୍ତୁ ମେ ॥
ନମଃ ସବିତ୍ରେ ଜଗଦେକଚକ୍ଷୁଷେ
ଜଗଦ୍ ପ୍ରସୂତିସ୍ଥିତିନାଶହେତବେ ।
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ
ବିରଞ୍ଚିନାରାୟଣଶଙ୍କରାତ୍ମନେ ॥

॥ ଇତି ଶ୍ରୀ ସୂର୍ଯ୍ୟପୂଜା ସମାପ୍ତା ॥

# ଶ୍ରୀ ଲକ୍ଷ୍ମୀପୂଜା

ପୂଜକ ଆସନଶୁଦ୍ଧି, ଭୂତଶୁଦ୍ଧି, ପ୍ରାଣପ୍ରତିଷ୍ଠା (ନିଜର), ପ୍ରଣବନ୍ୟାସ (ପ୍ରାଣାୟାମ) ଓ ମାତୃକାନ୍ୟାସ ସମାପନ କରିବେ । ନୂତନ ପ୍ରତିମା ସ୍ଥାପନ ସ୍ଥଳରେ ଦେବତାଙ୍କର ପ୍ରାଣପ୍ରତିଷ୍ଠା କରିବେ । ଏହାପରେ ପୀଠ ପୂଜା କରିବେ ।

**ପୀଠପୂଜା -**

ଓଁ ଆଧାରଶକ୍ତୟେ ନମଃ । ଓଁ ମୂଳପ୍ରକୃତ୍ୟୈ ନମଃ ।
ଓଁ କୂର୍ମାୟ ନମଃ । ଓଁ ଶେଷାୟ ନମଃ ।
ଓଁ କ୍ଷେମାୟ ନମଃ । ଓଁ କ୍ଷୀରସମୁଦ୍ରାୟ ନମଃ ।
ଓଁ ଶ୍ୱେତଦ୍ୱୀପାୟ ନମଃ । ଓଁ ରତ୍ନମଣ୍ଡପାୟ ନମଃ ।
ଓଁ କଳ୍ପବୃକ୍ଷାୟ ନମଃ । ଓଁ ଧର୍ମାୟ ନମଃ ।
ଓଁ ଅଜ୍ଞାନାୟ ନମଃ । ଓଁ ଅବୈରାଗ୍ୟାୟ ନମଃ ।
ଓଁ ଅନୈଶ୍ୱର୍ଯ୍ୟାୟ ନମଃ । ଓଁ ଅନନ୍ତାୟ ନମଃ ।
ଓଁ ଆନନ୍ଦକନ୍ଦାୟ ନମଃ । ଓଁ ସମ୍ବିନ୍ନାଳାୟ ନମଃ ।
ଓଁ ପଦ୍ମାୟ ନମଃ । ଓଁ ପ୍ରକୃତିମୟପତ୍ରେଭ୍ୟୋ ନମଃ ।
ଓଁ ବିକାରମୟକେଶରେଭ୍ୟୋ ନମଃ ।
ଓଁ ପଞ୍ଚାଶଦ୍‌ବର୍ଣ୍ଣବୀଜାଢ୍ୟକର୍ଣ୍ଣିକାୟୈ ନମଃ ।
ଓଁ ଆଦିତ୍ୟମଣ୍ଡଳାୟ ଦ୍ୱାଦଶକଳାତ୍ମନେ ନମଃ ।
ଓଁ ସୋମମଣ୍ଡଳାୟ ଷୋଡଶକଳାତ୍ମନେ ଅମୃତାଦିଭ୍ୟୋ ନମଃ ।
ଓଁ ବହ୍ନିମଣ୍ଡଳାୟ ଦଶକଳାତ୍ମନେ ଧୂମାଦିଭ୍ୟୋ ନମଃ ।
ଓଁ ସଂ ସତ୍ତ୍ୱାୟ ନମଃ । ଓଁ ରଂ ରଜସେ ସ୍ୱାହା ।
ଓଁ ତଂ ତମସେ ନମଃ । ଓଁ ଆଂ ଆତ୍ମନେ ନମଃ ।
ଓଁ ପଂ ପରମାତ୍ମନେ ନମଃ । ଓଁ ହ୍ରୀଂ ଜ୍ଞାନାତ୍ମନେ ନମଃ ।

ଅଷ୍ଟଦଳପଦ୍ମର କେଶରମଧ୍ୟରେ ପୂର୍ବାଦିକ୍ରମରେ -

ଓଁ ବିଭୂତ୍ୟୈ ନମଃ । ଓଁ ଉନ୍ନତ୍ୟୈ ନମଃ ।
ଓଁ କାନ୍ତ୍ୟୈ ନମଃ । ଓଁ ସୃଷ୍ଟ୍ୟୈ ନମଃ ।
ଓଁ କୀର୍ତ୍ତ୍ୟୈ ନମଃ । ଓଁ ସନ୍ନତ୍ୟୈ ନମଃ ।
ଓଁ ପୁଷ୍ଟ୍ୟୈ ନମଃ । ଓଁ ଉତ୍କୃଷ୍ଟ୍ୟୈ ନମଃ ।
ଓଁ ଋଦ୍ଧ୍ୟୈ ନମଃ ।
ଓଁ ଶ୍ରୀଂ ସର୍ବଶକ୍ତ୍ୟୈ କମଳାସନାୟ ସର୍ବାତ୍ମସଂଯୋଗପୀଠାତ୍ମନେ ନମଃ । ଇତି ।

ମନ୍ତ୍ରନ୍ୟାସଃ -

ପ୍ରାଣପ୍ରତିଷ୍ଠା -

ପ୍ରତିମା ହୃଦୟପ୍ରଦେଶରେ ଅଙ୍ଗୁଷ୍ଠ ଦେଇ ମୂଳମନ୍ତ୍ର (ଓଁ ଶ୍ରୀଂ) ଆଠଥର ଜପ କରି -

"ଅସ୍ୟାଃ ପ୍ରାଣାଃ ପ୍ରତିଷ୍ଠନ୍ତୁ ଅସ୍ୟାଃ ପ୍ରାଣାଃ କ୍ଷରନ୍ତୁ ଚ ।
ଅସ୍ୟୈ ଦେବତ୍ୱସଂଖ୍ୟାୟୈ ସୁଖାୟୈ ସ୍ୱାହା" ।

ତାପରେ ଲକ୍ଷ୍ମୀଙ୍କ ଗାୟତ୍ରୀ ପାଠ କରିବ । ଯଥା -

ଓଁ ଭୂର୍ଭୁବଃ ସ୍ୱଃ ପଦ୍ମବାସିନ୍ୟୈ ବିଦ୍ମହେ । ହରିପ୍ରିୟାୟ ଧୀମହି ।
ତନ୍ନୋ ଲକ୍ଷ୍ମୀଃ ପ୍ରଚୋଦୟାତ୍ ଓଁ ଇତି ।

ଏହାପରେ ହାତରେ ପୁଷ୍ପାକ୍ଷତ ଗ୍ରହଣ କରି ନିମ୍ନ ମନ୍ତ୍ରପାଠ କରିବ ।

ଶ୍ରୀଂ ମହାଲକ୍ଷ୍ମ୍ୟୈ ନମଃ । ଶ୍ରୀଂ ମହାଲକ୍ଷ୍ମୀମାବାହୟାମି ।
ଶ୍ରୀଂ ମହାଲକ୍ଷ୍ମୀ ଅତ୍ରାଗଚ୍ଛ । ଇହ ତିଷ୍ଠ । ଅତ୍ରାଧିଷ୍ଠାନଂ କୁରୁ ।
ମମ ପୂଜାଂ ଗୃହାଣ ।

**ଆବାହନଂ** -ପଦ୍ମାସନଂ ସମଂ ଦେବି ପଦ୍ମୋପରି ବିନିର୍ମିତଂ ।
କ୍ଷଣମାଗଚ୍ଛ ବିଶ୍ରମ୍ୟ କ୍ଷଣମାଗମନଂ କୁରୁ ॥

ଏହା ପଢ଼ି ଆବାହନ ମୁଦ୍ରା ପ୍ରଦର୍ଶନ କରିବ ।

**ସନ୍ନିଧାନଂ-** ସର୍ବଂ ବିଷ୍ଣୁମୟଂ ଦେବି ତ୍ୱନ୍ନଭୂତ୍ୱମିତି ସ୍ମୃତମ୍ ।
କମଲେ କମଲେଽମୁଷ୍ମିନ୍ନିଦାନଂ ସନ୍ନିଧିଂ ଭବ ॥

ଏହି ମନ୍ତ୍ର ପାଠ କରି ସନ୍ନିଧାନମୁଦ୍ରା ପ୍ରଦର୍ଶନ କରିବ ।

**ସନ୍ନିରୋଧନଂ -**

ସ୍ଥିରା ଭବ ଜଗତ୍ୟତ୍ର ଚଞ୍ଚଳେତି କିଲ ସ୍ମୃତା ।
କ୍ଷଣୈକମାସନେ ଦେବି ସନ୍ନିରୁଦ୍ଧ୍ୟାମି କାମଦାମ୍ ॥

ଏହା ପଢ଼ି ସନ୍ନିରୋଧନମୁଦ୍ରା ପ୍ରଦର୍ଶନ କରିବ । ଏହାପରେ ସକଳୀକରଣ-ଅବଗୁଣ୍ଠନ-ଧେନୁମୁଦ୍ରା-ଅମୃତୀକରଣ-ମହାମୁଦ୍ରା-ପରମୀକରଣମୁଦ୍ରା ପ୍ରଦର୍ଶନ କରିବ । ତଦନନ୍ତର ଲକ୍ଷ୍ମୀଙ୍କର ନିଜ ମୁଦ୍ରା ପ୍ରଦର୍ଶନ କରିବ । ଲକ୍ଷ୍ମୀମୁଦ୍ରା ଯଥା -

ବକ୍ରମୁଦ୍ରାଂ ତଥା ବଦ୍ଧ୍ୱା ମଧ୍ୟମେ ଦ୍ୱେ ପ୍ରସାର୍ଯ୍ୟ ଚ ।
କନିଷ୍ଠିକେ ତଥାନୀୟଂ ତଦଗ୍ରେଽଙ୍ଗୁଷ୍ଠକଂ କ୍ଷିପେତ୍ ।
ଲକ୍ଷ୍ମୀମୁଦ୍ରା ପରା ହ୍ୟେଷା ସର୍ବସମ୍ପତ୍ପ୍ରଦାୟିକା ॥

ଏହାପରେ ଷୋଡ଼ଶୋପଚାରରେ ଲକ୍ଷ୍ମୀଙ୍କୁ ପୂଜା କରିବ । ପ୍ରତ୍ୟେକ ଉପଚାରରେ ପ୍ରଥମେ ଅର୍ଚ୍ଚନପୁଷ୍ପ, ତାପରେ ଉପଚାର, ମୁଦ୍ରା, ଜଳଧାରା ଓ ମୁଖବାସ କ୍ରମାନୁସାରେ ଦେବ ।

**ଆସନମ୍ -** ନାନାରତ୍ନସମାକୀର୍ଣ୍ଣଂ ସୁନ୍ଦରଂ ସୁମନୋହରଂ ।
ଆସନଂ ଦେବଦେବେଶି ପ୍ରୀତ୍ୟର୍ଥଂ ପ୍ରତିଗୃହ୍ୟତାମ୍ ॥
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଆସନଂ ନମଃ, ଆସନମୁଦ୍ରାଂ, ଜଳଧାରାଂ, ମୁଖବାସଃ ।

**ସ୍ୱାଗତମ୍ -** ସ୍ୱାଗତାର୍ଥଂ ପୁଷ୍ପଷଟ୍କଂ ଗୃହାଣ ପରମେଶ୍ୱରୀ ।
ମୟା ନିବେଦିତଂ ଭକ୍ତ୍ୟା ପ୍ରସନ୍ନା ଭବ ସର୍ବଦା ।

ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ସ୍ୱାଗତଂ ନମଃ ।
ସ୍ୱାଗତମୁଦ୍ରାଂ, ଜଳଧାରାଂ, ମୁଖବାସଃ ।

ପାଦ୍ୟମ୍ - ପାଦ୍ୟଂ ଗୃହାଣ ଦେବେଶି ଶୀତଳଂ ସୁମନୋହରଂ ।
ଅର୍ପିତଂ ପରୟା ଭକ୍ତ୍ୟା ଜଗଦାନନ୍ଦକାରିଣୀ ।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ପାଦ୍ୟଂ ନମଃ । ଅନ୍ୟ ସବୁ ପୂର୍ବପରି ।

ଅର୍ଘ୍ୟମ୍ - ପରିପୂତ ମହାମୂର୍ତ୍ତେ ଜଗନ୍ମାତ ଜଗନ୍ମୟି ।
କଳ୍ପୟାମି ଶିରସ୍ୟର୍ଘ୍ୟଂ ଗୃହାଣ ପରମେଶ୍ୱରୀ ।।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଅର୍ଘ୍ୟଂ ସ୍ୱାହା । ଅନ୍ୟ ସବୁ ପୂର୍ବପରି ।

ଆଚମନମ୍-ନାନାତୀର୍ଥୋଭବଂ ବାରି କର୍ପୂରାଦ୍ୟୈଃ ସୁବାସିତଂ ।
ଗୃହାଣାଚମନୀୟ ତ୍ୱଂ ପ୍ରସନ୍ନା ଭବ ସର୍ବଦା ।।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଆଚମନଂ ସ୍ୱଧା । ଅନ୍ୟ ସବୁ ପୂର୍ବପରି ।

ମଧୁପର୍କଃ- ଅଧ୍ୱଶ୍ରମୋପଶାନ୍ତ୍ୟର୍ଥଂ ଧାତ୍ରା ଚ ନିର୍ମିତଂ ପୁରା ।
ମଧୁପର୍କୋ ମୟା ଦତ୍ତୋ ଗୃହାଣ ପରମେଶ୍ୱରୀ ।।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ମଧୁପର୍କଃ ସ୍ୱଧା । ଅନ୍ୟ ସବୁ ପୂର୍ବପରି ।

ପୁନରାଚମନମ୍ -
ନାନାତୀର୍ଥୋଦ୍‌ଭବଂ ବାରି କୁଙ୍କୁମାମୋଦଶୀତଳଂ ।
ଗୃହାଣ ତ୍ୱମିଦଂ ଦେବି ପ୍ରସୀଦ ପରମେଶ୍ୱରୀ ।।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ପୁନରାଚମନୀୟଂ ସ୍ୱଧା । ଅନ୍ୟ ସବୁ ପୂର୍ବପରି ।

ସ୍ନାନମ୍ - କୁବେରେଣ ପୁରା ଦତ୍ତଂ ରତ୍ନପାତ୍ରଂ ପ୍ରପୂରିତଂ ।
ଅକ୍ଷୟଂ ସର୍ବଦା ଦେବି ତଥେଦଂ ପ୍ରତିଗୃହ୍ୟତାମ୍ ।।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ସ୍ନାନୀୟଂ ବୌଷଟ୍ । ଅନ୍ୟ ସବୁ ପୂର୍ବପରି ।

ବସ୍ତ୍ରମ୍ - ବସ୍ତ୍ରଂ ପ୍ରଶସ୍ତଂ ରମ୍ୟଂ ତେ ନାନାଚିତ୍ରବିଚିତ୍ରକଂ ।
ପଟ୍ଟସୂତ୍ରାଦି ରଚିତଂ ଗୃହାଣ ପରମେଶ୍ୱରୀ ।।
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ବସ୍ତ୍ରଯୁଗ୍ମଂ ନମଃ । ଅନ୍ୟ ସବୁ ପୂର୍ବପରି ।

ସିନ୍ଦୂରମ୍ - ସିନ୍ଦୂରଂ ବରସଂଭାଲେ ଶୋଭାନାଂ ଚ ବିବର୍ଦ୍ଧନଂ ।
ଭୂଷଣାନାଂ ଚ ସୂରଣଂ ସିନ୍ଦୂରଂ ପ୍ରତିଗୃହ୍ୟତାମ୍ ॥
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ସିନ୍ଦୂରଂ ନମଃ । ଅନ୍ୟ ସବୁ ପୂର୍ବପରି ।

ଆଭରଣମ୍ -
ତତୋ ଯୁକ୍ତାନି ରତ୍ନାନି ବହ୍ନିବିଦ୍ୟୁତ୍ପ୍ରଭାନି ଚ ।
ଭୂଷଣାନି ବିଚିତ୍ରାଣି ଗୃହାଣ ପରମେଶ୍ୱରୀ ॥
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଆଭରଣଂ ନମଃ । ଅନ୍ୟ ସବୁ ପୂର୍ବପରି ।

ଗନ୍ଧଃ - ନାନାଗନ୍ଧଶୁଭଂ ଦିବ୍ୟଂ ଶୀତଳଂ ସୁମନୋହରଂ ।
ମୟା ନିବେଦିତଂ ଭକ୍ତ୍ୟା ଗୃହାଣ ପରମେଶ୍ୱରୀ ॥
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଗନ୍ଧୋ ନମଃ । ଅନ୍ୟ ସବୁ ପୂର୍ବପରି ।

ପୁଷ୍ପମ୍ - ବନସ୍ପତିସମୁତ୍ପନ୍ନଂ ଗନ୍ଧାଢ୍ୟଂ ସୁମନୋହରଂ ।
ମୟା ନିବେଦିତଂ ପୁଷ୍ପଂ ଗୃହାଣ ପରମେଶ୍ୱରୀ ॥
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ପୁଷ୍ପାଣି ବୌଷଟ୍ । ଅନ୍ୟ ସବୁ ପୂର୍ବପରି ।

ଆବରଣପୂଜା -
ପୀଠପଦ୍ମକେଶରର ଆଗ୍ନେୟାଦିକ୍ରମରେ -
ଓଁ ଶ୍ରାଂ ହୃଦୟାୟ ନମଃ । ଓଁ ଶ୍ରୀଂ ଶିରସେ ସ୍ୱାହା ।
ଓଁ ଶ୍ରୂଂ ଶିଖାୟୈ ବଷଟ୍ । ଓଁ ଶ୍ରୈଂ କବଚାୟ ହୂମ୍ ।
ଓଁ ଶ୍ରୌଂ ନେତ୍ରାଭ୍ୟାଂ ବୌଷଟ୍ । ଓଁ ଶ୍ରୌଂ ଅସ୍ତ୍ରାୟ ଫଟ୍ ।

ପଦ୍ମଦଳମାନଙ୍କରେ ପୂର୍ବାଦିକ୍ରମରେ -
ଓଁ ଶଙ୍ଖନିଧୟେ ନମଃ । ଓଁ ପଦ୍ମଧାରିଣ୍ୟୈ ନମଃ ।
ଓଁ ବସୁଧାରାୟୈ ନମଃ । ଓଁ ରକ୍ତପଦ୍ମୋତ୍ପଲଧାରିଣ୍ୟୈ ନମଃ ।
ଓଁ ପଦ୍ମନିଧୟେ ନମଃ । ଓଁ ବସୁମତ୍ୟୈ ନମଃ ।
ଓଁ ବଲାକାୟୈ ନମଃ । ଓଁ ବିମଳାୟୈ ନମଃ ।
ଓଁ ନବମାଳିକାୟୈ ନମଃ । ଓଁ ବିଭୀଷିକାୟୈ ନମଃ ।

ଓଁ ମାଳିକାୟୈ ନମଃ । ଓଁ ଶାର୍ଙ୍ଗେୈ ନମଃ ।
ଓଁ ବସୁମାଳିକାୟୈ ନମଃ । ଓଁ କମଳାୟୈ ନମଃ ।

ପଦ୍ମଦଳମାନଙ୍କର ମୂଳରେ ପୂର୍ବାଦିକ୍ରମରେ -

ଓଁ ବଜ୍ରାୟ ନମଃ । ଓଁ ଶକ୍ତୟେ ନମଃ ।
ଓଁ ପାଶାୟ ନମଃ । ଓଁ ଅଙ୍କୁଶାୟ ନମଃ ।
ଓଁ ଦଣ୍ଡାୟ ନମଃ । ଓଁ ଗଦାୟୈ ନମଃ ।
ଓଁ ତ୍ରିଶୂଳାୟ ନମଃ । ଓଁ ପଦ୍ମାୟ ନମଃ ।

ତତ୍ରୈବ - ଓଁ ଧ୍ରୁବାୟ ନମଃ । ଓଁ ଧରାୟ ନମଃ ।
ଓଁ ସୋମାୟ ନମଃ । ଓଁ ଅଦ୍‌ଭ୍ୟୋ ନମଃ ।
ଓଁ ଅନିଳାୟ ନମଃ । ଓଁ ଅଗ୍ନୟେ ନମଃ ।
ଓଁ ପ୍ରତ୍ୟୂଷାୟ ନମଃ । ଓଁ ପ୍ରଦୋଷାୟ ନମଃ ।

ଦଶଦିଗରେ -

ଓଁ ଇନ୍ଦ୍ରାୟ ନମଃ । ଓଁ ଅଗ୍ନୟେ ନମଃ ।
ଓଁ ଯମାୟ ନମଃ । ଓଁ ନୈରତାୟ ନମଃ ।
ଓଁ ବରୁଣାୟ ନମଃ । ଓଁ ବାୟବେ ନମଃ ।
ଓଁ କୁବେରାୟ ନମଃ । ଓଁ ଈଶାନାୟ ନମଃ ।
ଓଁ ବ୍ରହ୍ମଣେ ନମଃ । ଓଁ ଅନନ୍ତାୟ ନମଃ ।

ଏହାପରେ ଅସ୍ତ୍ରମନ୍ତ୍ରରେ (ଅସ୍ତ୍ରାୟ ଫଟ୍) ଘଣ୍ଟା ସଂସ୍କାର କରି ଧୂପ ପ୍ରଦାନ କରିବ ।

**ଧୂପମନ୍ତ୍ରଃ** ଯଥା -

ବନସ୍ପତିରସୋ ଦିବ୍ୟୋ ଗନ୍ଧାଢ୍ୟଃ ସୁମନୋହରଃ ।
ମୟା ନିବେଦିତୋ ଭକ୍ତ୍ୟା ଧୂପୋଽୟଂ ପ୍ରତିଗୃହ୍ୟତାମ୍ ॥
ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଧୂପଃ ସ୍ୱାହା । ଅନ୍ୟତ୍ ପୂର୍ବବତ୍ ।

**ଦୀପପ୍ରଦାନମନ୍ତ୍ରଃ -**

**ଓଁ ଯଦ୍‌ଭାସା ଭାସ୍ୱତେ ବିଶ୍ୱଂ ଜଡତେଜତମୋମୟୀଂ ।**
**ତସ୍ମୈ ଦୀପ୍ତାତ୍ମନେ ତୁଭ୍ୟଂ ଦୀପମେତଂ ଦଦାମ୍ୟହମ୍ ।।**
**ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଦୀପଃ ସ୍ୱାହା ।** ଅନ୍ୟତ୍ ପୂର୍ବବତ୍ ।

**ନୈବେଦ୍ୟସଂସ୍କାରଃ -**

ଏହାପରେ ନୈବେଦ୍ୟସମ୍ଭାରକୁ ଦେବତାଙ୍କ ସମ୍ମୁଖରେ ସ୍ଥାପନ କରି ସଂସ୍କାର କରିବ । ନୈବେଦ୍ୟକୁ ମୂଳମନ୍ତ୍ରରେ ବୀକ୍ଷଣ କରି (ଭଲଭାବରେ ନିରୀକ୍ଷଣ କରି), ଅସ୍ତ୍ରାୟ ଫଟ୍ ଏହି ମନ୍ତ୍ରରେ ପ୍ରୋକ୍ଷଣ କରି, ଚକ୍ରମୁଦ୍ରା, ଅବଗୁଣ୍ଠନମୁଦ୍ରା, ଧେନୁମୁଦ୍ରା, ଅମୃତୀକରଣମୁଦ୍ରା, ମହାମୁଦ୍ରା, ପରମୀକରଣମୁଦ୍ରା ପ୍ରଦର୍ଶନ କରିବ । ଏହାପରେ ଷଡୁତ୍ଥାନପୂଜା କରିବେ ।

**ଷଡୁତ୍ଥାନପୂଜା -**

**ଓଁ ଧର୍ମାୟ ନମଃ । ଓଁ ଜ୍ଞାନାୟ ନମଃ ।**
**ଓଁ ବୈରାଗ୍ୟାୟ ନମଃ । ଓଁ ଐଶ୍ୱର୍ଯ୍ୟାୟ ନମଃ ।**
**ଓଁ ବ୍ରହ୍ମଣେ ନମଃ । ଓଁ ମହାଲକ୍ଷ୍ମ୍ୟୈ ନମଃ ।** ଇତି ।

ଏହାପରେ ପୁଣି ନୈବେଦ୍ୟପାତ୍ରକୁ ସ୍ପର୍ଶ କରି ଆଠ ଥର ମୂଳମନ୍ତ୍ର ଜପ କରିବ । ଦେବୀଙ୍କୁ ପୁଷ୍ପାଞ୍ଜଳି ଦେଇ ଦେବୀଙ୍କ ମୁଖରୁ ତେଜଃ ନିର୍ଗତ ହେଲାପରି ମନେକରି କିଛି ପୁଷ୍ପ ନୈବେଦ୍ୟ ଉପରେ ନିକ୍ଷେପ କରିବ । ତାପରେ ନିମ୍ନ ମନ୍ତ୍ର ପାଠ କରିବ । ମନ୍ତ୍ର ଯଥା -

**ଜୁଷାଣ ଦେବି ନୈବେଦ୍ୟଂ ନାନାସ୍ୱାଦୁରସୈର୍ଯୁତମ୍ ।**
**ସାପୂପବ୍ୟଞ୍ଜନସର୍ପିଃସିତାଦୁଗ୍ଧସମନ୍ୱିତମ୍ ।।**

ଏହାପରେ ମୂଳମନ୍ତ୍ର ତିନିଥର ଉଚ୍ଚାରଣ କରି **"ଓଁ ଶ୍ରୀଂ ମହାଲକ୍ଷ୍ମ୍ୟୈ ଏତନ୍ନୈବେଦ୍ୟଂ ସ୍ୱାହା"** ଏହା କହି ଆଚମନୀୟ ଜଳଦାନ କରିବ ଓ

ପଚାଶଥର ପ୍ରଣବ (ଓଁ) ଜପ କରିବ । ତାପରେ ସୁବାସିତ ଜଳ ଆଚମନୀୟ ରୂପରେ ଦାନ କରି ମୁଖବାସ ପ୍ରଦର୍ଶନ କରିବ । ତାପରେ ତାମ୍ବୂଳଦାନ କରିବ ।

**ତାମ୍ବୂଳମନ୍ତ୍ରଃ -**

ଅନୁରାଗଧରଂ ଚେତୋ ରଞ୍ଜିତଂ ଚାମରଂ ବହିଃ ।
ଦିବ୍ୟଂ ସର୍ବଗୁଣୋପେତଂ ତାମ୍ବୂଳଂ ପ୍ରତିଗୃହ୍ୟତାମ୍ ।।
ଓଁ ଶ୍ରୀ ମହାଲକ୍ଷ୍ମ୍ୟୈ ତାମ୍ବୂଳଂ ସମର୍ପୟାମି ।

**ଦୂର୍ବାକ୍ଷତମନ୍ତ୍ରଃ -**

ଅଖଣ୍ଡତଣ୍ଡୁଲୋପେତାନ୍ ଦୂର୍ବାକାଣ୍ଡାନିମାନ୍ ଦଶ ।
ମଙ୍ଗଳେ ମଙ୍ଗଳାବାପ୍ତିହେତୂନ୍ ତୁଭ୍ୟଂ ଦଦାମ୍ୟହମ୍ ।।
ଏତାନି ଦୂର୍ବାକ୍ଷତାନି ଓଁ ଶ୍ରୀମହାଲକ୍ଷ୍ମ୍ୟୈ ବୌଷଟ୍ ।

**ଆରତ୍ରିକମନ୍ତ୍ରଃ -**

କର୍ପୂରବର୍ତ୍ତିଭିର୍ଦୀପ୍ତୈଃ ମୁଖନିରାଜନଂ ତବ ।
କଳ୍ପୟାନି ସୁରେଶାନି ଗୃହାଣାରାତ୍ରିକଂ ଶ୍ରିୟେ ।।
ଓଁ ଶ୍ରୀ ମହାଲକ୍ଷ୍ମ୍ୟୈ ଆରତ୍ରିକଂ ନମଃ । ଅନ୍ୟତ୍ ପୂର୍ବବତ୍ ।

**ପୁଷ୍ପାଞ୍ଜଳିମନ୍ତ୍ରଃ -**

ନମସ୍ତେ ସର୍ବଦେବାନାଂ ବରଦାଽସି ହରିପ୍ରିୟେ ।
ମଙ୍ଗଳେ ମଙ୍ଗଳାବାପ୍ତିହେତୂନ୍ ତୁଭ୍ୟଂ ଦଦାମ୍ୟହମ୍ ।।

ଏହିପରି ଭାବରେ ତିନିଥର ପୁଷ୍ପାଞ୍ଜଳି ଦେବ ।

**ନମସ୍କାରମନ୍ତ୍ରଃ -**

ଓଁ କ୍ଷୀରୋଦାର୍ଣ୍ଣବସଂଭୂତେ ବିଷ୍ଣୋରୁରସି ସଂସ୍ଥିତେ ।
ଗୃହାଣ ପୂଜାଂ ଦେବେଶି କୌମୁଦ୍ୟାଂ ଚ ନମୋଽସ୍ତୁ ତେ ।।
ବିଶ୍ୱରୂପସ୍ୟ ଭାର୍ଯ୍ୟାସି ପଦ୍ମେ ପଦ୍ମାଳୟେ ଶୁଭେ ।
ମହାଲକ୍ଷ୍ମୀ ନମସ୍ତୁଭ୍ୟଂ କୌମୁଦୀଞ୍ଚ କୁରୁଷ୍ୱ ମେ ।।

ନମସ୍ତେ ସର୍ବଦେବାନାଂ ବରଦାଽସି ହରିପ୍ରିୟେ ।
ଯା ଗତିସ୍ତ୍ୱତ୍ପ୍ରସନ୍ନାନାଂ ସା ମେ ଭୂୟାତ୍ତ୍ୱଦର୍ଶନାତ୍ ॥
ଲକ୍ଷ୍ମୀଦେବୀ ନମସ୍ତୁଭ୍ୟମଚଳା ଭବ ସର୍ବଦା ।
କମଳେ ବରଦେ ଦେବି କୁଳଂ ଦ୍ୟୋତୟ ତ୍ୱଂ ମମ ॥
ହିତାୟ ସର୍ବଭୂତାନାଂ ଯଥା ନାରାୟଣେ ସ୍ଥିତା ।
ତଥା ତ୍ୱଂ ପାହି ମାଂ ଦେବି ସର୍ବଲକ୍ଷଣସମ୍ଭବେ ॥
କୃତା ପୂଜା ମୟା ଭକ୍ତ୍ୟା କମଳେ ବରଦେ ଶୁଭେ ।
ପୂଜାଂ ଗୃହାଣ ଦେବେଶି ନମସ୍ତେ କମଳାଳୟେ ॥
ମନ୍ତ୍ରହୀନଂ କ୍ରିୟାହୀନଂ ଭକ୍ତିହୀନାର୍ଥବର୍ଜ୍ଜିତଂ ।
ଯତ୍ପୂଜିତଂ ମୟା ଦେବି ପରିପୂର୍ଣ୍ଣଂ ତଦସ୍ତୁ ମେ ॥

॥ ଇତି ଶ୍ରୀ ଲକ୍ଷ୍ମୀପୂଜା ସମାପ୍ତା ॥

# ଶ୍ରୀସରସ୍ୱତୀପୂଜା

ପୂଜକ ନିତ୍ୟକର୍ମାନ୍ତେ ଆସନଶୁଦ୍ଧି, ଭୂତଶୁଦ୍ଧି, ପ୍ରଣବ (ପ୍ରାଣାୟାମ) ନ୍ୟାସ, ମାତୃକାନ୍ୟାସ କରିସାରି ତାପରେ ପୀଠ ପୂଜା କରିବେ । ନିର୍ଦ୍ଦିଷ୍ଟ ଦିନରେ ସରସ୍ୱତୀ ପୂଜା କରୁଥିଲେ ସଂକଳ୍ପ କରିସାରି ଉପର୍ଯ୍ୟୁକ୍ତ କର୍ମମାନ ଅନୁଷ୍ଠାନ କରିବା ଉଚିତ ।

**ପୀଠପୂଜା -**

ହୃଦୟେ -ଓଁ ଆଧାରଶକ୍ତୟେ ନମଃ । ଓଁ ପ୍ରକୃତ୍ୟୈ ନମଃ ।
ଓଁ କୂର୍ମାୟ ନମଃ । ଓଁ ଅନନ୍ତାୟ ନମଃ ।
ଓଁ ପୃଥିବ୍ୟୈ ନମଃ । ଓଁ କ୍ଷୀରସମୁଦ୍ରାୟ ନମଃ ।

ଓଁ ଶ୍ୱେତଦ୍ୱୀପାୟ ନମଃ । ଓଁ ମଣିମଣ୍ଡପାୟ ନମଃ ।
ଓଁ କଳ୍ପବୃକ୍ଷାୟ ନମଃ । ଓଁ ମଣିବେଦିକାୟୈ ନମଃ ।
ଓଁ ରତ୍ନସିଂହାସନାୟ ନମଃ ।

ଦକ୍ଷିଣସ୍କନ୍ଧେ - ଓଁ ଧର୍ମାୟ ନମଃ । ବାମସ୍କନ୍ଧେ ଓଁ ଜ୍ଞାନାୟ ନମଃ ।
ବାମଉରୌ - ଓଁ ବୈରାଗ୍ୟାୟ ନମଃ । ଦକ୍ଷିଣୋରୌ - ଓଁ ଐଶ୍ୱର୍ଯ୍ୟାୟ ନମଃ ।
ମୁଖେ - ଓଁ ଅଧର୍ମାୟ ନମଃ । ବାମପାର୍ଶ୍ୱେ - ଓଁ ଅଜ୍ଞାନାୟ ନମଃ ।
ଦକ୍ଷିଣପାର୍ଶ୍ୱେ - ଓଁ ଅବୈରାଗ୍ୟାୟ ନମଃ । ଓଁ ଅନୈଶ୍ୱର୍ଯ୍ୟାୟ ନମଃ ।
ହୃଦୟରେ -

ଓଁ ଅନନ୍ତାୟ ନମଃ । ଓଁ ପଦ୍ମାୟ ନମଃ ।
ଅଂ ସୂର୍ଯ୍ୟମଣ୍ଡଳାୟ ଦ୍ୱାଦଶକଳାତ୍ମନେ ନମଃ ।
ଉଂ ସୋମମଣ୍ଡଳାୟ ଷୋଡ଼ଶକଳାତ୍ମନେ ନମଃ ।
ମଂ ବହ୍ନିମଣ୍ଡଳାୟ ଦଶକଳାତ୍ମନେ ନମଃ ।
ସଂ ସତ୍ତ୍ୱାୟ ନମଃ । ରଂ ରଜସେ ନମଃ ।
ତଂ ତମସେ ନମଃ । ଆଂ ଆତ୍ମନେ ନମଃ ।
ଅଂ ଅନ୍ତରାତ୍ମନେ ନମଃ । ପଂ ପରମାତ୍ମନେ ନମଃ ।
ହ୍ରୀଂ ଜ୍ଞାନାତ୍ମନେ ନମଃ ।

ଅଷ୍ଟଦଳପଦ୍ମର କେଶରମଧ୍ୟରେ ପୂର୍ବାଦିକ୍ରମରେ -

ଓଁ ମେଧାୟୈ ନମଃ । ଓଁ ପ୍ରଜ୍ଞାୟୈ ନମଃ ।
ଓଁ ପ୍ରଭାୟୈ ନମଃ । ଓଁ ବିଦ୍ୟାୟୈ ନମଃ ।
ଓଁ ଧୃତ୍ୟୈ ନମଃ । ଓଁ ଶ୍ରଦ୍ଧାୟୈ ନମଃ ।
ଓଁ ବୁଦ୍ଧ୍ୟୈ ନମଃ । ଓଁ ବିଦ୍ୟାୟୈ ନମଃ ।

ମଧ୍ୟରେ - ଓଁ ପଦ୍ମାସନାୟ ନମଃ ।

ଇତି ପୀଠପୂଜା

ଏହାପରେ ମୂଳମନ୍ତ୍ରନ୍ୟାସ (ପୃ ୧୨୬ ଦ୍ରଷ୍ଟବ୍ୟ) କରି ପ୍ରାଣପ୍ରତିଷ୍ଠା କରିବ ।

**ପ୍ରାଣପ୍ରତିଷ୍ଠା -**

ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୋଂ ହଂ ସଃ
ଶ୍ରୀସରସ୍ୱତ୍ୟାଃ ପ୍ରାଣାଃ ଇହ ପ୍ରାଣାଃ ।
ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୋଂ ହଂ ସଃ
ଶ୍ରୀସରସ୍ୱତ୍ୟାଃ ଜୀବ ଇହସ୍ଥିତଃ ।
ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୋଂ ହଂ ସଃ
ଶ୍ରୀସରସ୍ୱତ୍ୟାଃ ସର୍ବେନ୍ଦ୍ରିୟାଣି ।
ଓଁ ଆଂ ହ୍ରୀଂ କ୍ରୋଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହୋଂ ହଂ ସଃ

ଶ୍ରୀସରସ୍ୱତ୍ୟାଃ ବାଙ୍‌ମନଃ ଚକ୍ଷୁଶ୍ରୋତ୍ରଘ୍ରାଣପ୍ରାଣାଃ ଇହାଗତ୍ୟ ଚିରଂ ତିଷ୍ଠନ୍ତୁ ସ୍ୱାହା । ଓଁ ମନୋର୍ଜୂତିର୍ଜୁଷତାମାଜ୍ୟସ୍ୟ ବୃହସ୍ପତିର୍ଯଜ୍ଞମିମଂ ତନୋତୁ । ଅରିଷ୍ଟ ଯଜ୍ଞଂସମିମଂ ଦଧାତୁ । ବିଶ୍ୱେଦେବାଃ ସ ଇହ ମାଦୟନ୍ତାମୋଂ ପ୍ରତିଷ୍ଠ । ଓଁ ଅସ୍ୟୈ ପ୍ରାଣାଃ ପ୍ରତିଷ୍ଠନ୍ତୁ ଅସ୍ୟୈ ପ୍ରାଣାଃ କ୍ଷରନ୍ତୁ ଚ । ଅସ୍ୟୈ ଦେବତ୍ୱସଂଖ୍ୟାୟୈ ସ୍ୱାହା । ଇତି ପ୍ରାଣପ୍ରତିଷ୍ଠା ।

*ଧ୍ୟାନମ୍ -* ଓଁ ତରୁଣସକଳମିନ୍ଦୋର୍ବିଭ୍ରତୀଶୁଭ୍ରକାନ୍ତିଃ
କୁଚଭରନମିତାଙ୍ଗୀ ସନ୍ନିଷଣ୍ଣାସିତାବ୍‌ଜେ ।
ନିଜକରକମଳୋଦ୍ୟଲ୍ଲେଖନୀପୁସ୍ତକଶ୍ରୀଃ
ସକଳବିଭବସିଦ୍ଧ୍ୟୈ ପାତୁ ବାଗ୍‌ଦେବତା ନଃ ॥

ଶ୍ରୀଭଗବତୀ ସରସ୍ୱତୀଦେବୀ ଇହାଗଚ୍ଛ, ଇହ ତିଷ୍ଠ, ସନ୍ନିହିତା ଭବ, ଅତ୍ରାଧିଷ୍ଠାନଂ କୁରୁ, ମମ ପୂଜାଂ ଗୃହାଣ ।

ଓଁ ଦେବେଶି ଭକ୍ତସୁଲଭେ ପରିବାରସମନ୍ୱିତେ ।
ଯାବତ୍ତ୍ୱାଂ ପୂଜୟିଷ୍ୟାମି ତାବତ୍ତ୍ୱଂ ସୁସ୍ଥିରା ଭବ ॥

ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ଶ୍ରୀସରସ୍ୱତୀମାବାହୟାମି ।
ଆବାହନାର୍ଥେ ପୁଷ୍ପାଞ୍ଜଳିଂ ସମର୍ପୟାମି ।

ଆସନମନ୍ତ୍ରଃ-ଅନେକରତ୍ନସଂଯୁକ୍ତଂ ନାନାମଣିଗଣାନ୍ୱିତମ୍ ।
ଇଦଂ ହେମମୟଂ ଦିବ୍ୟମାସନଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ଆସନାର୍ଥେ ପୁଷ୍ପାଣି ସମର୍ପୟାମି ।

ପାଦ୍ୟମନ୍ତ୍ରଃ-ପାଦ୍ୟଂ ଗୃହାଣ ଦେବେଶି ଶୀତଳଂ ସୁମନୋହରଂ ।
ଅର୍ପିତଂ ପରୟା ଭକ୍ତ୍ୟା ଜଗଦାନନ୍ଦକାରିଣି ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ପାଦୟୋଃ ପାଦ୍ୟଂ ସମର୍ପୟାମି ।

ଅର୍ଘ୍ୟମନ୍ତ୍ରଃ- ଅର୍ଘ୍ୟଂ ଗୃହାଣ ଦେବେଶି ଗନ୍ଧପୁଷ୍ପାକ୍ଷତୈର୍ଯୁତଂ ।
ଅର୍ପିତଂ ତବ ପ୍ରୀତ୍ୟର୍ଥଂ ପ୍ରସୀଦ ପରମେଶ୍ୱରି ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ହସ୍ତୟୋରର୍ଘ୍ୟଂ ସମର୍ପୟାମି ।

ଆଚମନମନ୍ତ୍ରଃ -
ନାନାତୀର୍ଥୋଦ୍‌ଭବଂ ବାରି କର୍ପୂରାଦ୍ୟୈଃ ସୁବାସିତଂ ।
ଗୃହାଣାଚମନୀୟ ତ୍ୱଂ ପ୍ରସନ୍ନା ଭବ ସର୍ବଦା ।
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ଆଚମନୀୟଂ ସମର୍ପୟାମି ।

ସ୍ନାନମନ୍ତ୍ରଃ -ନାନାତୀର୍ଥୋଦ୍‌ଭବଂ ବାରି କୁଙ୍କୁମାଦ୍ୟୈଃ ସୁଶୀତଳଂ ।
ତଦିଦଂ କଳ୍ପିତଂ ଦେବି ! ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ସ୍ନାନୀୟଂ ସମର୍ପୟାମି ।

ପଞ୍ଚାମୃତସ୍ନାନମନ୍ତ୍ରଃ -

ପୟୋ ଦଧି ଘୃତଂ ଚୈବ ମଧୁ ଚ ଶର୍କରାନ୍ୱିତମ୍ ।
ପଞ୍ଚାମୃତଂ ମୟାଽଽନୀତଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ପଞ୍ଚାମୃତସ୍ନାନଂ ସମର୍ପୟାମି ॥

ବସ୍ତ୍ରମନ୍ତ୍ରଃ - ବିଶୁଦ୍ଧେ ଶୋଭନେ କ୍ଷୌମେ ସୁସୂକ୍ଷ୍ମେ ଶାଟିକେ ଶୁଭେ ।
ମୟା ନିବେଦିତଂ ଦେବି ଗୃହାଣ ପରମେଶ୍ୱରି ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ସୋତ୍ତରୀୟାମିମାଂ ଶାଟିକାଂ ସମର୍ପୟାମି ।

ଆଭରଣମନ୍ତ୍ରଃ -

ନାନାରତ୍ନସମାକୀର୍ଣ୍ଣଂ ମାଲାଂ ସ୍ୱର୍ଣ୍ଣମୟୀଂ ତଥା ।
ମୁଦ୍ରିକାଂ ପାଦଭୂଷଣଂ ଗୃହାଣ ଜଗଦମ୍ବିକେ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ଆଭରଣମିଦଂ ସମର୍ପୟାମି ।

ସୌଭାଗ୍ୟସୂତ୍ରମନ୍ତ୍ରଃ -

ସୌଭାଗ୍ୟସୂତ୍ରଂ ବରଦେ ସୁବର୍ଣ୍ଣମଣିସଂଯୁତମ୍ ।
କଣ୍ଠେ ବଧ୍ନାମି ଦେବେଶି ସୌଭାଗ୍ୟଂ ଦେହି ମେ ସଦା ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ ।
ସୌଭାଗ୍ୟସୂତ୍ରଂ ସମର୍ପୟାମି ।

ଗନ୍ଧମନ୍ତ୍ରଃ - ଚନ୍ଦନଂ ଶୀତଳଂ ରମ୍ୟଂ ସୌରଭଂ ଦେବତାପ୍ରିୟଂ ।
ଶ୍ରଦ୍ଧୟା ଚାର୍ପିତଂ ଦେବି ଗୃହ୍ୟତାଂ ବରଦେ ଶୁଭେ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ । ଗନ୍ଧଂ ସମର୍ପୟାମି ।

**ସିନ୍ଦୁରଦାନମନ୍ତ୍ରଃ -**

ସିନ୍ଦୁରମରୁଣାଭାସଂ ଜପାକୁସୁମସନ୍ନିଭମ୍ ।
ଅର୍ପିତଂ ତେ ମୟା ଭକ୍ତ୍ୟା ପ୍ରସୀଦ ପରମେଶ୍ୱରି ॥
ଶ୍ରୀଭଗବତ୍ୟୈ ସ୍ୱରସ୍ୱତ୍ୟୈ ନମଃ । ସିନ୍ଦୂରଂ ସମର୍ପୟାମି ।

**ପୁଷ୍ପମନ୍ତ୍ରଃ** - ଜାତିଚମ୍ପକପୁଷ୍ପାଣି ନାନାଗନ୍ଧଯୁତାନି ଚ ।
ନିବେଦିତାନି ପରୟା ଗୃହାଣ ପରମେଶ୍ୱରି ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ । **ପୁଷ୍ପଂ ସମର୍ପୟାମି ।**

ଏହି ମନ୍ତ୍ରରେ ଶିରଃ, ମୁଖ, ହୃଦୟ ହସ୍ତ ଓ ଆୟୁଧ ପ୍ରଭୃତିରେ ପୁଷ୍ପଦାନ କରିବ ।

**ଆବରଣପୂଜା -**

ପୀଠପଦ୍ମକେଶରର ଆଗ୍ନେୟାଦିକ୍ରମରେ ପୂଜା କରିବ ।

ଅଗ୍ନିକୋଣେ - ଓଁ ଅଂ କଂ ଖଂ ଗଂ ଘଂ ଙଂ ଆଂ ହୃଦୟାୟ ନମଃ ।
ନୈରତକୋଣେ - ଓଁ ଇଂ ଚଂ ଛଂ ଜଂ ଝଂ ଞଂ ଈଂ ଶିରସେ ସ୍ୱାହା ।
ବାୟୁକୋଣେ - ଓଁ ଉଂ ଟଂ ଠଂ ଡ଼ଂ ଢ଼ଂ ଣଂ ଊଂ ଶିଖାୟୈ ବଷଟ୍ ।
ଈଶାନକୋଣେ - ଓଁ ଏଂ ତଂ ଥଂ ଦଂ ଧଂ ନଂ ଐଂ କବଚାୟ ହୁମ୍ ।
ମଧ୍ୟେ - ଓଁ ଓଂ ପଂ ଫଂ ବଂ ଭଂ ମଂ ଔଂ ନେତ୍ରତ୍ରୟାୟ ବୌଷଟ୍ ।
ସର୍ବଦିକ୍ଷୁ - ଓଁ ଅଂ ଯଂ ରଂ ଲଂ ବଂ ଶଂ ଷଂ ସଂ ହଂ କ୍ଷଂ ଅଃ ଅସ୍ତ୍ରାୟ ଫଟ୍ ।
ପୂର୍ବଦିଶି - ଓଁ ଗାୟତ୍ର୍ୟୈ ନମଃ । ଅଗ୍ନିକୋଣେ ଓଁ ସତ୍ୟାୟୈ ନମଃ ।
ଦକ୍ଷିଣେ - ଓଁ ବିମଳାୟୈ ନମଃ । ନୈରତେ - ଓଁ ଜ୍ଞାନାୟୈ ନମଃ ।
ପଶ୍ଚିମେ - ଓଁ ବୁଦ୍ଧ୍ୟୈ ନମଃ । ବାୟୁକୋଣେ - ଓଁ ସ୍ମୃତ୍ୟୈ ନମଃ ।
ଉତ୍ତରେ - ଓଁ ମେଧାୟୈ ନମଃ ।
ଈଶାନକୋଣରେ -ଓଁ ପ୍ରଜ୍ଞାୟୈ ନମଃ । ଇତି ।

ଧୂପମନ୍ତ୍ରଃ - ବନସ୍ପତିରସୋଦ୍‌ଭୂତୋ ଗନ୍ଧାଢ୍ୟୋ ଗନ୍ଧ ଉତ୍ତମଃ ।
ଆଘ୍ରେୟଃ ସର୍ବଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାମ୍ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ । ଧୂପଂ ସମର୍ପୟାମି ।

ଦୀପମନ୍ତ୍ରଃ- ସାଜ୍ୟଂ ଚ ବର୍ତ୍ତିସଂଯୁକ୍ତଂ ବହ୍ନିନା ଯୋଜିତଂ ମୟା ।
ଦୀପଂ ଗୃହାଣ ଦେବେଶି ତ୍ରୈଲୋକ୍ୟତିମିରାପହମ୍ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ନମଃ । ଦୀପଂ ସମର୍ପୟାମି ।
ଧୂପଦୀପାର୍ଥେ ଆଚମନୀୟଂ ସମର୍ପୟାମି ।

ନୈବେଦ୍ୟସଂସ୍କାରଃ -

ଏହାପରେ ନୈବେଦ୍ୟ ସମ୍ଭାରକୁ ଦେବୀଙ୍କ ସମ୍ମୁଖରେ ରଖି ତାହାର ସଂସ୍କାର କରିବ । ନୈବେଦ୍ୟକୁ ମୂଳମନ୍ତ୍ରରେ ବୀକ୍ଷଣ କରି (ଭଲଭାବରେ ନିରୀକ୍ଷଣ କରି) ''ଅସ୍ତ୍ରାୟ ଫଟ୍'' ଏହି ମନ୍ତ୍ରରେ ପ୍ରୋକ୍ଷଣ କରି ଚକ୍ରମୁଦ୍ରା, ଅବଗୁଣ୍ଠନମୁଦ୍ରା, ଧେନୁମୁଦ୍ରା, ଅମୃତୀକରଣମୁଦ୍ରା, ମହାମୁଦ୍ରା, ପରମୀକରଣମୁଦ୍ରା ପ୍ରଦର୍ଶନ କରିବ ।

ଏହାପରେ ନୈବେଦ୍ୟପାତ୍ରକୁ ସ୍ପର୍ଶ କରି ମୂଳମନ୍ତ୍ର ଆଠଥର ଜପ କରିବ । ଦେବୀଙ୍କୁ ପୁଷ୍ପାଞ୍ଜଳି ଦେଇ ଦେବୀଙ୍କ ମୁଖରୁ ତେଜଃ ନିର୍ଗତ ହେଲା ପରି ଚିନ୍ତା କରି କିଛି ପୁଷ୍ପ ନୈବେଦ୍ୟ ଉପରେ ନିକ୍ଷେପ କରିବ । ତାପରେ ନିମ୍ନ ମନ୍ତ୍ର ପାଠ କରିବ । ଯଥା -

ଜୁଷାଣ ଦେବି ନୈବେଦ୍ୟଂ ନାନାସ୍ୱାଦୁରସୈର୍ଯୁତମ୍ ।
ସାପୂପବ୍ୟଞ୍ଜନସର୍ପିଃସିତାଦୁଗ୍‌ଧସମନ୍ୱିତମ୍ ॥

ଏହାପରେ ମୂଳମନ୍ତ୍ର ତିନିଥର ଉଚ୍ଚାରଣ କରି ''ଓଁ ଶ୍ରୀସରସ୍ୱତ୍ୟୈ ଏତନ୍ନୈବେଦ୍ୟଂ ସ୍ୱାହା'' ଏହା କହି ଆଚମନୀୟ ଜଳଦାନ କରିବ ଓ ପଚାଶ ଥର ପ୍ରଣବ (ଓଁ) ଜପ କରିବ । ତାପରେ ସୁବାସିତ ଜଳ ଆଚମନୀୟରୂପରେ ଦାନ କରି ମୁଖବାସ ପ୍ରଦର୍ଶନ କରିବ ।

**ଦୂର୍ବାକ୍ଷତମନ୍ତ୍ରଃ -**

ଅଖଣ୍ଡତଣ୍ଡୁଲୋପେତାନ୍ ଦୂର୍ବାକାଣ୍ଡାନିମାନ୍ ଦଶ ।
ମଙ୍ଗଳେ ମଙ୍ଗଳାବାପ୍ତିହେତୂନ୍ ତୁଭ୍ୟଂ ଦଦାମ୍ୟହମ୍ ॥
ଏତାନି ଦୂର୍ବାକ୍ଷତାନି ଓଁ ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ବୌଷଟ୍ ।

**ଆରତ୍ରିକମନ୍ତ୍ରଃ -**

କର୍ପୂରବର୍ତ୍ତିଭିର୍ଦୀପ୍ତୈଃ ମୁଖନିରାଜନଂ ତବ ।
କଳ୍ପୟାମି ସୁରେଶାନି ଗୃହାଣାରାତ୍ରିକଂ ଶ୍ରିୟେ ॥
ଓଁ ଶ୍ରୀଂ ଭଗବତ୍ୟୈ ସରସ୍ୱତ୍ୟୈ ଆରତ୍ରିକଂ ସମର୍ପୟାମି ।

**ପୁଷ୍ପାଞ୍ଜଳିମନ୍ତ୍ରଃ -**

ନମସ୍ତେ ସର୍ବଦେବାନାଂ ବରଦାଽସି ଜନପ୍ରିୟେ ।
ମଙ୍ଗଳେ ମଙ୍ଗଳାବାପ୍ତିହେତୂନ୍ ତୁଭ୍ୟଂ ଦଦାମ୍ୟହମ୍ ॥
ଶ୍ରୀଭଗବତ୍ୟୈ ସରସ୍ୱତ୍ୟୈ ପୁଷ୍ପାଞ୍ଜଳିଂ ସମର୍ପୟାମି ।

ଏହିପରି ଭାବରେ ତିନିଥର ପୁଷ୍ପାଞ୍ଜଳି ଦେବ ।

**ନମସ୍କାରମନ୍ତ୍ରଃ -**

ଓଁ ସରସ୍ୱତୀଂ ଚ ତାଂ ନୌମି ବାଗଧିଷ୍ଠାତୃଦେବତାମ୍ ।
ଦେବତ୍ୱଂ ପ୍ରତିପଦ୍ୟନ୍ତେ ଯଦନୁଗ୍ରହତୋ ଜନାଃ ॥ ୧ ॥
ଶୁକ୍ଳାଂ ବ୍ରହ୍ମବିଚାରସାରପରମାମାଦ୍ୟାଂ ଜଗଦ୍ୱ୍ୟାପିନୀଂ
ବୀଣାପୁସ୍ତକଧାରିଣୀମଭୟଦାଂ ଜାଡ୍ୟାନ୍ଧକାରାପହାମ୍ ।
ହସ୍ତେ ସ୍ଫାଟିକମାଳିକାଂ ଚ ଦଧତୀଂ ପଦ୍ମାସନେ ସଂସ୍ଥିତାଂ
ବନ୍ଦେ ତାଂ ପରମେଶ୍ୱରୀଂ ଭଗବତୀଂ ବୁଦ୍ଧିପ୍ରଦାଂ ଶାରଦାମ୍ ॥ ୨ ॥
ବୀଣାଧରେ ବିପୁଳମଙ୍ଗଳଦାନଶୀଳେ
ଭକ୍ତାର୍ତ୍ତିନାଶିନି ବିରଞ୍ଚିହରୀଶବନ୍ଦ୍ୟେ ।
କୀର୍ତ୍ତିପ୍ରଦେଽଖିଳମନୋରଥଦେ ମହାର୍ହେ
ବିଦ୍ୟାପ୍ରଦାୟିନି ସରସ୍ୱତି ନୌମି ନିତ୍ୟମ୍ ॥ ୩ ॥

ସରସ୍ୱତ୍ୟୈ ନମୋ ନିତ୍ୟଂ ଭଦ୍ରକାଲ୍ୟୈ ନମୋ ନମଃ ।
ବେଦବେଦାନ୍ତବେଦାଙ୍ଗବିଦ୍ୟାସ୍ଥାନେଭ୍ୟ ଏବ ଚ ॥ ୪ ॥
ସରସ୍ୱତି ମହାଭାଗେ ବିଦ୍ୟେ କମଲଲୋଚନେ ।
ବିଦ୍ୟାରୂପେ ବିଶାଳାକ୍ଷି ବିଦ୍ୟାଂ ଦେହି ନମୋଽସ୍ତୁ ତେ ॥ ୫ ॥
ଯଦକ୍ଷରଂ ପଦଂ ଭ୍ରଷ୍ଟଂ ମାତ୍ରାହୀନଂ ଚ ଯଦ୍ ଭବେତ୍ ।
ତତ୍ସର୍ବଂ କ୍ଷମ୍ୟତାଂ ଦେବି ପ୍ରସୀଦ ପରମେଶ୍ୱରି ॥
॥ ଇତି ଶ୍ରୀ ସରସ୍ୱତୀପୂଜା ସମାପ୍ତା ॥

# ଶ୍ରୀଷଷ୍ଠୀଦେବୀପୂଜା

ପୂଜକ ଆସନଶୁଦ୍ଧି, ଭୂତଶୁଦ୍ଧି, ପ୍ରଣବ (ପ୍ରାଣାୟାମ) ନ୍ୟାସ, ମାତୃକାନ୍ୟାସ କରିସାରି ସରସ୍ୱତୀଙ୍କ ପୀଠପୂଜା ପରି ଏଠାରେ ମଧ ପୀଠପୂଜା କରିବେ ।

ଏହାପରେ ମୂଳମନ୍ତ୍ର ନ୍ୟାସ କରିବେ । (ମୂଳମନ୍ତ୍ର ପାଇଁ ପୃ.୧୨୬ ଦ୍ରଷ୍ଟବ୍ୟ)

ଏହାପରେ ପ୍ରାଣପ୍ରତିଷ୍ଠା କରିବେ ।

**ପ୍ରାଣପ୍ରତିଷ୍ଠା -**

ପ୍ରତିମା ହୃଦୟଦେଶରେ ଅଙ୍ଗୁଷ୍ଠ ରଖି ମୂଳମନ୍ତ୍ର ଆଠଥର ଜପ କରି

"ଓଁ ଅସ୍ୟାଃ ପ୍ରାଣାଃ ପ୍ରତିଷ୍ଠନ୍ତୁ ଅସ୍ୟାଃ ପ୍ରାଣାଃ କ୍ଷରନ୍ତୁ ଚ ।
ଅସ୍ୟୈ ଦେବତ୍ୱସଂଖ୍ୟାୟୈ ସ୍ୱାହାୟୈ ସ୍ୱାହା" ।

ଏହି ମନ୍ତ୍ର ପାଠ କରି ହାତରେ ପୁଷ୍ପାକ୍ଷତ ଧାରଣ କରି -

ଓଁ ଶ୍ରୀ ଷଷ୍ଠୀଦେବ୍ୟୈ ନମଃ । ଶ୍ରୀ ଷଷ୍ଠୀଦେବୀମାବାହୟାମି ।
ଶ୍ରୀ ଷଷ୍ଠୀଦେବୀ ଅତ୍ରାଗଚ୍ଛ । ଇହ ତିଷ୍ଠ ।
ଅତ୍ରାଧିଷ୍ଠାନଂ କୁରୁ । ମମ ପୂଜାଂ ଗୃହାଣ ।

ଓଁ ଏହ୍ୟେହି ଦେବି ପଦ୍ମାକ୍ଷି ଷଷ୍ଠି ଷଟ୍‌କୃତିକାଳୟେ ।
ଆଗଚ୍ଛ ବରଦେ ମାତଃ ପଶ୍ୟ ମାଂ ସୌମ୍ୟଚକ୍ଷୁଷା ॥

ଏହି ମନ୍ତ୍ରରେ ଆବାହନ କରିବ ।

ଏହାପରେ ଦେବୀଙ୍କ ହୃଦୟ ପ୍ରଦେଶକୁ ଅଙ୍ଗୁଷ୍ଠଦ୍ୱାରା ସ୍ପର୍ଶ କରି ପ୍ରାଣପ୍ରତିଷ୍ଠା କରିବ । ଯଥା-

ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ସୋଽହଂ ହଂ ସଃ ।
ଶ୍ରୀ ଷଷ୍ଠୀଦେବୀନାଂ ପ୍ରାଣାଃ ଇହ ପ୍ରାଣାଃ ।
ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ସୋଽହଂ ହଂସଃ
ଶ୍ରୀ ଷଷ୍ଠୀଦେବୀନାଂ ଜୀବଃ ଇହ ସ୍ଥିତଃ ।
ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ସୋଽହଂ ହଂସଃ
ଶ୍ରୀ ଷଷ୍ଠୀଦେବୀନାଂ ସର୍ବେନ୍ଦ୍ରିୟାଣି ଇହ ସ୍ଥିତାନି ।
ଓଁ ଆଂ ହ୍ରୀଂ କ୍ରୌଂ ଯଂ ରଂ ଳଂ ବଂ ଶଂ ଷଂ ସଂ ହଂ ଳଂ କ୍ଷଂ ସୋଽହଂ ହଂସଃ ।
ଷଷ୍ଠୀଦେବୀନାଂ ବାଙ୍‌ମନଃ ଚକ୍ଷୁଃ ଶ୍ରୋତ୍ର-ଘ୍ରାଣ-ଜିହ୍ୱା-ତ୍ୱକ୍-ପ୍ରାଣାଃ
ଇହାଗତ୍ୟ ସୁଖଂ ଚିରଂ ତିଷ୍ଠନ୍ତୁ ସ୍ୱାହା

ଇତି ପ୍ରାଣପ୍ରତିଷ୍ଠା ।

ଏହାପରେ ସମସ୍ତ ଉପଚାର ସରସ୍ୱତୀଙ୍କ ଉପଚାର ମନ୍ତ୍ରରେ ପ୍ରଦାନ କରିବ । କେବଳ "ଶ୍ରୀ ଭଗବତ୍ୟୈ ସରସ୍ୱତ୍ୟୈ" ସ୍ଥାନରେ 'ଶ୍ରୀ ଷଷ୍ଠୀଦେବ୍ୟୈ' ବୋଲି ପାଠ କରିବ ।

ଆବରଣ ପୂଜାସ୍ଥାନରେ ଷଷ୍ଠୀଦେବୀଙ୍କର ଆବରଣ ପୂଜା କରିବ । ଯଥା-

ଓଁ ହ୍ରାଂ ଶ୍ରାଂ ହୃଦୟାୟ ନମଃ, ହୃଦୟଂ ପୂଜୟାମି ।

(ଏହି ମନ୍ତ୍ର ପଢି ଦେବୀଙ୍କ ହୃଦୟପ୍ରଦେଶକୁ ପୁଷ୍ପଦ୍ୱାରା ସ୍ପର୍ଶ କରି ଫୁଲଟି ତଳେ ପକାଇଦେବ)

ଓଁ ହ୍ରୀଂ ଶ୍ରୀଂ ଶିରସେ ସ୍ୱାହା, ଶିରଃ ପୂଜୟାମି ।

(ଏହି ମନ୍ତ୍ର ପଢ଼ି ଦେବୀଙ୍କ ଶିରଃସ୍ଥାନକୁ ପୁଷ୍ପଦ୍ୱାରା ସ୍ପର୍ଶ କରି ଫୁଲଟି ତଳେ ପକାଇଦେବ)

ଓଁ ହ୍ରୂଂ ଶ୍ରୂଂ ଶିଖାୟୈ ବଷଟ୍,ଶିଖାଂ ପୂଜୟାମି ।

(ଏହି ମନ୍ତ୍ର ପଢ଼ି ଦେବୀଙ୍କ ଶିଖାପ୍ରଦେଶକୁ ପୁଷ୍ପଦ୍ୱାରା ସ୍ପର୍ଶ କରି ଫୁଲଟି ତଳେ ପକାଇଦେବ)

ଓଁ ହ୍ରୈଂ ଶ୍ରୈଂ କବଚାୟ ହୂମ୍, କବଚଂ ପୂଜୟାମି ।

(ଏହି ମନ୍ତ୍ର ପଢ଼ି ପୁଷ୍ପଦ୍ୱାରା ବାହୁଦ୍ୱୟ ମୂଳକୁ ସ୍ପର୍ଶ କରି ପୁଷ୍ପଟି ତଳେ ପକାଇଦେବ)

ଓଁ ହ୍ରୌଂ ଶ୍ରୌଂ ନେତ୍ରାଭ୍ୟାଂ ବୌଷଟ୍, ନେତ୍ରେ ପୂଜୟାମି ।

(ଏହି ମନ୍ତ୍ର ପଢ଼ି ଦେବୀଙ୍କ ନେତ୍ରଦ୍ୱୟକୁ ପୁଷ୍ପଦ୍ୱାରା ସ୍ପର୍ଶ କରି ପୁଷ୍ପଟି ତଳେ ପକାଇଦେବ ।)

ଓଁ ହ୍ରଂ ଶ୍ରଂ ଅସ୍ତ୍ରାୟ ଫଟ୍, ଅସ୍ତ୍ରଂ ପୂଜୟାମି ।

(ଏହି ମନ୍ତ୍ର ପଢ଼ି ଫୁଲଟିଏ ଦେବୀଙ୍କ ସର୍ବାଙ୍ଗରେ ବୁଲାଇ ତଳେ ପକାଇଦେବ ।)

ଇତି ଆବରଣପୂଜା ।

ଶେଷରେ ଧ୍ୟାନମନ୍ତ୍ରରେ ପ୍ରାର୍ଥନା କରିବ । ଇତି ଷଷ୍ଠୀପୂଜା ।।

# ସାମାନ୍ୟ ସର୍ବଦେବପୂଜାବିଧିଃ

**ଆବାହନମନ୍ତ୍ରଃ** - ଆଗଚ୍ଛ ଦେବଦେବେଶ ତେଜୋରାଶେ ଜଗତ୍‌ପତେ ।
କ୍ରିୟମାଣାଂ ମମ ପୂଜାଂ ଗୃହାଣ ସୁରସତ୍ତମ ।।
ଅମୁକଦେବମାବାହୟାମି ।

**ଆସନମନ୍ତ୍ରଃ** - ନାନାରତ୍ନସମାଯୁକ୍ତଂ କାର୍ତ୍ତସ୍ୱରବିଭୂଷିତମ୍ ।
ଆସନଂ ବହୁମୂଲ୍ୟଂ ଚ ପ୍ରୀତୟେ ପ୍ରତିଗୃହ୍ୟତାମ୍ ।।
ଅମୁକଦେବାୟ ଆସନଂ ସମର୍ପୟାମି ।

ପାଦ୍ୟମନ୍ତ୍ରଃ -ପାଦାର୍ଥମୁଦକଂ ଦିବ୍ୟଂ ନିର୍ମଳଂ ଚ ସୁଶୀତଳଂ ।
ଅର୍ପିତଂ ପରୟା ଭକ୍ତ୍ୟା ପ୍ରୀତୟେ ପ୍ରତିଗୃହ୍ୟତାମ୍ ।।
ଅମୁକଦେବାୟ ପାଦ୍ୟଂ ନମଃ ।

ଅର୍ଘ୍ୟମନ୍ତ୍ରଃ - ଅର୍ଘ୍ୟାର୍ଥମୁଦକଂ ଶୁଦ୍ଧଂ ପ୍ରଣବୈଃ ପୂରିତଂ ମୟା ।
ଗନ୍ଧପୁଷ୍ପାଦିସଂଯୁକ୍ତଂ ଗୃହ୍ୟତାମର୍ପିତଂ ବିଭୋ ।।
ଅମୁକଦେବାୟ ଇଦମର୍ଘ୍ୟଂ ସ୍ୱାହା ।

ଆଚମନମନ୍ତ୍ରଃ -
ନାନାତୀର୍ଥୋଦ୍‌ଭବଂ ବାରି ଗନ୍ଧାଢ୍ୟଂ ସୁମନୋହରଂ ।
ମୟା ନିବେଦିତଂ ଭକ୍ତ୍ୟା ଗୃହାଣ ପରମେଶ୍ୱର ।
ଅମୁକଦେବାୟ ଆଚମନୀୟଂ ସମର୍ପୟାମି ।

ସ୍ନାନମନ୍ତ୍ରଃ - ସର୍ବତୀର୍ଥୋଦ୍‌ଭବଂ ବାରି ଶୀତଳଂ ସୁମନୋହରଂ ।
ସ୍ନାନାର୍ଥଂ ତେ ମୟା ଦତ୍ତଂ କୁରୁ ସ୍ନାନଂ ମହାପ୍ରଭୋ ।।
ଅମୁକଦେବାୟ ସ୍ନାନୀୟଂ ସମର୍ପୟାମି ।

ପଞ୍ଚାମୃତସ୍ନାନମନ୍ତ୍ରଃ -
ପୟୋ ଦଧି ଘୃତଂ ଚୈବ ମଧୁ ଚ ଶର୍କରାନ୍ୱିତମ୍ ।
ପଞ୍ଚାମୃତଂ ମୟାଽଽନୀତଂ ସ୍ନାନାର୍ଥଂ ପ୍ରତିଗୃହ୍ୟତାମ୍ ।।
ଅମୁକଦେବାୟ ସ୍ନାନାର୍ଥଂ ପଞ୍ଚାମୃତଂ ସମର୍ପୟାମି ।
ସ୍ନାନାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

ବସ୍ତ୍ରମନ୍ତ୍ରଃ - ଶୁଦ୍ଧଂ ଶୁଭ୍ରମିଦଂ ବସ୍ତ୍ରଂ କୌଶେୟଂ କରୁଣାନିଧି ।
ଦଦାମି ପରିଧାନାର୍ଥଂ ଗୃହାଣ ତ୍ରିପୁରାନ୍ତକ ।।
ଅମୁକଦେବାୟ ବାସୋୟୁଗଂ ସମର୍ପୟାମି ।
ବସ୍ତ୍ରାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

**ଯଜ୍ଞୋପବୀତମନ୍ତ୍ରଃ -**

ଋଗ୍‌ଯଜୁଃସାମମନ୍ତ୍ରେଣ ବ୍ରହ୍ମଣା ନିର୍ମିତଂ ପୁରା ।
ସାବିତ୍ରୀଗ୍ରନ୍ଥିସଂଯୁକ୍ତଂ ଗୃହାଣ ପୁରୁଷୋତ୍ତମ ॥
ଅମୁକଦେବାୟ ଯଜ୍ଞୋପବୀତଂ ସମର୍ପୟାମି ।
ଯଜ୍ଞୋପବୀତାନ୍ତେ ଆଚମନୀୟଂ ଜଳଂ ସମର୍ପୟାମି ।

**ଆଭୂଷଣମନ୍ତ୍ରଃ -**

ଅଲଂକାରୋ ମୟା ଶୁଦ୍ଧସୁବର୍ଣ୍ଣେନ ସମନ୍ୱିତଃ ।
ମଣିରତ୍ନାଦିଜଡିତୋ ଭୂଷାର୍ଥଂ ପ୍ରତିଗୃହ୍ୟତାମ୍ ॥
ଅମୁକଦେବାୟ ଆଭୂଷଣଂ ସମର୍ପୟାମି ।

**ଗନ୍ଧମନ୍ତ୍ରଃ -** ଶ୍ରୀଖଣ୍ଡଚନ୍ଦନଂ ଦିବ୍ୟଂ ଗନ୍ଧାଢ୍ୟଂ ସୁମନୋହରଂ ।
ଲେପନାର୍ଥେ ମୟା ଦତ୍ତଂ ପ୍ରୀତୟେ ପ୍ରତିଗୃହ୍ୟତାମ୍ ॥
ଅମୁକଦେବାୟ ଗନ୍ଧଂ ସମର୍ପୟାମି ।

**ପୁଷ୍ପମନ୍ତ୍ରଃ -** ନାନାବିଧାନି ପୁଷ୍ପାଣି ନାନାଗନ୍ଧଯୁତାନି ଚ ।
ନାନାବର୍ଣ୍ଣାନ୍ୟାହୃତାନି ଶୋଭାର୍ଥଂ ପ୍ରତିଗୃହ୍ୟତାମ୍ ॥
ଅମୁକଦେବାୟ ପୁଷ୍ପଂ ସମର୍ପୟାମି ।

**ଧୂପମନ୍ତ୍ରଃ-** ବନସ୍ପତିରସୋ ଦିବ୍ୟୋ ଗନ୍ଧାଢ୍ୟଃ ସୁମନୋହରଃ ।
ଆଘ୍ରେୟଃ ସର୍ବଦେବାନାଂ ଧୂପୋଽୟଂ ପ୍ରତିଗୃହ୍ୟତାମ୍ ॥
ଅମୁକଦେବାୟ ଏଷ ଧୂପଃ ସ୍ୱାହା ।

**ଦୀପମନ୍ତ୍ରଃ -** ସୁପ୍ରକାଶୋ ମହାଦୀପଃ ତ୍ରୈଲୋକ୍ୟତିମିରାପହଃ ।
ସବାହ୍ୟାଭ୍ୟନ୍ତରଜ୍ୟୋତିର୍ଦୀପୋଽୟଂ ପ୍ରତିଗୃହ୍ୟତାମ୍ ॥
ଅମୁକଦେବାୟ ଏଷ ଦୀପଃ ସ୍ୱାହା ।

**ନୈବେଦ୍ୟମନ୍ତ୍ରଃ -**

ନୈବେଦ୍ୟସମ୍ଭାରକୁ ସଂସ୍କାରକରି ଦେବତାଙ୍କ ସମ୍ମୁଖରେ ରଖିବ । ନୈବେଦ୍ୟକୁ ମୂଳମନ୍ତ୍ରରେ ବୀକ୍ଷଣ କରି ଅସ୍ତ୍ରମନ୍ତ୍ରରେ (ଅସ୍ତ୍ରାୟ ଫଟ୍) ପ୍ରୋକ୍ଷଣ

କରି ଚକ୍ରମୁଦ୍ରା, ଅବଗୁଣ୍ଠନମୁଦ୍ରା, ଧେନୁମୁଦ୍ରା, ଅମୃତୀକରଣମୁଦ୍ରା, ମହାମୁଦ୍ରା ଓ ପରମୀକରଣମୁଦ୍ରା ପ୍ରଦର୍ଶନ କରିବ ।

ଏହାପରେ ନୈବେଦ୍ୟପାତ୍ରକୁ ସ୍ପର୍ଶ କରି **ମୂଳମନ୍ତ୍ର ଆଠଥର ଜପ କରିବ ।**

**ଶର୍କରାଖଣ୍ଡସଂଯୁକ୍ତଂ ଦଧିକ୍ଷୀରଘୃତାନ୍ୱିତଂ ।**
**ଲେହ୍ୟଂ ପେୟଂ ଭକ୍ଷ୍ୟଭୋଜ୍ୟଂ ନୈବେଦ୍ୟଂ ପ୍ରତିଗୃହ୍ୟତାମ୍ ॥**

ଏହି ମନ୍ତ୍ରରେ ନୈବେଦ୍ୟସମ୍ଭାରର ଚତୁଃପାର୍ଶ୍ୱରେ ହାତରେ ଜଳ ରଖି ବୁଲାଇ ଉତ୍ସର୍ଗ କରିବ । ତା ପରେ "ନୈବେଦ୍ୟାର୍ଥେ ଆଚମନୀୟଂ ସ୍ୱାହା" କହି ଆଚମନୀୟ ଜଳ ଓ "ଅମୃତୋପସ୍ତରଣମସି ସ୍ୱାହା" କହି ଆପୋଶାନ ଜଳ ପ୍ରଦାନ କରିବ । ଏହାପରେ ପଞ୍ଚଗ୍ରାସ ମୁଦ୍ରା ପ୍ରଦର୍ଶନ ପୂର୍ବକ ଓଁ ପ୍ରାଣାୟ ସ୍ୱାହା, ଓଁ ଅପାନାୟ ସ୍ୱାହା, ଓଁ ବ୍ୟାନାୟ ସ୍ୱାହା, ଓଁ ଉଦାନାୟ ସ୍ୱାହା, ଓଁ ସମାନାୟ ସ୍ୱାହା ଏହି ମନ୍ତ୍ର ପାଠ କରିବ । ଏହାପରେ ଦେବତାଙ୍କ ମୂଳମନ୍ତ୍ର ନ୍ୟୂନାତିନ୍ୟୂନ ୩ ଥର ଓ ପ୍ରଣବ (ଓଁ) ମନ୍ତ୍ର ୫୦ ଥର ଜପ କରିବ । ତାପରେ 'ଓଁ ଅମୃତାପିଧାନମସି ସ୍ୱାହା' କହି ଆଉ ଟିକିଏ ଜଳ ନୈବେଦ୍ୟ ନିକଟରେ ଦେବ ।

**ଆରତ୍ରିକମନ୍ତ୍ରଃ -**

**କର୍ପୂରପୂରେଣ ମନୋହରେଣ ସୁବର୍ଣ୍ଣପାତ୍ରୋଦରସଂସ୍ଥିତେନ ।**
**ପ୍ରଦୀପଭାସା ସହସାଗତେନ ନୀରାଜନଂ ତେ ପୁରତଶ୍ଚ କୁର୍ବେ ॥**
**ଅମୁକଦେବାୟ ଆରତ୍ରିକଂ ସମର୍ପୟାମି ।**

**ପୁଷ୍ପାଞ୍ଜଳିମନ୍ତ୍ରଃ -**

**ନାନା ସୁଗନ୍ଧିପୁଷ୍ପାଣି ଯଥା କାଳୋଦ୍ଭବାନି ଚ ।**
**ପୁଷ୍ପାଞ୍ଜଳିଂ ମୟା ଦତ୍ତଂ ଗୃହାଣ ପରମେଶ୍ୱର ॥**
**ଅମୁକଦେବାୟ ପୁଷ୍ପାଞ୍ଜଳିଂ ସମର୍ପୟାମି ।**

**ନମସ୍କାରମନ୍ତ୍ରଃ -**

**ନମୋ ଓଁକାରରୂପାୟ ବେଦରୂପାୟ ତେ ନମଃ ।**
**ଅବ୍ୟକ୍ତବ୍ୟକ୍ତରୂପାୟ ବିଶ୍ୱରୂପାୟ ତେ ନମଃ ॥**

ମନୋବାକ୍‌କାୟଦୁଷ୍ଟେନ ପୂଜିତଂ ପରମେଶ୍ୱର ।
ଯତ୍‌ପୂଜିତଂ ମୟା ଦେବ ପରିପୂର୍ଣ୍ଣଂ ତଦସ୍ତୁ ମେ ॥
ଆବାହନଂ ନ ଜାନାମି ନ ଜାନାମି ତବାର୍ଚ୍ଚନଂ ।
ପୂଜାଂ ଚୈବ ନ ଜାନାମି କ୍ଷମସ୍ୱ ପରମେଶ୍ୱର ॥ ଇତି ॥

## ଶ୍ରୀ ନୃସିଂହପୂଜା

ପୂଜକ ଶ୍ରୀ ନୃସିଂହଙ୍କ ପୂଜା ସକାଶେ ଆସନଶୁଦ୍ଧିଠାରୁ ଆରମ୍ଭ କରି ସାମାନ୍ୟାର୍ଘସଂସ୍କାର ପର୍ଯ୍ୟନ୍ତ କର୍ମ କରି ତାପରେ ପୂର୍ବୋକ୍ତ ସାମାନ୍ୟ ପୂଜାବିଧି ଅନୁସାରେ ଯଥୋପଚାରରେ ଶ୍ରୀ ନୃସିଂହଙ୍କ ନାମ ସଂଯୋଗ କରି ପୂଜା କରିବ । ମୂଳମନ୍ତ୍ର ସ୍ଥାନରେ ଶ୍ରୀନୃସିଂହଙ୍କ ମୂଳମନ୍ତ୍ର ପାଠ କରିବେ ।

## ଶ୍ରୀରାମପୂଜା

ପୂଜକ ସେହିପରି ଆସନଶୁଦ୍ଧିଠାରୁ ସାମାନ୍ୟାର୍ଘସଂସ୍କାର ପର୍ଯ୍ୟନ୍ତ କର୍ମ କରି ତାପରେ ପୂର୍ବୋକ୍ତ ସାମାନ୍ୟ ପୂଜାବିଧି ଅନୁସାରେ ଯଥୋପଚାରରେ ଶ୍ରୀରାମଚନ୍ଦ୍ରଙ୍କ ନାମ ସଂଯୋଗ କରି ପୂଜା କରିବେ । ମୂଳମନ୍ତ୍ର ସ୍ଥାନରେ ଶ୍ରୀରାମଚନ୍ଦ୍ରଙ୍କ ମୂଳମନ୍ତ୍ର ପାଠ କରିବେ ।

## ଶ୍ରୀକୃଷ୍ଣପୂଜା

ପୂଜକ ଆସନଶୁଦ୍ଧିଠାରୁ ସାମାନ୍ୟାର୍ଘ୍ୟସଂସ୍କାର କରି ସାରି ବିଷ୍ଣୁପୂଜୋକ୍ତ କେଶବାଦିନ୍ୟାସ ଅନୁଷ୍ଠାନ କରିବେ । ତାପରେ ବିଷ୍ଣୁଙ୍କ ପ୍ରତ୍ୟେକ ଉପଚାର କ୍ରମକୁ ଅନୁସରଣ କରି ନିର୍ଦ୍ଦିଷ୍ଟ ସ୍ଥାନରେ ବିଷ୍ଣୁଙ୍କ ସ୍ଥାନରେ କୃଷ୍ଣଙ୍କ ନାମ ଉଚ୍ଚାରଣ ସହିତ କୃଷ୍ଣଙ୍କ ମୂଳମନ୍ତ୍ର ପାଠ କରିବେ ।

# ଶ୍ରୀହନୁମତ୍‌ପୂଜା

ପୂଜକ ଆସନଶୁଦ୍ଧିଠାରୁ ମାତୃକନ୍ୟାସ ଓ ସାମାନ୍ୟାର୍ଘ୍ୟ ସଂସ୍କାର ପର୍ଯ୍ୟନ୍ତ କର୍ମ କରିସାରି ତାପରେ ପୂର୍ବୋକ୍ତ ସାମାନ୍ୟପୂଜାବିଧି ଅନୁସାରେ ଯଥୋପଚାରରେ "ଅମୁକଦେବାୟ" ସ୍ଥାନରେ ଶ୍ରୀ ମନ୍‌ହନୁମତେ ବୋଲି ଉଚ୍ଚାରଣ କରି ପୂଜା କରିବେ । ମୂଳମନ୍ତ୍ର ସ୍ଥାନରେ ଶ୍ରୀ ହନୁମାନଙ୍କ ମୂଳମନ୍ତ୍ର ପାଠ କରିବେ ।

## ସଂକଳ୍ପଃ

ଯଜମାନ ପୂର୍ବାଭିମୁଖ ହୋଇ ଆସନଶୁଦ୍ଧିପୂର୍ବକ ଆଚମନ କରିବେ । ଏହାପରେ ତିନୋଟି କୁଶ, ଚନ୍ଦନ, ଫୁଲ, ଗୁଆ, ଅରୁଆ ଚାଉଳ ତମ୍ବାପାତ୍ରୀରେ ରଖି ଅଙ୍କୁଶ ମୁଦ୍ରା ପ୍ରଦର୍ଶନ କରି ଗଙ୍ଗାଦି ତୀର୍ଥମାନଙ୍କୁ ଆବାହନ କରିବେ ।

**ଆବାହନମନ୍ତ୍ର ଯଥା -**

ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ ।
ଗଙ୍ଗେ ଚ ଯମୁନେ ଚୈବ ଗୋଦାବରି ସରସ୍ୱତି ।
ନର୍ମଦେ ସିନ୍ଧୁ କାବେରି ଜଲେଽସ୍ମିନ୍ ସନ୍ନିଧିଂ କୁରୁ ॥
କୁରୁକ୍ଷେତ୍ର-ଗୟା-ଗଙ୍ଗା-ପ୍ରଭାସ-ପୁଷ୍କରାଣି ଚ ।
ଏତାନି ପୁଣ୍ୟତୀର୍ଥାନି ଅମୁକକର୍ମ ସଂକଳ୍ପକାଳେ ଭବନ୍ତିହ ॥
ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ ।
ଶୁକ୍ଳାମ୍ବରଧରଂ ବିଷ୍ଣୁଂ ଶଶିବର୍ଣ୍ଣଂ ଚତୁର୍ଭୁଜଂ ।
ପ୍ରସନ୍ନବଦନଂ ଧ୍ୟାୟେତ୍ ସର୍ବବିଘ୍ନୋପଶାନ୍ତୟେ ॥
ସ୍ମୃତେଃ ସକଳକଲ୍ୟାଣଭାଜନଂ ଯତ୍ର ଜାୟତେ ।
ପୁରୁଷଂ ତମଜଂ ନିତ୍ୟଂ ବ୍ରଜାମି ଶରଣଂ ହରିମ୍ ॥

**ଶଙ୍ଖଚକ୍ରଗଦାପାଣେ, ଦ୍ୱାରକାନିଳୟାଚ୍ୟୁତ ।**
**ଗୋବିନ୍ଦ ପୁଣ୍ଡରୀକାକ୍ଷ ରକ୍ଷ ମାଂ ଶରଣାଗତମ୍ ॥**

ଏହାପରେ ତମ୍ବା ପାତ୍ରୀକୁ ବାମ ହାତରେ ରଖି ତାର ଉପରେ ଡାହାଣ ହାତ ଘୋଡାଇ ନିମ୍ନ ସଂକଳ୍ପବାକ୍ୟ ପାଠ କରିବେ ।

ଓଁ ବିଷ୍ଣୁର୍ବିଷ୍ଣୁର୍ବିଷ୍ଣୁଃ । ଅଦ୍ୟେହ ପୁଣ୍ୟେଽହନି ବିଶିଷ୍ଟଭୂପ୍ରଦେଶେ ଅମୁକେ ମାସି, ଅମୁକେ ପକ୍ଷେ, ଅମୁକତିଥୌ, ଅମୁକବାସରେ, ଅମୁକନାମଧେୟ-ନକ୍ଷତ୍ରେ, ଅମୁକରାଶୌ ସ୍ଥିତେ ଶ୍ରୀଭାସ୍କରେ ଅମୁକରାଶୌ ସ୍ଥିତେ ଶ୍ରୀଚନ୍ଦ୍ରମସି ଏବଂ ଯଥାସ୍ଥାନାବସ୍ଥିତେଷୁ ଭୌମାଦିଗ୍ରହଯୋଗଲଗ୍ନକରଣମୁହୂର୍ତ୍ତକାଂଶେଷୁ ଏବଂ ବିଧବିଶେଷଣବିଶିଷ୍ଟାୟାଂ ଶୁଭପୁଣ୍ୟତିଥୌ ଅମୁକସଗୋତ୍ରଃ ଶ୍ରୀମାନ୍ ଅମୁକଦେବଶର୍ମାଽହଂ ମମ ଅମୁକାଭୀଷ୍ଟସିଦ୍ଧୟେ ଅମୁକକର୍ମସଂକଳ୍ପମହଂ କୁର୍ବୀୟ ।

ଏହା ବୋଲି ଯଜମାନ ପାତ୍ରୀରୁ ଜଳ ତଳେ ପକାଇ ପାତ୍ରୀକୁ ଭୂମିରେ ଓଲଟାଇ ରଖି ତା ଉପରେ ଗୁଆ ରଖି "ଅସ୍ମିନ୍ ସଂକଳ୍ପିତେ କର୍ମଣି ସିଦ୍ଧିରସ୍ତୁ" ବୋଲି କହି ପାତ୍ରୀସ୍ଥିତ ଗୁଆ ଉପରେ ଚାଉଳ ପକାଇବ । ତାପରେ "ଶୁଭଂ ଭବତୁ, ଶୁଭଂ ଭବତୁ, ଶୁଭଂ ଭବତୁ" କହି ପାତ୍ରୀକୁ ଉଠାଇ ସ୍ୱାଭାବିକଭାବେ ରଖିବ । ଏହାପରେ ନମସ୍କାର ମୁଦ୍ରା ଦେଖାଇ ନିମ୍ନ ମନ୍ତ୍ର ପାଠ କରି ନମସ୍କାର କରିବ ।

ମନ୍ତ୍ର ଯଥା -

**ଓଁ ଯଜ୍ଜାଗ୍ରତୋ ଦୂରମୁଦୈତି ଦୈବଂ,**
**ତଦୁ ସୁପ୍ତସ୍ୟ ତଥୈବୈତି ।**
**ଦୂରଂଗମଂ ଜ୍ୟୋତିଷାଂ ଜ୍ୟୋତିରେକଂ,**
**ତନ୍ମେ ମନଃ ଶିବସଂକଳ୍ପମସ୍ତୁ ॥ ଇତି ॥**

# ବରୁଣପୂଜା

କର୍ତ୍ତା ବା ଯାଜକ (ପୁରୋହିତ) ପୂର୍ବାଭିମୁଖ ବା ଉତ୍ତରାଭିମୁଖ ହୋଇ ଶୁଦ୍ଧ ଆସନରେ ବସି ଆସନଶୁଦ୍ଧି କରି ସାମାନ୍ୟାର୍ଘସଂସ୍କାର କର୍ମ କରିବେ । ସାମାନ୍ୟାର୍ଘସଂସ୍କାର କର୍ମରେ ପ୍ରଥମରେ ଶଙ୍ଖକୁ ପ୍ରଣବମନ୍ତ୍ରରେ (ଓଁ କାରରେ) ପ୍ରକ୍ଷାଳନ କରି ଶଙ୍ଖାଧାର ଉପରେ ଶଂଖଟିକୁ ରଖିବେ । ପୁଣି ଶଙ୍ଖରେ ଜଳପୂରଣ ମଧ୍ୟ ପ୍ରଣବମନ୍ତ୍ରରେ କରିବେ । ପ୍ରଣବମନ୍ତ୍ରରେ ଶଙ୍ଖରେ ଗନ୍ଧ ଓ ପୁଷ୍ପ ପ୍ରଦାନ କରିବେ । ଶଙ୍ଖ ଉପରେ ଦକ୍ଷିଣ କରତଳ ସ୍ଥାପନ କରି ଆଠଥର ପ୍ରଣବମନ୍ତ୍ର ଜପ କରି ଧେନୁମୁଦ୍ରା ପ୍ରଦର୍ଶନ କରିବେ । ତାପରେ ହୃଦୟରେ ଦକ୍ଷିଣହସ୍ତ ରଖି ସାତଥର ପ୍ରଣବମନ୍ତ୍ର ଜପ କରିବେ । ଏହି କର୍ମମାନ ସାମାନ୍ୟାର୍ଘସଂସ୍କାରରେ କରାଯାଏ ।

ଏହାପରେ ବଟୁଧାରଣ କରିବେ । ବଟୁର ବିନିଯୋଗମନ୍ତ୍ର ଯଥା -

**ଓଁ ଅସ୍ୟ ଶ୍ରୀ ବଟୁକମନ୍ତ୍ରସ୍ୟ, ଭୈରବ ଋଷିଃ, ଉଷ୍ଣିକ୍ ଛନ୍ଦଃ,**
**ବଟୁର୍ଦ୍ଦେବତା, ମମ ବଟୁଗ୍ରହଣେ ବିନିଯୋଗଃ ॥**
**ଓଁ ଶ୍ରୀଂ ହ୍ରୀଂ କ୍ଲୀଂ ବଟୁକାୟ ନମଃ ।**

ଏହି ମନ୍ତ୍ର ପଢ଼ି କୁଶବଟୁକୁ ନିଜ ଡାହାଣ ହାତର ଅନାମିକାଙ୍ଗୁଳିର ମଧ୍ୟ ପର୍ବରେ ସ୍ପର୍ଶ କରି ଧ୍ୟାନ କରିବେ । ଧ୍ୟାନଂ ଯଥା -

**ଓଁ ଅତସୀ କୁସୁମଶ୍ୟାମଂ ପଦ୍ମାକ୍ଷଂ ପୀତବାସସଂ ।**
**କଦମ୍ବମାଳିନଂ କୃଷ୍ଣଂ ଧ୍ୟାୟତାଂ ନାସ୍ତି ଦୁର୍ଗତିଃ ॥**
**ତ୍ୱଂ ଚ ବଟୁଃ ସ୍ୱୟଂ ବ୍ରହ୍ମା ରୁଦ୍ରୋ ବିଷ୍ଣୁଃ ପ୍ରଜାପତିଃ ।**
**ତ୍ୱଂ ଚ ସାବିତ୍ରୀ ଗାୟତ୍ରୀ ବଟୁଦେବ ନମୋଽସ୍ତୁ ତେ ॥**

ଏହାପରେ ପୂଜକ କଳଶସ୍ଥାପନ ପ୍ରଭୃତି କରି ପୂଜା ଆରମ୍ଭ କରିବେ । ପୂଜକ ଆଗରୁ କଳଶ ବିଧି ମୁତାବକ ଯେପରି ସ୍ଥାପନ କରାଯିବା କଥା, ସେପରି କରି ସାରି ପୂଜା ସମୟରେ କୁଶ ମାଧ୍ୟମରେ କେବଳ ପ୍ରଦର୍ଶନ କରି ତାହା

ବର୍ତ୍ତମାନ କରୁଛନ୍ତି ବୋଲି କଳ୍ପନା କରିବେ ଅଥବା ପ୍ରତ୍ୟେକ ମନ୍ତ୍ରରେ ପ୍ରତ୍ୟେକ କର୍ମଟି ଅନୁଷ୍ଠାନ କରି ବରୁଣ ପୂଜା କରିବେ ।

**କଳଶସ୍ଥାପନବିଧିଃ -**

ପୂଜକ ନିଜର ସମ୍ମୁଖରେ ମୁରୁଜରେ ଚତୁଷ୍କୋଣ ମଣ୍ଡଳ ପକାଇ ପଞ୍ଚବର୍ଣ୍ଣ ମୁରୁଜରେ ତାର ମଧ୍ୟଭାଗରେ ଅଷ୍ଟଦଳ ପଦ୍ମ କରି ନିମ୍ନ ମନ୍ତ୍ର ପାଠ କରି କୁଶଦ୍ୱାରା କଳଶସ୍ଥିତ ଭୂମିକୁ ସ୍ପର୍ଶ କରିବ ।

ମନ୍ତ୍ର - ଓଁ ଭୂରସି ଭୂମିରସି ବିଶ୍ୱଧାୟା ବିଶ୍ୱସ୍ୟ ଭୁବନସ୍ୟ ଧର୍ତ୍ତ୍ରୀ ।
ପୃଥିବୀଂ ଯଚ୍ଛ ପୃଥିବୀଂ ଦୃଂହ, ପୃଥିବୀଂ ମା ହିଂସୀଃ ॥

ଏହାପରେ ଅଷ୍ଟଦଳ ପଦ୍ମମଣ୍ଡଳ ଉପରେ ନିମ୍ନ ମନ୍ତ୍ର ପଢ଼ି ଶୁକ୍ଳଧାନ୍ୟ ସ୍ଥାପନ କରିବ ।

ମନ୍ତ୍ର - ଓଁ ଧାନ୍ୟମସି ଧିନୁହି ଦେବାନ୍ ଧିନୁହି ଯଜ୍ଞଂ,
ଧିନୁହି ଯଜ୍ଞପତିମ୍, ଧିନୁହି ମାଂ ଯଜ୍ଞନ୍ୟମ୍ ॥

**ଧାନ୍ୟଉପରେ କଳଶସ୍ଥାପନମନ୍ତ୍ର -**

ଓଁ ଆଜିଘ୍ର କଳଶଂ ମହ୍ୟନ୍ତ୍ୱା ବିଶନ୍ତ୍ୱିନ୍ଦବଃ ।
ପୁନରୂର୍ଜା ନିବର୍ତ୍ତସ୍ୱ ସା ନଃ ଧୁକ୍ଷ୍ୱୋରୁଧାରା
ପୟସ୍ୱତୀ ପୁନର୍ମା ବିଶତାଦ୍ରୟିଃ ॥

ଏହି ମନ୍ତ୍ର ପଢ଼ି ଶୁକ୍ଳଧାନ୍ୟ ଉପରେ କଳଶସ୍ଥାପନ କରିବ ।

**କଳଶରେ ଜଳଦେବା ମନ୍ତ୍ର -**

ଓଁ ବରୁଣସ୍ୟୋତ୍ତମ୍ଭନମସି, ବରୁଣସ୍ୟ ସ୍କମ୍ଭସର୍ଜନୀସ୍ଥଃ ।
ବରୁଣସ୍ୟ ଋତସଦନ୍ୟସି, ବରୁଣସ୍ୟ ଋତସଦନମସି ।
ବରୁଣସ୍ୟ ଋତସଦନମାସୀଦ ॥

ଏହି ମନ୍ତ୍ର ପାଠ କରି କଳଶରେ ଜଳ ପୂରଣ କରିବ ।

**କଳଶରେ ତୀର୍ଥାବାହନମନ୍ତ୍ର -**

ଓଁ ଗଙ୍ଗାଦ୍ୟାଃ ସରିତଃ ସର୍ବାଃ ସମୁଦ୍ରାଶ୍ଚ ସରାଂସି ଚ ।
ଆୟାନ୍ତୁ ଯଜମାନସ୍ୟ ଦୁରିତକ୍ଷୟକାରକାଃ ।।
ଗଙ୍ଗେ ଚ ଯମୁନେ ଚୈବ ଗୋଦାବରି ସରସ୍ୱତି ।
ନର୍ମଦେ ସିନ୍ଧୁ-କାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ ।।

ଏହି ମନ୍ତ୍ର ପାଠ କରି କଳଶରେ ତୀର୍ଥାବାହନ କରିବ ।

**କଳଶରେ ପଞ୍ଚରତ୍ନପ୍ରକ୍ଷେପମନ୍ତ୍ର -**

ଓଁ ହିରଣ୍ୟଗର୍ଭଃ ସମବର୍ତ୍ତତାଗ୍ରେ ଭୂତସ୍ୟ ଜାତଃ ପତିରେକ ଆସୀତ୍ ।
ସଦାଧାର ପୃଥିବୀଂ ଦ୍ୟାମୁତେମାଂ କସ୍ମୈ ଦେବାୟ ହବିଷା ବିଧେମ ।।

ଏହି ମନ୍ତ୍ର ପାଠ କରି କଳଶରେ ପଞ୍ଚରତ୍ନ ପ୍ରକ୍ଷେପ କରିବ ।

**କଳଶରେ ସର୍ବୌଷଧିପ୍ରକ୍ଷେପମନ୍ତ୍ର -**

ଓଁ ଯା ଓଷଧୀଃ ପୂର୍ବା ଜାତା ଦେବେଭ୍ୟସ୍ତ୍ରିଯୁଗଂ ପୁରା ।
ମନୈନୁ ବଭ୍ରୁଣା ମହଂ ଶତଂ ଧାମାନି ସପ୍ତ ଚ ।।

ଏହି ମନ୍ତ୍ର ପାଠ କରି କଳଶରେ ସର୍ବୌଷଧିପ୍ରକ୍ଷେପ କରିବ ।

**କଳଶରେ ଗନ୍ଧଦାନମନ୍ତ୍ର -**

ଓଁ ଗନ୍ଧଦ୍ୱାରାଂ ଦୁରାଧର୍ଷାଂ ନିତ୍ୟପୁଷ୍ଟାଂ କରୀଷିଣୀଂ ।
ଈଶ୍ୱରୀଂ ସର୍ବଭୂତାନାଂ ତ୍ୱାମିହୋପହ୍ୱୟେ ଶ୍ରିୟମ୍ ।।

ଏହି ମନ୍ତ୍ର ପାଠ କରି କଳଶରେ ଚନ୍ଦନ ଦେବ ।

**କଳଶରେ ପୁଷ୍ପମାଳା (ଅଥବା ପୁଷ୍ପ) ପ୍ରଦାନମନ୍ତ୍ର -**

ଓଁ ଶ୍ରୀଶ୍ଚ ତେ ଲକ୍ଷ୍ମୀଶ୍ଚ ପତ୍ନ୍ୟାବହୋରାତ୍ରେ
ପାର୍ଶ୍ୱେ ନକ୍ଷତ୍ରାଣି ରୂପମଶ୍ୱିନୌ ବ୍ୟାତ୍ତମ୍ ।
ଇଷନ୍ନିଷାଣ ମୁମ୍ମଇଷାଣ ସର୍ବଲୋକଂ ମ ଇଷାଣ ।।

ଏହି ମନ୍ତ୍ର ପାଠ କରି କଳଶରେ ପୁଷ୍ପମାଳା (ଅଥବା ପୁଷ୍ପ) ପ୍ରଦାନ କରିବ ।

**କଳଶରେ ଆମ୍ରାଦିପଞ୍ଚପଲ୍ଲବଦାନମନ୍ତ୍ର -**

ଓଁ ନମଃ ପର୍ଣ୍ଣାୟ ଚ ପର୍ଣ୍ଣଶଦାୟ ଚ ନମଃ
ଉଦ୍‌ଗୁରମାଣାୟ ଚାଭିଘ୍ନତେ ଚ,
ନମଃ ଆଖିଦତେ ଚ ପ୍ରଖିଦତେ ଚ ନମଃ
ଇଷୁକୃଦ୍‌ଭ୍ୟୋ ଧନୁଷ୍କୃଦ୍‌ଭ୍ୟଶ୍ଚ ବୋ ନମଃ ।
ନମୋ ବଃ କିରିକେଭ୍ୟୋ ଦେବାନାଂ ହୃଦୟଭ୍ୟୋ,
ନମୋ ବିଚିନ୍ୱତ୍‌କେଭ୍ୟୋ
ନମୋ ବିକ୍ଷିଣତ୍‌କେଭ୍ୟୋ ନମଃ ଆନିର୍ହତେଭ୍ୟଃ ।।

ଏହି ମନ୍ତ୍ର ପାଠ କରି କଳଶରେ ଆମ୍ର, ଅଶ୍ୱତ୍ଥ, ଉଦୁମ୍ବର, ବଟ, ପ୍ଲକ୍ଷ (ଢରି) ପଲ୍ଲବ (ପତ୍ର) ଦାନ କରିବ ।

**କଳଶରେ ତଣ୍ଡୁଳପୂର୍ଣ୍ଣଶରାବସ୍ଥାପନମନ୍ତ୍ର-**

ଓଁ ପୂର୍ଣ୍ଣା ଦର୍ବି ପରାପତ ସୁପୂର୍ଣ୍ଣା ପୁନରାପତ ।
ବସ୍ନେବ ବିକ୍ରୀଣାବହା ଇଷମୂର୍ଜଂ ଶତକ୍ରତୋ ।।

ଏହି ମନ୍ତ୍ର ପାଠ କରି କଳଶ ଉପରେ ତଣ୍ଡୁଳପୂର୍ଣ୍ଣ ଶରାବ ସ୍ଥାପନ କରିବ ।

**ତଣ୍ଡୁଳଶରାବ ଉପରେ ନାରିକେଳ ପ୍ରଦାନମନ୍ତ୍ର -**

ଓଁ ଯାଃ ଫଳିନୀର୍ଯା ଅଫଳା ଅପୁଷ୍ପା ଯାଶ୍ଚ ପୁଷ୍ପିଣୀଃ ।
ବୃହସ୍ପତିପ୍ରସୂତାସ୍ତାନୋ ମୁଞ୍ଚନ୍ତ୍ୱହଂସଃ ।।

ଏହି ମନ୍ତ୍ର ପାଠ କରି ତଣ୍ଡୁଳଶରାବ ଉପରେ ନାରିକେଳ ଫଳ ସ୍ଥାପନ କରିବ ଓ ନାରିକେଳରେ ଗନ୍ଧ ଓ ପୁଷ୍ପ ଦେବ ।

**ନାରିକେଳ ଫଳ ଉପରେ ବସ୍ତ୍ରଦାନମନ୍ତ୍ର -**

ଓଁ ପରିଧାସ୍ୟୈ ଯଶୋଧାସ୍ୟୈ ଦୀର୍ଘାୟୁତ୍ୱାୟ ଜରଦଷ୍ଟିରସ୍ମି ।
ଶତଂ ଚ ଜୀବାମି ଶରଦଃ ପୁରୂଚୀ ରାୟସ୍ପୋଷମଭିସଂବ୍ୟୟିଷ୍ୟେ ।।

ଏହି ମନ୍ତ୍ର ପାଠ କରି ନାରିକେଳ ଫଳ ଉପରେ ବସ୍ତ୍ରଦାନ କରିବ ।

**ନାରିକେଳ ଫଳ ଉପରେ ଯଜ୍ଞୋପବୀତଦାନମନ୍ତ୍ର -**

**ଓଁ ଯଶସା ମା ଦ୍ୟାବା ପୃଥିବୀ ଯଶସେନ୍ଦ୍ରା ବୃହସ୍ପତୀ ।**

**ଯଶୋ ଭଗଶ୍ଚ ମା ବିଶଦ୍ ଯଶୋ ମାଂ ପ୍ରତିପଦ୍ୟତାମ୍ ।।**

ଏହି ମନ୍ତ୍ର ପାଠ କରି ନାରିକେଳ ଫଳ ଉପରେ ଯଜ୍ଞୋପବୀତ ଦାନ କରିବ ।

**କଳଶରେ ଦଧ୍ୟକ୍ଷତଦାନମନ୍ତ୍ର -**

**ଓଁ ଅକ୍ଷନ୍ନମୀମଦନ୍ତ ହ୍ୟବପ୍ରିୟା ଅଧୂଷତ ।**

**ଅସ୍ତୋଷତ ସ୍ୱଭାନବୋ ବିପ୍ରାନବିଷ୍ଠୟାମତୀ ଯୋଜାନ୍ୱିନ୍ଦ୍ରତେ ହରୀ ।।**

ଏହି ମନ୍ତ୍ର ପାଠ କରି କଳଶରେ ଦଧ୍ୟକ୍ଷତଦାନ କରିବ ।

**କଳଶ ଓ ନାରିକେଳରେ ସିନ୍ଦୂରଦାନମନ୍ତ୍ର -**

**ଓଁ ସିନ୍ଧୋରିବ ପ୍ରାଧ୍ୱନେ ଶୂଘନାସୋ ବାତପ୍ରମିୟଃ ପତୟନ୍ତି ଯହ୍ୱାଃ।**

**ଘୃତସ୍ୟ ଧାରା ଅରୁଷୋ ନ ବାଜୀ କାଷ୍ଠାଭିନ୍ଦନ୍ନୂର୍ମିଭିଃ ପିନ୍ୱମାନଃ ।।**

ଏହି ମନ୍ତ୍ର ପାଠ କରି କଳଶ ଓ ନାରିକେଳରେ ସିନ୍ଦୂର ଦାନ କରିବ ।

**କଳଶରେ ଦୂର୍ବାଦାନମନ୍ତ୍ର -**

**ଓଁ କାଣ୍ଡାତ୍ କାଣ୍ଡାତ୍ ପ୍ରରୋହନ୍ତୀ ପୂରୁଷଃ ପରୂଷସ୍ପରି ।**

**ଏବା ନୋ ଦୂର୍ବେ ପ୍ରତନୁ ସହସ୍ରେଣ ଶତେନ ଚ ।।**

ଏହି ମନ୍ତ୍ର ପାଠ କରି କଳଶରେ ଦୂର୍ବାଦାନ କରିବ ।

**କଳଶରେ ରୁଦ୍ରାଦି ଦେବତାଙ୍କର ଧ୍ୟାନ -**

**କଳଶସ୍ୟ ମୁଖେ ରୁଦ୍ରଃ କଣ୍ଠେ ବିଷ୍ଣୁଃ ପ୍ରକୀର୍ତ୍ତିତଃ ।**

**ଅଧଣ୍ଟେବ ସ୍ଥିତୋ ବ୍ରହ୍ମା ମଧ୍ୟେ ମାତୃଗଣାଃ ସ୍ମୃତାଃ ।।**

**କୁକ୍ଷୌ ଚ ସାଗରାଃ ସପ୍ତ ସପ୍ତଦ୍ୱୀପା ଚ ମେଦିନୀ ।**

**ଉଦରେ ସର୍ବତୀର୍ଥାନି ଚିନ୍ତୟିତ୍ୱା ପ୍ରପୂଜୟେତ୍ ।।**

